# ଭୋଟ୍

ଫତୁରାନନ୍ଦ



**ଭୋଟ୍**—ଲେଖକ : ଫତୁରାନନ୍ଦ, ପ୍ରକାଶକ : ସହଦେବ ପ୍ରଧାନ, ଫ୍ରେଣ୍ଡ୍ସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ-୭୫୩୦୦୨, ପ୍ରଥମ ପ୍ରକାଶ : ୧୯୮୦, ଦ୍ୱିତୀୟ ପ୍ରକାଶ:୧୯୯୪, ପ୍ରଚ୍ଛଦପଟ : ଅସିତ୍ ମୁଖାର୍ଜୀ, ମୁଦ୍ରଣ : ଆନନ୍ଦ ପ୍ରେସ୍, ପିଠାପୁର, କଟକ-୭୫୩୦୦୧



**VOTE**—Author : Faturananda, Publisher : Sahadev Pradhan, Friends' Publishers, Binodbehari, Cuttack-753002, Orissa ( India ), First Edition : 1980, Second Edition : 1994, Cover Design : Asit Mukherjee, Printer : Anand Press, Pithapur, Cuttack-753001.

Price : Rs. 35.

# ଉତ୍ସର୍ଗ

ଔପନ୍ୟାସିକ-ସମ୍ରାଟ ଶ୍ରୀଯୁକ୍ତ ଗୋପୀନାଥ ମହାନ୍ତି କରକମଳେଷୁ ।

ମହାଶୟ,

ଆଧୁନିକ ଉପନ୍ୟାସ ଜଗତରେ ଆପଣ ଏପର୍ଯ୍ୟନ୍ତ ଉଜ୍ଜ୍ୱଳତମ ଜ୍ୟୋତିଷ୍କରୂପେ ପ୍ରତିଭାତ ହୋଇଆସୁଅଛନ୍ତି । ଏଥିଲାଗି ଆପଣ ଓଡ଼ିଶା ଓ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ତଥା ଜ୍ଞାନପୀଠ ଦ୍ୱାରା ସମ୍ମାନିତ ହୋଇଅଛନ୍ତି । ରଜତ ଜୟନ୍ତୀ ଉତ୍ସବବେଳେ 'ଉଗର' ଆପଣଙ୍କ ପ୍ରତିଭା ପୂଜାକରି ନିଜକୁ ଗୌରବାନ୍ୱିତ ମନେକରିଥିଲା । ଆପଣଙ୍କ କରକମଳରେ ଏହି 'ଭୋଟ୍' ପୁସ୍ତକଟି ଅର୍ପଣ କରୁଛି । ଆଦରରେ ଗ୍ରହଣ କଲେ ବାଧିତ ହେବି ।

ପିଠାପୁର
ଦୋଳପୂର୍ଣ୍ଣିମୀ
୧୯୮୦

ଆପଣଙ୍କର ଗୁଣମୁଗ୍ଧ
ପରମାନନ୍ଦ

# ମୋ ମତରେ

ଫତୁରାନନ୍ଦ ଜଣେ ବ୍ୟଙ୍ଗକାର ହିସାବରେ ଖ୍ୟାତିଲାଭ କରିଛନ୍ତି । କାନ୍ତକବିଙ୍କ ପ୍ରତିଷ୍ଠିତ 'ଡଗର' ପତ୍ରିକାର ଦାୟିତ୍ୱ ନେବାଦିନୁ ହାସ୍ୟ-ରସ ତାଙ୍କର ନିତିଦିନିଆ ବେଉସା ହୋଇଛି । କାନ୍ତକବି ତଥା ତାଙ୍କର ସୁଯୋଗ୍ୟ ପୁତ୍ର ନିତ୍ୟାନନ୍ଦ ମହାପାତ୍ରଙ୍କ ଡାଗରିକ ଭାଷା ସ୍ୱତନ୍ତ୍ର । ଫତୁରାନନ୍ଦଙ୍କ ଶୈଳୀ ଓ ଭାଷା ଡାଗରିକ ଭାଷାଠାରୁ ଭିନ୍ନ । ହାସ୍ୟରସ ପରିବେଷଣ କରିବାରେ ଫତୁରାନନ୍ଦ ଗୋଟିଏ ନବଯୁଗ ସୃଷ୍ଟି କରିଛନ୍ତି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

'ଭୋଟ୍' ଗୋଟିଏ ରମ୍ୟ ରଚନା । ଏଥିରେ ଫତୁରାନନ୍ଦୀୟ ଶୈଳୀ ବିଶେଷ ଭାବରେ ପ୍ରସ୍ଫୁଟିତ । ବ୍ୟଙ୍ଗକାର ଓ ହାସ୍ୟରସିକ ସାଧାରଣତଃ ବହିର୍ଦୃଷ୍ଟି ସାହାଯ୍ୟରେ ରଙ୍ଗରସ କରିବା ସଙ୍ଗେ ସଙ୍ଗେ ଜୀବନକୁ ଉପଭୋଗ କରନ୍ତି । 'ଭୋଟ୍' ପୁସ୍ତକରେ ଫତୁରାନନ୍ଦଙ୍କ ବହିର୍ଦୃଷ୍ଟି ସହିତ ଗଭୀର ଅନ୍ତର୍ଦୃଷ୍ଟି ପ୍ରତିଫଳିତ ହୋଇଛି ।

ଭାରତୀୟ ଗଣତନ୍ତ୍ର ଭୋଟ୍-ସର୍ବସ୍ୱ ହୋଇଯାଇଛି । ଭୋଟ୍ ଦେବା-ନେବାରେ ଗଣତାନ୍ତ୍ରିକ ଦର୍ଶନ ନିହିତ ବୋଲି ବହୁ ଲୋକଙ୍କ ଧାରଣା । ପ୍ରତିଦ୍ୱନ୍ଦ୍ୱୀମାନଙ୍କ ମଧ୍ୟରେ ବେଶି ଭୋଟ୍ ପାଇଥିବା ଲୋକ ନିର୍ବାଚିତ ହୁଏ । ଯେଉଁ ଦଳର ଲୋକେ ବେଶି ସଂଖ୍ୟାରେ ଭୋଟ୍ ପାଆନ୍ତି ସେମାନେ ସରକାର ଗଢ଼ନ୍ତି ଏବଂ ପାଞ୍ଚବର୍ଷ ପର୍ଯ୍ୟନ୍ତ ସୁଖସୁବିଧା ଭୋଗ କରନ୍ତି । ଓଡ଼ିଆରେ ଗୋଟିଏ ଢଗ ଅଛି, "ଚଷା କି ଜାଣେ ପଶାର କଥା" । ଅର୍ଥାତ୍ କୃଷୀ କୃଷିକାମରେ ଏପରି ମନପ୍ରାଣ ଢାଳିଦିଏ ଯେ, ପଶା ଖେଳିବା ଲାଗି ତାହାର ଆଦୌ ଅବସର ନଥାଏ । ଭୋଟ୍ ମାଗୁଥିବା ଲୋକେ ଭୋଟ୍ କାରବାର ବିଷୟରେ ଅଭିଜ୍ଞ । ଭୋଟ୍ ଯୋଗାଡ଼ିଆମାନଙ୍କୁ ଝାଉଟର୍

କହନ୍ତି । ସେମାନଙ୍କୁ ବି ଭୋଟ୍ କାରବାରର ଗୁମର କଥା ଜଣାଅଛି । ଭୋଟ୍ ବେପାରରେ ଫକୁରାନନ୍ଦ ଜଣେ ଚଷା । ଯେଉଁ ରାଜନୀତିଜ୍ଞମାନେ ଭୋଟ୍ ପଶା ଖେଳନ୍ତି, ସେମାନଙ୍କ ଗହନ କଥା ସେ କିପରି ଜାଣିଲେ, ଏହାହିଁ ଆଶ୍ଚର୍ଯ୍ୟର କଥା ।

୧୯୬୭ ରୁ ୧୯୮୦ ଭିତରେ ଭାରତବର୍ଷରେ ଯାହା ସବୁ ଘଟିଗଲା ସେଥିପ୍ରତି କେତେଜଣଙ୍କର ସହାନୁଭୂତି ଅଛି, ଆଉ କେତେଜଣ ତାହାର ସମାଲୋଚକ । ଫକୁରାନନ୍ଦ କୌଣସି ଦଳର ନୁହଁନ୍ତି । ତେଣୁ ସେ ମୁହଁ ଉପ୍ରୋଧ ନରଖି କଥାଗୁଡ଼ାକ ସଫା ଫିଟାଇ କହି ଦେଇଛନ୍ତି ।

ପ୍ରଥମ ଅଧ୍ୟାୟରୁ ଜଣାପଡ଼ୁଛି ନିର୍ବାଚନ ପାଣ୍ଠି ଆଦାୟ କଥା ତାଙ୍କୁ ଭଲ ଜଣାଅଛି । ପାଣ୍ଠି ଠୁଳ କରିବାବେଳେ ବିଭିନ୍ନ କିସମର ଲୋକେ ଭିନ୍ନ ଭିନ୍ନ ପନ୍ଥା ଧରନ୍ତି; କିନ୍ତୁ ନିର୍ବାଚନ ପାଣ୍ଠି ଯେ ସବୁ ଦୁର୍ନୀତିର ମୂଳ କାରଣ ଏକଥା 'ନୋଟ୍ ନେଇ ଭୋଟ୍' ଦେଉଥିବା ଲୋକେ ଜାଣନ୍ତି ନାହିଁ । ଲେଖକ ଭୋଟରଙ୍କ ଆଖିରେ ଆଙ୍ଗୁଠି ଗେଞ୍ଜି ସେମାନଙ୍କୁ ଏହି ରହସ୍ୟ ଜଣାଇଦେବା ସଙ୍ଗେ ସଙ୍ଗେ ରାଜନୀତିକ ଦଳମାନଙ୍କ ଗୁମର ଫିଟାଇ ଦେଇଛନ୍ତି ।

ଭୋଟର ତାଲିକାରେ କେତେ କାରସାଦି ହୋଇପାରେ ତାହା ୧୯୮୦ ମସିହା ଭୋଟ୍‌ବେଳେ ପ୍ରମାଣିତ ହୋଇଛି । ଭୋଟର ତାଲିକାରେ ନାଁ ନଥିବାରୁ ବା ନାମ ଭୁଲ୍ ଥିବାରୁ ବହୁ ଲୋକ ଏଥରକ ଭୋଟ୍ ଦେଇ-ପାରିନାହାନ୍ତି । ତାହା ତାଲିକା ତିଆରି କରୁଥିବା ଲୋକଙ୍କ ଦୋଷ ହୋଇପାରେ ବା ଛାପାଖାନାରେ କାମ କରୁଥିବା ଲୋକଙ୍କ କାରସାଦି ହୋଇପାରେ । ପ୍ରତି ଦଶବର୍ଷରେ ଥରେ ନିର୍ବାଚନ ମଣ୍ଡଳୀ ପୁନର୍ଗଠନ ବେଳେ କ୍ଷମତାସୀନ ଦଳ ପରି ନିଜର ବିରୋଧୀ ଅଞ୍ଚଳକୁ ଖଣ୍ଡ ଖଣ୍ଡ କରି ସେମାନଙ୍କୁ କାବୁ କରିଦିଅନ୍ତି, ସେହିପରି କ୍ଷମତାଧାରୀ ଲୋକେ ଭୋଟର ତାଲିକାକୁ ବି ଏପଟ ସେପଟ କରି କିଡାପଟ୍ ମାରି ନିଅନ୍ତି । ସେହିପରି ନିର୍ବାଚନ ସଂକେତକୁ ବି ଅନ୍ୟାୟ ଭୋଟ୍ ଲାଗି ବେଳେ ବେଳେ ପ୍ରୟୋଗ କରାଯାଏ । ଚକ୍ରହଳଧର ଥିଲା ବଳଭଦ୍ରଙ୍କ ସଙ୍କେତ । ଗାଈବାଛୁରୀ

କୁଆଡ଼େ ନାରୀମାନଙ୍କୁ ଅନୁପ୍ରାଣିତ କରୁଥିଲା । ତେଣୁ ସେମାନଙ୍କ ମନ ନେବାଲାଗି ଫକୁରାନନ୍ଦ ଗୋଟିଏ ଗୁଲୁଗୁଲିଆ ସୂଅର ସଙ୍କେତ କଥା ସୂଚାରଣ କରିଅଛନ୍ତି ।

ଭୋଟ୍ ପ୍ରଚାର କେତେ ତଳକୁ ଗଲାଣି ସେ ବିଷୟରେ ବି ଫକୁରାନନ୍ଦ ଆଙ୍ଗୁଠି ଦେଖାଇବାକୁ ଛାଡ଼ିନାହାନ୍ତି । ପ୍ରାର୍ଥୀ ହେବାବେଳେ ସ୍ୱାଧୀନ ପ୍ରାର୍ଥୀମାନେ କିଣାବିକା ହୋଇ ପ୍ରାର୍ଥୀପତ୍ର ପ୍ରତ୍ୟାହାର କରି ନେଉଥିବା କଥା ଶୁଣାଯାଏ । ଜଣେ ବ୍ୟକ୍ତି ପ୍ରାର୍ଥୀ ହେବାକୁ ବାହାରିବା ମାତ୍ରକେ ତାଙ୍କ ପାଖରେ ଟାଉଟରମାନେ ରୁଣ୍ଡ ହୋଇଯାଆନ୍ତି । ନିର୍ବାଚନ ଖର୍ଚ୍ଚ ପାଇଁ ଲମ୍ବା ଲମ୍ବା ତାଲିକା ବାଢ଼ନ୍ତି । ଏହି ଘାଟି ପାରି ହେଲେ ପ୍ରାର୍ଥୀର ପ୍ରଚାରକମାନେ ଅପର ପ୍ରାର୍ଥୀଙ୍କ ଗୋଇ ଖୋଳିବା ସଙ୍ଗେ ସଙ୍ଗେ କପଟ କନ୍ଦରରେ ତାଙ୍କ ଭୋଟକୁ ନେଇଆସନ୍ତି ତାହା 'ଭଲୁଆ ପ୍ରଚାରକ ଦଳ', 'କାଦୁଅ ଫିଙ୍ଗା ଦରବାର' ଓ 'ଭୋଟ୍ ଭଙ୍ଗା'ରେ ବର୍ଣ୍ଣନା କରାଯାଇଛି ।

ବେଳେ ବେଳେ ଶୁଣାଯାଏ ଯେ ଜଣେ ଜ୍ୟୋତିଷୀ ଗର୍ଭବତୀ ସ୍ତ୍ରୀକୁ କହେ, ତା'ର ପୁଅ ହେବ ଏବଂ ତାହାର ସ୍ୱାମୀକୁ କହେ, ତାହାର ଝିଅ ହେବ । ଉଭୟଙ୍କୁ ସେ ରାଣ ପକାଇ କହିଥାଏ ଯେ, କେହି କାହା ଆଗରେ ଏହି ଗୁପ୍ତ କଥା କହିବେ ନାହିଁ । ସନ୍ତାନଟି ପୁଅ ହେବ, ନଚେତ୍ ଝିଅ ହେବ । ଯାହା ହେଲେ ବି ଜ୍ୟୋତିଷୀ କଥା ସତ । ନିର୍ବାଚନ ବେଳେ ଏହି ରାଜନୀତିକ ଜ୍ୟୋତିଷୀମାନେ କପଟ ସମସ୍ତଙ୍କୁ ଠକାଇ ରୋଜଗାର କରନ୍ତି ତାହା 'ଭୋଟୁଲ୍ ବାବାଙ୍କ ଭୋଟ୍ କମିଆଁ'ରେ ଚିତ୍ତାକର୍ଷକ ଭାବରେ ବର୍ଣ୍ଣିତ ହୋଇଛି । ଜାଲ୍ ଭୋଟ୍ ବିଷୟ ମଧ୍ୟ ଫକୁରାନନ୍ଦଙ୍କୁ ଅଜଣା ନାହିଁ । ତାହା ସେ 'ପଲ୍ଲୀ ଭୋଟ୍ ଗ୍ରହଣ କେନ୍ଦ୍ର'ରେ ବର୍ଣ୍ଣନା କରିଛନ୍ତି ।

ଲୋକେ ଭୋଟ୍ ଦେଲେ ପ୍ରାର୍ଥୀ ନିର୍ବାଚିତ ହୁଅନ୍ତି । ନିର୍ବାଚନ ପରେ ଭୋଟକୁ କୌଣସି ଗୁରୁତ୍ୱ ନ ଦେଇ ନିର୍ବାଚିତ ସଭ୍ୟମାନେ ବିକା-କିଣା ହୋଇ ସରକାର ଭଙ୍ଗାଗଢ଼ାରେ ସାହାଯ୍ୟ କରନ୍ତି । 'ଭେଡ଼ ବେପାର' ଅଧ୍ୟାୟରେ ଫକୁରାନନ୍ଦ ଏ ବିଷୟରେ ମଧ୍ୟ ଆଲୋଚନା କରିଛନ୍ତି । ଯେଉଁମାନେ ସରକାର ଗଢ଼ି ମନ୍ତ୍ରୀ ହୁଅନ୍ତି ସେମାନେ ଜନ-

ସେବା କରିବେ କଅଣ, ଆଉ ନିର୍ବାଚନରେ କିପରି ଭୋଟ୍ ମିଳିବ ସେଥିପାଇଁ ଭୋଟ୍ ଯୁଦ୍ଧ ଆରମ୍ଭ କରିଦିଅନ୍ତି । ସରକାର କୌଣସି କାରଣ ନଥାଇ ନୂଆ ନୂଆ ସମସ୍ୟା ଲୋକମାନଙ୍କ ଆଗରେ ଥୋଇ ପ୍ରମାଣ କରିଦିଅନ୍ତି ଯେ, ପୂର୍ବ ସରକାର କିଛି କରିପାରି ନଥିଲେ, ସେମାନେ ସବୁକଥା କରି ପକାଇବେ । ମନ୍ତ୍ରୀମାନେ ପାଗ ବାନ୍ଧି ବାନ୍ଧି କେତେଥର ବରଖାସ୍ତ ହୋଇଯାଏ ଏବଂ ସାନ ନିର୍ବାଚନରେ ସେମାନେ ଗାଦି ଛାଡ଼ିବାକୁ ବାଧ୍ୟ ହୁଅନ୍ତି । ଭୋଟ୍ ଆସେ ଓ ଯାଏ । ସେହିପରି ମନ୍ତ୍ରିମଣ୍ଡଳ ମଧ୍ୟ ଆସେ ଓ ଯାଏ । ଲୋକେ ଯେଉଁ ତିମିରେ ସେଇ ତିମିରେ ରହିଥାଆନ୍ତି । ଏହାହିଁ ଭୋଟ୍‌ର ଦୁର୍ଗତି । ଯାହା ଭାରତବର୍ଷରେ ଚାଲିଛି, ତାହା ଅନ୍ୟ କୌଣସି ଦେଶରେ ନାହିଁ ବୋଲି ଶେଷ ଅଧ୍ୟାୟ 'ଅପାର୍ଥିବ ନିର୍ବାଚନ'ରେ କୁହାଯାଇଛି ।

ରାଜନୀତି ବିଜ୍ଞାନ ଶାସ୍ତ୍ର ବେଶି ଲୋକେ ପଢ଼ନ୍ତି ନାହିଁ; କିନ୍ତୁ ରାଜନୀତିକ ତଥ୍ୟାବଳୀ ସମସ୍ତେ ଜାଣିବାକୁ ବ୍ୟଗ୍ର । 'ଭୋଟ୍' ପୁସ୍ତକଟି ଯେପରି ଶୈଳୀରେ ଲେଖାଯାଇଛି ତାହାକୁ ମନଦେଇ ପଢ଼ିଲେ ପ୍ରାର୍ଥୀ ଓ ଭୋଟର କାଣ୍ଡେ ପାଠ ଶିଖିପିବେ । ଏହି ପୁସ୍ତକର ବହୁଳ ପ୍ରଚାର ରାଜନୀତିକ ଶିକ୍ଷାରେ ସାହାଯ୍ୟ କରିବ ବୋଲି ମୋର ଦୃଢ଼ ଆଶା ।

ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ

# ମୋଆଡ଼ୁ ପଦେ

ଆମେ ୧୯୪୭ରୁ ସ୍ୱାଧୀନତା ପାଇଲୁଣି । ଏହା ଭିତରେ ୭ଟି ସାଧାରଣ ନିର୍ବାଚନ ରାଜନୀତିଜ୍ଞମାନଙ୍କ ଦ୍ୱାରା ଅନୁଷ୍ଠିତ ହୋଇସାରିଲାଣି । ଏବେ ମଧ୍ୟ ଭୋଟ୍ କିଣିଲେ ପ୍ରାର୍ଥୀ ଓ ଭୋଟର୍‌ମାନେ କଅଣ ବୁଝନ୍ତି ତାର ଏକ ମୋଟାମୋଟି ଚିତ୍ର ଏହି ପୁସ୍ତକରୁ ହିଁ ମିଳିପାରିବ । ଯେ ପର୍ଯ୍ୟନ୍ତ ଭୋଟର୍, ରାଜନୀତିଜ୍ଞ ଏବଂ ନିର୍ବାଚନର ତତ୍ତ୍ୱାବଧାରକମାନେ, ନିର୍ମଳ ଭାବରେ ଏକ ଝରଝର ନିର୍ବାଚନ ସଫଳତାର ସହିତ କରାଇଦେଇ ପାରିଲେ ବୋଲି ଆତ୍ମପ୍ରସାଦ ଅନୁଭବ କରୁଥିବେ, ସେପର୍ଯ୍ୟନ୍ତ ନିର୍ବାଚନରେ ସାଧୁତା, ଭଦ୍ରତା ଓ ମାର୍ଜିତ ରୁଚିର ଆଭାସ ମଧ୍ୟ ଦେଖାଦେବ ନାହିଁ । ପ୍ରତ୍ୟେକ ଗଳ୍ପରେ 'ପ୍ରାୟ ଅଧେ ସତ୍ୟ ଓ ଅଧେ କଳ୍ପନା ଅଛି । ପୃଥିବୀରେ ସର୍ବବୃହତ୍ ଗଣତାନ୍ତ୍ରିକ ରାଷ୍ଟ୍ରରୂପେ ଭାରତବର୍ଷକୁ ଯଥାର୍ଥ ଭାବରେ ପ୍ରତିଷ୍ଠିତ କରାଇବାକୁ ହେଲେ ପ୍ରଥମେ ନିର୍ବାଚନକୁ ନିର୍ମଳ କରିବାକୁ ହେବ । ରାଜନୀତିରେ ଅନଭିଜ୍ଞ ଏବଂ ଅସାଧୁ ବ୍ୟକ୍ତିମାନଙ୍କ ପାଇଁ ନିର୍ବାଚନ-ପ୍ରବେଶ ପଥ ରୁଦ୍ଧକରି ଦେବାକୁ ହେବ । ଏବେ ପ୍ରତ୍ୟେକ ଦଳ ଦେଶର ସ୍ୱାର୍ଥକୁ ଉପେକ୍ଷା କରି ସର୍ବପ୍ରଥମେ ନିଜର ସ୍ୱାର୍ଥ, ତାପରେ ନିଜ ଦଳର ସ୍ୱାର୍ଥ ଦେଖୁଛନ୍ତି । ଏଥିରୁ ଯଦି କିଛି ବଳେ ତେବେ ତାହା ଦେଶକୁ ମିଳେ, ନ ହେଲେ ନାହିଁ । ଏ ନିୟମ ଯେପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ନ ଓଲଟିଛି ସେପର୍ଯ୍ୟନ୍ତ ପୃଥିବୀ ଆଗରେ ଦିନ ଆଜି ଆମଦେଶ ହୀନ ପ୍ରତିପାଦିତ ହୋଇ ରହିଥିବ ।

ଅବସରପ୍ରାପ୍ତ ବରିଷ୍ଠ ରାଜନୀତି ମୁଖ୍ୟଅଧ୍ୟାପକ ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ, ଆଡ଼ଭୋକେଟ୍ ଏ ପୁସ୍ତକଟିର ଭୂମିକା ଲେଖି ଦେଇଥିବାରୁ ମୁଁ ତାଙ୍କଠାରେ ଋଣୀ ।

ମୋର ପ୍ରକାଶକ ବନ୍ଧୁ ଶ୍ରୀଯୁକ୍ତ ସହଦେବ ପ୍ରଧାନ ( ଫ୍ରେଣ୍ଡ୍‌ସ୍ ପବ୍ଲିଶର୍ସର ସ୍ୱତ୍ତ୍ୱାଧିକାରୀ ) ପ୍ରକାଶନର ଦାୟିତ୍ୱ ବହନ କରିଥିବାରୁ ତାଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଉଛି ।

**ପତୁରାନନ୍ଦ**

# ସୂଚୀପତ୍ର



—※—

# ॥ ନିର୍ବାଚନ ପାର୍ଟି ॥

ଗାନ୍ଧିଆ ଦଳ ଏକ କବାଟକିଳା ବୈଠକରେ ଘମାଘୋଟ ମନ୍ତ୍ରଣା ଚଳେଇଲେ । ଆସନ୍ତା ନିର୍ବାଚନଟା ଯେ ଅତି ଖର୍ଚ୍ଚ, ଧସ୍ତାଧସ୍ତିକ ଓ ଅସମ୍ଭବ ବ୍ୟୟସାପେକ୍ଷ ହେବ, ସେଥିରେ ସମସ୍ତେ ଏକମତ ଥିଲେ । ଗଲା ନିର୍ବାଚନରେ ଅଗାନ୍ଧିଆ (ଗାନ୍ଧିରେ ନ ଥିବା ଅର୍ଥାତ୍ ବିପକ୍ଷ) ଦଳମାନେ ଅଗା, ବଗା, ଖଗାଙ୍କ ପରି ନିର୍ବାଚନ ଲଢ଼ିଥିଲେ । ତଥାପି ଗାନ୍ଧିଆଙ୍କର ପଛରୁ ଦୋରୁଅ ପାଣି ନିକଳିଗଲା । ଗାଞ୍ଜିଆ ଶୂନଶାନ୍ ହୋଇଗଲା । ତା ଗର୍ଭଟା ପଦାକୁ ବାହାରି ପଡ଼ି ଲେଉଟି ପଡ଼ିଲା । ପାଦ ଓ ଅଣ୍ଟାର ବଥା ମାରିବାକୁ ଟିଣେ ପୋରିଷ ତେଲ ଓ କେତେ ପାକସ୍ଥାନୀ ଅଫିମ ଖର୍ଚ୍ଚ ହୋଇଗଲା । ଏଥର କି ପୁଣି ସବୁ ଅଗାନ୍ଧିଆ ଦଳ ଏକଜୁଟ ହୋଇ ଲଢ଼ିବେ ବୋଲି ସ୍ଥିର କରି ସାରିଲେଣି । ଏଥର ଅବସ୍ଥା ଗାଆଣି ଗାଳିବ ନାହିଁ । ଲୋକେ ଏମିତିଆ ଗିଳା ପଡ଼ିଲେଣି ଯେ, ତାହା ବାସୁକି ବି କହିପାରିବ ନାହିଁ । ମୁହଁକୁ ପଜେଇ ବସି ରହିଛନ୍ତି, କଥା ପଦ ପଦକେ ଆଣ ମଦ, ଆଣ କୁକୁଡ଼ା, ଆଣ ଟଙ୍କା, ଆଣ ଲୁଗା, ଆଣ ଶାଢ଼ୀ । ସବୁ ଖାଲି ଆଣ । ପାଷଣ୍ଡଗୁଡ଼ାକ ସବୁ ଗିଳା ପାଲଟି ଗଲେଣି । ଦେବା ଭିତରେ ଖଣ୍ଡିଏ ଟିକି କାଗଜ, ଆଉ ଯଦି ରେମ ଢ' ରମ୍ କାଗଜ ଦେବାକୁ ପଡ଼ୁଥାନ୍ତା ତେବେ ତ କହନ୍ତେ—ତୋ ଧାନାସନ ସମ୍ପତ୍ତି-ବାଡ଼ି, ଘରଦ୍ୱାର ସବୁ କାଟିଦେ, ଆଉ ଲେଙ୍ଗୁଟି ମାରି ଯା ଚଳା ଏକାନ୍ତ ବଣକୁ ।

ଜଣେ ବାଧା ଦେଇ କହିଲେ—"ସେମାନଙ୍କୁ ଦୋଷ ଦେବା ଠିକ୍ ହେଉନି । ସେମାନଙ୍କୁ ଆମେ ଲାଞ୍ଚୁଆ କରିଦେଲୁ । ନୋଟ ନେ, ଭୋଟ ଦେ ଶିଖେଇଲୁ । ସେମାନଙ୍କର କି ଦୋଷ ?"

"ଦୋଷ ନୁହେଁ ? ଅନାର୍ଯ୍ୟଗୁଡ଼ାଙ୍କୁ ଯୋଡ଼ିଏ ଯୋଡ଼ିଏ ଟଙ୍କା ଦିନା ଦେଉଥିଲୁ । ସେମାନେ ସେଇ ଦୁଇଟି ଟଙ୍କାରେ ସନ୍ତୁଷ୍ଟ ହେଉ ନାହାନ୍ତି କାହିଁକି ? ଅତି ଲୋଭ ପାଞ୍ଚଟିବାକୁ ଶିଖେଇଲା କିଏ ? ସବୁ ଅଗାଧିଆଙ୍କ ଫିସାଦ, ଜୁଆଡ଼େର । ସେଗୁଡ଼ାକ ତ ନଅଙ୍କିଆ, ସେମାନଙ୍କ ପାଖରେ ଟଙ୍କା ଆସିବ କୁଆଡ଼ୁ ? ଖାଲି ରବେଇ ଖବେଇ ହୋଇ, ଆମେ ଦୁଇଟଙ୍କା ଦେଲେ ସେମାନେ ଡେଙ୍ଗୁରା ପିଟନ୍ତି—ଆମେ କୋଡ଼ିଏ ଟଙ୍କା ଲେଖାଏଁ ଦେଉଛୁ । ବୋକା ଲୋକଗୁଡ଼ାକ ବି ତାଙ୍କର କଥାରେ ମାତିଯାଆନ୍ତି । କୋଡ଼ିଏ ଟଙ୍କା ନ ନେଲେ ଭୋଟ ଦେବେ ନାହିଁ ବୋଲି ଅଡ଼ି ବସନ୍ତି । ଲୋଭୀ ଅଲକ୍ଷଣାଗୁଡ଼ାଙ୍କୁ ନ ଦେଲେ ମହାବିପଦ । ଆମେ ନ କିଣିଲେ ଭୋଟକୁ କଅଣ କାଞ୍ଜି କରିବେ ? ଯେଉଁ ଅଗାଧିଆ ମନେପଡ଼ିଲା ତାକୁଇ ଭୋଟ ଦେଇଦେବେ ବେଗର ଟଙ୍କାରେ । କହ ହୋ, ଭୋଟର ଦାମ ଯଦି କୋଡ଼ିଏ ଟଙ୍କା ନ ହେଉଛି ତେବେ ଦୁଇ ଟଙ୍କାରେ ଦେଇଦିଅ । ବିନା ମୂଲ୍ୟରେ ଅଗାଧିଆଙ୍କୁ ଦେବ କାହିଁ ?"

"ଆରେ କାହିଁ କିଆଁ ପଚାରୁଛ ନା ? ମନରେ ଗୋଟାଏ ଶବ୍ଦ । ଶ୍ବେରକୁ ମାନ କରି ଲୋକେ ପୁଣି ଝପରରେ ଖାଆନ୍ତି ତ ! ମୋଟ ଉପରେ ଆମେ ମାଗଣାରେ ଦେବା ପଛକେ କୁଛୁକୁଛିଆ, ଗାଞ୍ଜିଆ-କଷା ଗାଧିଆଙ୍କୁ କେବେହେଲେ ଦେବା ନାହିଁ । ଭଲରେ ଭଲ, ନାହିଁ ନଥିବା ଟଙ୍କା ରୁଣ୍ଡେଇଛନ୍ତି; ଆମକୁ ଦେଲାବେଳକୁ ଟଙ୍କା କବଳ । ଆମେ କେତେ ରୁଣ୍ଡେଇଛୁ; ସେମାନଙ୍କ ପାଟିରେ କେତେ ସ୍ୱାହା କରୁଛୁ ସେ ହିସାବ ତ ସେମାନେ ଦେଖୁନାହାନ୍ତି । ସେ ଯାହାହେଉ, ଲୋକେ ତ ହାଉଁଆ ହୋଇଗଲେଣି, ଆଉ ଏ ହାଉଁଆପଣ ବି ଫି ନିର୍ବାଚନ ବେଳକୁ ବଢ଼ିଲାଗିଲାଣି । ସେମାନଙ୍କ ପାଇଁ ଗଲା ନିର୍ବାଚନ ଅପେକ୍ଷା ଆହୁରି ବେଶି ଟଙ୍କା ଯୋଗାଡ଼ କରିବାକୁ ହେବ ।"

ଏ କଥାଟା ସମସ୍ତଙ୍କ ମନକୁ ପାଇଲା । ରୁଣା ନଥିପତ୍ର ଘଣ୍ଟା-ହୋଇ ଜଣାପଡ଼ିଲା ଯେ, ରାଜ୍ୟ ପାଇଁ ଦୁଇ କୋଟିରୁ କିଛି ଅଧିକ ଖର୍ଚ୍ଚ ହେଉଛି । ଏଥର ହିରଣ୍ୟଗର୍ଭା ଭୋଟର୍‌ମାନଙ୍କ ପେଟରେ ଛଅ ସାତ

କୋଟି ଟଙ୍କା ଭସ୍ମ ହୋଇଯିବ । ଦୁଇ କୋଟି ଟଙ୍କା ଉଠେଇବାକୁ ତ ନାକରୁ ବୁଡ଼ାଣିଢାଣି ବାହାରି ପଡ଼ୁଥିଲା । ଏଥର ପୁଣି ୭୨ କୋଟି !!

ଜଣେ ପୁରୁଖା ଗାନ୍ଧିଆ କହିଲେ—"ପୁରୁଣା ପନ୍ଥାରେ ଏତେ-ଗୁଡ଼ାଏ ଧନ ସଂଗ୍ରହ କରିହେବନି । ବ୍ୟବସାୟୀ, କଣ୍ଟ୍ରାକଟରମାନେ ଚୁନ୍ଦାମାଙ୍ଗୁଆ ହୋଇଗଲେଣି । ଆଗେ ସିନା ସବୁ ଚୁନ୍ଦା ଆମେ ପାଉଥିଲୁ । ଏବେ କିନ୍ତୁ ବ୍ୟବସାୟୀ ଓ କଣ୍ଟ୍ରାକ୍ଟରମାନେ ତରକା ପଡ଼ି ଅଗାନ୍ଧିଆମାନଙ୍କୁ ହିଁ ସେଥିରୁ ପଣି ଦେଲେଣି । ସେମାନେ ତ ଡାକ-ପୁକାର ବାହାରେ କହିଲେଣି—କୋଉ ସର୍ବଗିଳାଟା କେତେବେଳେ ଗାଦିରେ ବସିଯିବ ତାହା ସ୍ୱୟଂ ନାରାୟଣଙ୍କୁ ଅଗୋଚର । ଏଣୁ ସବୁ ସର୍ବଗିଳାଙ୍କ ପାଟିରେ କିଛି କିଛି ପକେଇଦେବା ବିଜ୍ଞତାର କାର୍ଯ୍ୟ । ଆମେ ଯାହା ପାଉଥିଲୁ ତାକୁ ଏବେ ସମସ୍ତେ ବାଣ୍ଟି ନେଲେଣି । ଆଉକୁ ନୂଆ ନୂଆ ଉପାୟ ଓ ଥାନ ଖୋଜି କାଢ଼ିବାକୁ ହେବ । ଏଇଟା କିଛି ଅଳ୍ପକିଆ କଥା ନୁହେଁ । ଏଇଟା କ'ଣ ଲଡ଼ୁଖିଆ କଥା ହେଉଛି ଯେ—ଧର ଲଡ଼ୁ ପକା ପାଟିରେ, ଦେ ଗ୍ଳେବେଇ, ଠେଲ୍ ପେଟକୁ । ଏଥିପାଇଁ ଗୋଟିଏ କମିଟି ଗଢ଼ିବାକୁ ହେବ । କମିଟିରେ ପାଞ୍ଚଜଣ ବସି ମୁଣ୍ଡର ଦହି ମନ୍ଥିବେ, ତେବେ ଯାଇଁ ଉପାୟ-ଲହୁଣି ବାହାରିବ । ପ୍ରତ୍ୟେକ ଉପାୟର ଭଲମନ୍ଦ ବିଚାର କରିବାକୁ ହେବ । ଢେଲକୁ ଫିଙ୍ଗି ଭଲକୁ ଆଦରିବାକୁ ହେବ । ଏଥିପାଇଁ ବହୁତ ସମୟ ଲୋଡ଼ା । ସେ କାମକୁ ଏବଠୁଁ ଆରମ୍ଭ କରାଯାଉ ।" ଶେଷରେ ତାଙ୍କରି କଥା ରହିଲା । ଦିନ ଦେଇଟାରେ ଗୋଟିଏ ଟାଣୁଆ କମିଟି ଗଢ଼ା ହୋଇଗଲା । ଦହିମଂଥା ଦିନରାତି ଲାଗିଲା । ହେଲେ ଗୁଣ୍ଡୁଦୁଧର ଦହି କି କଅଣ, ଲହୁଣିର ଦେଖା ମିଳିଲା ନାହିଁ । ଜଣେ ସଭ୍ୟ କହିଲେ, "ଆମେ ତ ନିଜ କଟୁରିରେ ନିଜ ଗୋଡ଼କୁ ହାଣି ପକେଇଲୁ, ଅସଲ ଜିନିଷ କେନ୍ଦୁ ପତ୍ରଟାକୁ ଯାହା ଜାତୀୟକରଣ କରି ତାର ବ୍ୟବସାୟକୁ କର୍ପୋରେସନ ହାତରେ ଛାଡ଼ିଦେଲୁ । ଏଇଟା କଅଣ ହେଲା ନା, ଘଇତା ମରୁ ପଛକେ ସଉତୁଣୀ 'ରାଣ୍ଡ ହେଉ । ଅଗାନ୍ଧିଆ ଦଳ ଯେମିତି ଏଥିରୁ କିଛି ନ ପାଇବେ ଆମେ ସେଇ ବ୍ୟବସ୍ଥାଟା କରିଦେଲୁ । ଅଗାନ୍ଧିଆଙ୍କ ସଙ୍ଗେ

ଆମର ବି ଅମାଲୁଖିଆ ବନ୍ଦ ହୋଇଗଲା । ଏବେ ଅମାଲୁଖିଆ କୋଉ ବନ୍ଦ ହୋଇପାରୁଛି ? କର୍ମଚାରୀଏ ବେଶ୍ ଅମାଲୁଖିଆରେ ଲାଗି ପଡ଼ିଛନ୍ତି, ଆମ ପାଇଁ ଅଛି କିଛି ।"

ଆଉଜଣେ କୁନ୍ଥେଇ କୁନ୍ଥେଇ କହିଲେ—"ଏକାବେଳେକେ ଭାଙ୍ଗି ପଡ଼ିବାର କାରଣ ନାହିଁ, ଏଣିକି ନଗରପଦରେ ଆମେ ତହିଁରୁ ଟଙ୍କା ଖାଇପାରିବା । କର୍ପୋରେସନର କର୍ମଚାରୀମାନେ ନିଜ ପକେଟକୁ ନଗରପଦ କରିବା ପାଇଁ ଆମ ପକେଟରେ ଗୋଟାଏ ମୋଟା ଅଂଶ ମୁରେଇବେ । ଏ ପନ୍ଥାରୁ ଏକାବେଳେକେ ଆଶା ଛାଡ଼ିଦେବା ଠିକ୍ ନୁହେଁ । ଏବେ ଆଉ ଅନ୍ୟ ବାଟ ଖୋଜ ।"

ଜଣେ କହିଲେ—"ବ୍ୟବସାୟୀମାନଙ୍କଠାରୁ ଚାନ୍ଦା...ଏଇଟା ତ ଆମର ଏକପ୍ରକାର ଯଜମାନୀ । ଏଥର ସେମାନଙ୍କଠାରୁ ଆହୁରି ବେଶୀ ଚାନ୍ଦା ଜୋରଜୁଲମ କରି ଆଦାୟ କରିବାକୁ ହେବ ।" ଆଉ ଜଣେ ବାଧାଦେଇ କହିଲେ—"ସେଇଟା ଆଉ ଏକା ଆମର ଯଜମାନୀ ହୋଇ ରହି ନାହିଁ । ଅଗାଧିଆ ଦଳମାନେ ସେଠି ଧୀରେ ଧୀରେ ଅଙ୍ଗୁଠି ଟୁରେଇ ବାହା ପୂରେଇ ସାରିଲେଣି । ଆଗେ ବ୍ୟବସାୟୀମାନେ କି ସୁନ୍ଦର ଦାତାକର୍ଣ୍ଣ ପରି ଯାହା ମାଗୁଥିଲୁ ତାହା ସାଥେସାଥେ ଦେଇ ଦେଉଥିଲେ । ଏବେ କେତେ ଯେ ନଖରା ଦେଖାଉଛନ୍ତି ତାର ସୀମା ନାହିଁ । ରାଜନୀତି ସେମାନଙ୍କ ଭିତରେ ପୂରାପୂରି ପଶିଲେଣି । ସେମାନେ ବି ଦି' ଫାଙ୍କ ହୋଇଗଲେଣି, ଫାଙ୍କେ ଅଗାଧିଆଙ୍କ ଦୋଳରେ ପଡ଼ି ଆମ ଆଡ଼କୁ ଚାହୁଁନାହାନ୍ତି । ଅଗାଧିଆଙ୍କୁ ଲକ୍ଷେ ଦେଲେ ଆମକୁ ଦେଉଛନ୍ତି ଶହେ । ଆମ ତରଫ ବାଲାଏ ବି ଲୁଚେଇ ଲୁଚେଇ ଅଗାଧିଆଙ୍କୁ ଦେଉଛନ୍ତି । ଜଣେ ଇମିତିଆ ବ୍ୟବସାୟୀଙ୍କୁ ତାର ଏକ ସାଙ୍ଗ ପଚାରିଲା—ହଇଏ, ଦି'ଆଡ଼େ ଟଙ୍କା ଦେଉଛ କାହିଁକି ? ସେ ସାଫ୍ କହିଦେଲା—ଆରେ କୋଉ ଶଳାଟା କେତେବେଳେ ମନ୍ତ୍ରୀ ହୋଇଯିବ କିଏ ଜାଣୁଛି । ତେଣୁ ଦି'ଆଡ଼େ ପକାଇବା ଭଲ । ଯିଏ ବି ଆସୁ ତା ପାଟି ବନ୍ଦ । ଆମ ଟଙ୍କା ତ ତା' ପାଟିରେ ପଶିଥିବ, ଆଉ ସେ କହିବ

କରୁ । ଏକଥା ଶୁଣିବା ମାତ୍ରେ ମୋ କାନ ଝେଁ ଝେଁ ଡାକ ଦେଲା । ଏମାନଙ୍କଠାରୁ କିଛି ମିଳିବ, ହେଲେ ଆଗ ପରି ନୁହେଁ । ଏ ପନ୍ଥା ଥାଉ; କିନ୍ତୁ ଆଉ ଅନ୍ୟ ନୂଆ ପନ୍ଥା ନିହାତି ଦରକାର ।”

ଜଣେ କହିଲେ—“ପ୍ରଥା, ପରମିଟ୍, ଲାଇସେନ୍ସ ପାଇଁ ଆଉକୁ ଚଉବଳ ଚାନ୍ଦା ଆଦାୟ କରିବାକୁ ପଡ଼ିବ । ପନ୍ଥାଟା ପୁରୁଣା ହେଲେ ବି ପଇସା ଅଧିକ ମିଳିବ । ଆଉ ବି ଏ ପଇସାଟା ଏକାବେଳେକେ ନିରୁତା । ଅଗାଦଆଙ୍କ ହାତରେ ଫଟା ଫାଇଲଟାଏ ବି ପଡ଼ିବ ନାହିଁ । ଗାଢଆଙ୍କ ଛଡ଼ା ଆଉ କିଏ ସେଗୁଡ଼ାକ ସେମାନଙ୍କୁ ଦେଇପାରିବ ଯେ ସେମାନେ ଟଙ୍କା ଗଣ୍ଠିଆରୁ ଗଣିଦେବେ ? ତଥାପି ଏତିକରେ କାମ ଚଳିବନି ଆଉ ଅନ୍ୟ ପନ୍ଥା ଖୋଜ ।”

ଜଣେ କହିଲା—“ସରକାରୀ କର୍ମଚାରୀମାନେ ଓଶା କଳା-ଟୋପେଇ କରୁନାହାନ୍ତି । ସେଇ କର୍ମଚାରୀମାନଙ୍କଠାରୁ ଆମର ପଣି ଆଦାୟ ଟିକିଏ ଜୋର୍‌ସୋର୍‌ରେ କଲେ ସେ ବାଟରେ ଗୋଟାଏ ମୋଟା ଟଙ୍କା ଆଦାୟ ହୋଇପାରିବ । କଣ୍ଟାରେ କଣ୍ଟା କାଢ଼ିଲା ପରି ହେଇ କର୍ମଚାରୀମାନଙ୍କ ସାହାଯ୍ୟରେ କର୍ମଚାରୀଙ୍କଠାରୁ ପଣି ଆଦାୟ ହୋଇପାରିବ ।”

ସଭାରେ ଗୁଣୁଗୁଣୁ ଗୋଳ ଉଠିଲା—ଏ କିପରି ଏକ ଅଜବ କଥା ! ଭାଇଠୁ ଭାଇ ଚେଣ୍ଟି ଚପି ଆଣିବ, ସେ ଆମକୁ ଚାନ୍ଦା ଦେବ କାହିଁକି ?

ଅନ୍ୟ ଜଣକ କହିଲେ—“ଆରେ ଏତିକ ଟିକିଏ ଦାନ୍ଦ ମୁଣ୍ଡରେ ନାହିଁ, ଚାନ୍ଦାର ଚେଷ୍ଟମଗର ଚେଷ୍ଟା କରିବ କିପରି ? କଥା ହେଉଛି ଡିରେକ୍ଟର ଓ ଚିଫ୍ ଇଂଜିନିଅରମାନଙ୍କୁ ସେମାନଙ୍କ ବିଭାଗରେ ଧନ ଧନ ବଦଳି କରିବାକୁ କୁହାଯିବ । ଭଲ ଭଲ ଥାନରେ ଥିବା କର୍ମଚାରୀମାନେ ବଦଳି ନ ହେବାକୁ ଆଉ ଖରାପ ଥାନରେ ଥିବା କର୍ମଚାରୀମାନେ ବଦଳି ହେବାକୁ ବଦଳି କରିଥିବା କର୍ମଚାରୀମାନଙ୍କ

କଳା ଗାଞ୍ଜିଆରେ ଆଗରୁ କଳାପୋତେଇ କରିଥିବା ଧନ ପୂରେଇବେ । ତହିଁରୁ ଆମପାଖକୁ ପୁଣି ସିଧାସଳଖ ଆସିବ ! ବହୁକ୍ଷେତ୍ରରେ ଚୂଗ ଟଙ୍କାଟା ମଧ୍ୟ ଆମପାଖକୁ ଚାଲିଆସିବ । କିଛି ହେଲେ ତ ଟଙ୍କା ଏ ବାଟେ ଆସିଯିବ ।"

କଥାଟାକୁ ଆଉ ଜଣେ ନାପସନ୍ଦ କରି କହିଲ—"ହେଃ ! ଏଇଟା ଗୁହଘାଣ୍ଟି ପଇସା ଗୋଟେଇବା ପରି ହେବ । ହାତ ଗନ୍ଧେଇବ ସିନା ଫଳ ଭଲ ହେବ ନାହିଁ । ଏମାନେ ବାଧ୍ୟହୋଇ ଟଙ୍କା ଦେବେ, ହେଲେ ଅଫିସ ଭିତରେ ଥିବା ଆମ ଗୁମର ସବୁ ନେଇ ଖବରକାଗଜବାଲାଙ୍କ କାନରେ ପୂରେଇବେ । ଏ ବାଟରେ ଟଙ୍କା ଅପେକ୍ଷା ବଦନାମ ବହୁତ ବେଶି ମିଳିବ । ମୋ ମତରେ ଏ ବାଟଟା ଛାଡ଼ିଦେବା ଉଚିତ ।"

ଜଣେ ପୁରୁଖା ଧନାମୁଣ୍ଡିଆ ସଭ୍ୟ କହିଲେ—"ଆହେ, ଆମର କୋଉ ସୁନାମଟା ଅଛି ଯେ, ଆମେ ବଦନାମଟାକୁ ଡରିଯିବୁ ? ଲୋକେ ତ ଗଲା ୨୮ବର୍ଷ ହେଲା ହେଇ ମାରିନେଲେ, ହେଇ ଖାଇଗଲେ, ହେଇ ଅଚଳାଚଳ ସମ୍ପତ୍ତି କରିଗଲେ ବୋଲି ଚିଲେଇବାରେ ଲାଗିଛନ୍ତି, ଚିଲେଇ ଚିଲେଇ ସେମାନଙ୍କ ପାଟିରୁ ବଟ ବାହାରି ପଡ଼ିଲାଣି, ତଥାପି ଆମକୁ ଭୋଟ ଦକବାରେ ଲାଗିଛନ୍ତି ! ଗାଦି ଆମର ବଜାୟୁ ରହିଲେ ଗଲା । ବଦନାମକୁ ପଚାରେ କିଏ ? ଆମ ଦେଶଟା କଅଣ ଆମେରିକା ହୋଇଛି ଯେ, ସାମାନ୍ୟ ଟିକିଏ ବଦନାମ ପାଇଁ ସଭାପତି ବି ଗାଦିରୁ ଓହ୍ଲେଇପଡ଼ନ୍ତି । ବଦନାମକୁ ଡରି ଏ ବାଟଟା ଛାଡ଼ିଦେବା ଉଚିତ ନୁହେଁ । ତେବେ ଏ କ୍ଷେତ୍ରରେ ଉପୁଜାତ ଖୁବ୍ କମ୍ ଥିବା ଦୃଷ୍ଟିରୁ ଅନ୍ୟ କ୍ଷେତ୍ର ଖୋଜିବା ଦରକାର ।"

ଅନ୍ୟ କ୍ଷେତ୍ର ଖୋଜା ଚାଲିଲା । ଖୋଜି ଖୋଜି ସମସ୍ତେ ଝାଳ-ନାଳ ହେଲେ । ହେଲେ କ୍ଷେତ୍ରର ଚିହ୍ନବର୍ଣ୍ଣ କାହିଁ ?

ହତାଶାର ସମୁଦ୍ର ମଧ୍ୟରେ ବୁଡ଼ିଯାଉଥିବାବେଳେ ହଠାତ୍ ଏକ ଉଦ୍ଧାର-ତରୀ ଦେଖାଗଲା । ମୁରୁକିହସା ଦେଇ ଶୀର୍ଷନେତା

କହିଲେ—"ମା ଭୈ, ମା ଭୈ । ଏକ ଅତି ଗୁପ୍ତ ଅଭିନବ କ୍ଷେତ୍ରର ସନ୍ଧାନ କେନ୍ଦ୍ରରୁ ଆସିଛୁ । ସର୍ବସାଧାରଣଙ୍କ ହିତ ଦୃଷ୍ଟିରୁ ତାହା ପଦାରେ ପ୍ରକାଶ କରାଯିବ ନାହିଁ । ସେ କ୍ଷେତ୍ରର ମହିମା ଦେବତାଙ୍କୁ ଅଗୋଚର । ଆମେ ଢ଼ଗୋଡ଼ିଆ ମଣିଷଙ୍କ ବା ଛାର ! ଏତିକି ମାତ୍ର ସୂଚନା ମୁଁ ଦେଇପାରେ ଯେ, ସେହି କ୍ଷେତ୍ରରୁ ଏକସଙ୍ଗେ ଦୁଇ ପ୍ରକାର ଫସଲ ବାହାରିବ । ଅର୍ଥାତ୍ ତୁମେ ଧାନ ବୁଣିଲେ ସେଥିରୁ ଉଭୟ ଧାନ ଓ ଗହମ ଫଳିବ । ଆମେ ଭାତବେଳା ଭାତ ରାତିବେଳା ରୁଟି ଖାଇବୁ । ତହିଁରେ ଯଦି ଆମ୍ବ ଗଛଟିଏ ଲଗାଇଦେବୁ ତେବେ ସେ ଗଛର ଗୋଟିଏ ଡାଳରେ ଆମ୍ବ ଓ ଆଉ ଗୋଟିଏ ଡାଳରେ କଦଳୀ ଫଳିବ ।"

ସମସ୍ତଙ୍କର ଆଖି ଡମା ଡମା ଓ ପାଟି ମେଲା ହୋଇଗଲା । କେତେଜଣ ହସିଉଠିଲେ । ଆଉ କେତେଜଣ ଗମ୍ଭୀର ହୋଇଯାଇ କହିଲେ—"ଆମର ଜୀବନମରଣ ସମସ୍ୟା ଆଲୋଚନାବେଳେ ଏପରି ଲଘୁ କଥାବାର୍ତ୍ତା ହେବା ଠିକ୍ ହେଉନି ।"

ପୂର୍ବ ବକ୍ତା କହିଲେ—"ମୋଟେ ନୁହେଁ, ମୋ କହିବାର ଉଦ୍ଦେଶ୍ୟ ହେଉଛି ଯେ, ଯେଉଁ ଗୁପ୍ତପନ୍ଥାର ନିର୍ଦ୍ଦେଶନା କେନ୍ଦ୍ରରୁ ଆସିଛି, ତାହା ଏକା ଗୁଳିକେ ଦୁଇଟି ଚଢ଼େଇ ଶିକାର ପରି କାର୍ଯ୍ୟ କରିବ । ଅର୍ଥାତ୍ ଧନକୁ ଧନ ମିଳିବ ତା' ସହିତ ଲୋକ-ସମର୍ଥନ ବି ମିଳିବ । ଏଣୁ ଭୋଟଟିକ ନିଶ୍ଚିତଭାବରେ ଆମର । ଏ ପନ୍ଥାଟି କାଲୁ ପଦାରେ ପ୍ରକଟ କରି ହେବନି । ଆମ ଗାନ୍ଧିଆଦଳର ଲୋକେ କ୍ରମେ ଏ ପନ୍ଥାର ସ୍ୱରୂପ ଜାଣିପାରିବେ । ସମସ୍ତଙ୍କର ଧୈର୍ଯ୍ୟ ଧରିବା ଉଚିତ ।"

ଗାନ୍ଧିଆ ଦଳର କର୍ମୀମାନେ ସିନେମାର ନିର୍ଜୀବ ଧଳା ପରଦାକୁ ଉତ୍କଣ୍ଠାର ସହ ଚାହିଁ ରହିଲେ, କେତେବେଳେ ଅଭିନବ ନୂଆ ପନ୍ଥାର ଦୃଶ୍ୟ ନିର୍ଜୀବ ଧଳା ପରଦାକୁ ସଜୀବ କରିବ । ବହୁ-ଦିନର ଅପେକ୍ଷା ପରେ ସୁରିଆଡ଼ି ଆଲୁଅ ଲିଭିଗଲା । ଧଳାପରଦା

ସଜୀବ ହୋଇଉଠିଲା । ଅନ୍ନଂ ଦେହି, ଅନ୍ନଂ ଦେହି ଚିତ୍କାରରେ ଗୃହଆଡ଼ କମ୍ପି ଯାଉଥାଏ । ସରକାର ଇସ୍ତାହାର ଉପରେ ଇସ୍ତାହାର କୁଟେଇ ପକାଉଥାନ୍ତି । ଲୋକେ ଯଦି ଗାଈପରି କାଗଜଗୁଡ଼ାକ ଚୋବାଇ ଖାଇ ପାରୁଥାନ୍ତେ ତେବେ ଅନ୍ନଂ ଦେହି ଚିତ୍କାର ପବନରେ କୁଆଡ଼େ ମିଳେଇ ଯାଇଥାନ୍ତା । ତେଣେ ଲୋକଙ୍କ ଚିତ୍କାରକୁ ଏଣେ ସରକାରଙ୍କ ଚିତ୍କାର—ଖାଦ୍ୟ ଯଥେଷ୍ଟ ଅଛି । ଏ କଳାବଜାରି, କଳାପୋତିଆ, ଲାଞ୍ଚଖୋର, ଚୋରାବେପାରୀମାନଙ୍କୁ ସରକାର ଦୃଢ଼ହସ୍ତରେ ଦମନ କରିବେ । ନିକଟତମ ବତୀଖୁଣ୍ଟରେ ଝୁଲେଇ ଦେବେ । ମିସା ଆଇନ ବଳରେ ଏମାନଙ୍କୁ ହାଣ୍ଡିରେ ପୂରେଇ ଫାଣ୍ଡିକୁ ନେଇଯିବେ । ସରକାରଙ୍କ ଚିତ୍କାରରେ ଲୋକଙ୍କ ଚିତ୍କାର ବୁଡ଼ିଗଲା । ଚିତ୍କାର-ପର୍ବ ପରେ କାମ-ପର୍ବ ଆରମ୍ଭ ହୋଇଗଲା । ପୁଲିସଙ୍କ ହାତରେ 'ମିସା' ନାଗପାଶ ଧରେଇ ଦେଇ ସରକାର ହୁକୁମ ଦେଲେ—"ଧର-ଧର-ଭଣ୍ଡାରିଆକୁ ଧ', ଆଉ ଦେଖ, ସେମାନଙ୍କୁ ବିଲ୍‌କୁଲ୍ ଛାଡ଼ିବ ନାହିଁ । ବିରାଡ଼ି ଆଗରେ ଶୁଖୁଆ ହଲେଇଲା ପରି ସେମାନେ ତମ ଆଗରେ ନୋଟ୍‌ବିଡ଼ା ହଲେଇବେ । ଖବରଦାର ତା' ଆଡ଼କୁ ଚାହିଁବ ନାହିଁ । ତୁମ କାମ କେବଳ—ଧର ବାନ୍ଧ, ଜେଲ୍‌କୁ ଘୋଷାଡ଼ି ନିଅ, ଗାରଦରେ ତାଙ୍କୁ ଠୁଙ୍କି ଦିଅ । ଆଉ ଦେଖ, ବେଶି ଜୋର୍‌ରେ ଘୋଷାଡ଼ି ନେବନି । ଖଣ୍ଡିଆ ମଣ୍ଡିଆ ଯେମିତି ନ ହୁଅନ୍ତି ।"

ବାସ୍, ମୁହଁରୁ କଥା ସରୁ ନ ସରୁଣୁ ହନୁମନ୍ତ ସେନା ଯେମିତି ମଧୁବନରେ ପଶିଗଲା । ମୂଷା ଉପରକୁ ବିରାଡ଼ି ଝାମ୍ପ ମାରିଲା ପରି ପୁଲିସ୍ ଚୋରାବେପାରୀ, କଳାପୋତିଆଙ୍କ ଉପରକୁ ଖପ୍‌ଖାପ୍ କୁଦି ଗୋଟା ଗୋଟା କରି ଜେଲ ଖୁଆଡ଼କୁ ବୋହି ନେଇଗଲେ । ବଦମାସିଆ ବ୍ୟବସାୟୀମାନେ ହଇଜା ଖାଇଗଲେ । ସେମାନଙ୍କର ମୁଣ୍ଡ କାଉଡା ହୋଇଗଲା । ଏତେ ପ୍ରୀତି, ଏତେ ବନ୍ଧୁତ୍ୱ, ଏତେ ଦହଦଷ୍ଟ, ଏତେ ନୋଟ ଖସା କଲୁ କାମ କଲାନି ! ସତେ କଅଣ ପ୍ରଭୁତମ ରାଗିଗଲେ !

ତେଣେ ଲୋକଙ୍କୁ ଆଉ ସମ୍ଭାଳେ କିଏ ? "ଆଚ୍ଛା ହେଉଛି, ଭଲ ହେଉଛି, ଆହୁରି ବାନ୍ଧ, ଶଳାଙ୍କୁ ବତୀଖୁଣ୍ଟରେ ଲଟକେଇ ଦିଅ"

ଚଢ଼ି ଦେଇ ସେମାନେ ଭୋକ ଶୋଷ ଭୁଲିଗଲେ । ସମସ୍ତଙ୍କ ମୁହଁରେ ଗୋଟିଏ କଥା—ଏତେ ସରକାର ଦେଖିଛୁ ହେଲେ ଏମିତିଆ ଟାଣୁଆ ସରକାର ଆମେ କସ୍ମିନ୍ କାଳେ ଦେଖିନୁ । କୋଟିପତି, ଅର୍ବୁଦପତି-ଗୁଡ଼ାଙ୍କୁ ବାନ୍ଧି ଜେଲରେ ପୁରେଇ ଦେଲା ନା ! 'ଅନ୍ନଂ ଦେହି' ଡାକ ଧୂମେଇଗଲା ।

ନେମ୍ବରବାଲାଏ ହାଉଳିଖିଆ ବ୍ୟବସାୟୀମାନଙ୍କୁ ଜେଲ୍‌ରେ ଗୋପନରେ ଭେଟି ପ୍ରବୋଧ ଦେଲେ—"ଫିକର୍ ମତ୍ କରୋ, ଏଥିରେ ଆମର ଦବିଯିବାର କିଛି ନାହିଁ । ଆମର ଲୋଡ଼ା ରୁପିଆ, ଏତକ ଠିକ୍ ଥିଲେ ହେଲା । ତେଣିକି ହାତ କଡ଼ି, ଗୋଡ଼ କଡ଼ି, ମୁହଁ କଡ଼ି, ନାକ କଡ଼ି ଆଉ ଯେତେ କଡ଼ି ହେଉଛି ହେଉ । ସରକାର ଏପରି କରି ଆମକୁ ବରଂ ବଞ୍ଚେଇ ଦେଇଛନ୍ତି । ଲୋକ ଯେମିତି ହାଉହାଉ କରି ଆସୁଥିଲେ, ସେମାନଙ୍କୁ ଅଟକରି ଦେଇ ନ ଥିଲେ କଅଣ ନାହିଁ କଅଣ ହୋଇଯାଇଥାନ୍ତା । ଲୋକେ ବୁଝିଗଲେ ଯାହାହେଉ ସରକାର ଗୋଟାଏ ହାତ ଦେଖେଇଲେ । ଆମେ ବି ବୁଝିଗଲୁଣି ଆମର କଅଣ ଅଟେଇ ହୋଇଯାଇଛି । ଆମେ ଗାନ୍ଧିଆଙ୍କୁ ଦଶପଣ ଓ ଅଗାନ୍ଧିଆଙ୍କୁ ଛଅପଣ ଦେଉଥିଲୁ, ଏଥର ଗାନ୍ଧିଆଙ୍କୁ ପନ୍ଦରପଣ ଦେବାକୁ ପଡ଼ିବ । ଏଠି କିଛିଦିନ ଛୁଟିରେ କଟାଇବାକୁ ପଡ଼ିବ । ଘରେ ଥିଲେ ଲୋକେ କେତେବେଳେ ହଠାତ ଚଢ଼ଉକରି ମାରଧର କରିଥାନ୍ତେ । ଏଠି ସେ ଭୟ ନାହିଁ । ଏଠି ତ କୋଉ ଜିନିଷର ଅଭାବ ନାହିଁ । ଖୋଦ୍ ଜେଲର୍ ସାହାବ ଦିନକୁ ଦଶଥର ସଲାମ ବଜାଉଛି । ତେଣେ ବେଉସା ପୂର୍ବପରି ଚାଲିଛି ଆଉ ଚାଲିବ ।"

ଗୋଟିଏ ଦୁଇଟା ନବୁଦ୍ଧିଆ ବ୍ୟବସାୟୀ ଏକଦମ୍ ଭାଙ୍ଗି-ପଡ଼ିଥିଲେ । ସେମାନେ ଏହା ଶୁଣି ସରକାରଙ୍କ ପ୍ରଶଂସା ନ କରି ରହିପାରିଲେ ନାହିଁ ।

ଗାନ୍ଧିଆଦଳର ନିର୍ବାଚନ ପାଣି ବର୍ଷ ବର୍ଷ ଧରି ଯେତେ ଫୁଲି ନ ଥିଲା ଏଇ ଦିନ କେଇଟାରେ ତା'ର ଦଶଗୁଣ ଫୁଲିଗଲା । ପାଣି ପାଇଁ ପଇସା ଏତିକିରେ ଯେ ସରିଗଲା ତା ନୁହେଁ । କଡ଼ାକଡ଼

ପୁଲସ ଲଗାଇ କୋଟି କୋଟି ଟଙ୍କା ସୁନା ରୁପା ଓ ବିଦେଶୀ ଜନିଷ ଜବତ ହୋଇଥିଲା । ତାକୁ ଦେଖି ଗାନ୍ଧିଆ ଦଳଙ୍କର ପାଟିରୁ ଲାଳ ଗଡ଼ିଲା । ତାକୁ ହଜମ କରିବା କିନ୍ତୁ ସହଜ କଥା ନୁହେଁ । ଏବେ ଲୋକଙ୍କ ଆଗରେ ସେଗୁଡ଼ାକ ଜବତ ହୋଇଛି । ସିଧା ସଳଖ ଗିଳିଦେଲେ ପେଟ ଫାଟିବା ଧ୍ରୁବ ସାର ହେବ । ନ ଖାଇ ପାରିଲେ ଜୀବନଭର ଗୋଟିଏ ଅବଶୋଷ ରହିଯିବ । ପ୍ରାଣଟା ଖାଲି ଉଦ୍ବେଳବିକଳ ହୋଇଯିବ । ଏମିତିଆ ଦ୍ୱନ୍ଦ୍ୱରେ ପଡ଼ି ଗାନ୍ଧିଆ ଦଳ ବାଣ୍ଟି ହୋଇଗଲେ । ପ୍ରବଳ ଇଚ୍ଛା ବାଟ ଖୋଲିଦିଏ ବୋଲି ପଣ୍ଡିତମାନେ କହନ୍ତି । ଗାନ୍ଧିଆଙ୍କ ଅତି ପ୍ରବଳଇଚ୍ଛା ବାଟକୁ ପେଲି ଖୋଲିଦେଲା ।

ସରକାର ଏକ ପ୍ରେସ୍ ରିପୋର୍ଟରେ ଜଣେଇଦେଲେ ଯେ, ଯେଉଁସବୁ ବେଆଇନ ରୁପା ଓ ସୁନା ଧରାପଡ଼ିଛି ସେଗୁଡ଼ାକ ଭୁଚ୍ଛା ଗିଲ୍‌ଟି, ସରକାର ସେଗୁଡ଼ାକ ନଷ୍ଟ କରିଦେବେ । ଗାନ୍ଧିଆଦଳଙ୍କ କୁରୁକୁରିଆ ହସ ଆଉ ଦେଖେ କିଏ ? ନିର୍ବାଚନ ପାର୍ଣ୍ଣିର ଯେତିକ ଅଟକଳ କରାଯାଇଥିଲା ତା'ର ଊଣକଡ଼ବଲ ମିଳିଗଲା । ଶୀର୍ଷନେତା ଗୋଡ଼ ଉପରେ ଗୋଡ଼ ରଖି ପଣ୍ଡାମାନଙ୍କୁ କହିଲେ—"ଏଥର ବୁଝିପାରିଲ ତ ଗୋଟିଏ ଗଡ଼ରେ ଉଭୟ ଧାନ ଓ ଗହମ କେମିତି ଫଳେଇଦେଲୁ, ଏ ନୂଆ ପନ୍ଥାରେ ଲୋକେ ଖୁସ୍ ଆଉ ଆମ ନିର୍ବାଚନ ପାର୍ଣ୍ଣି ଟୁମାଟୁମ । ଏଥରକ କୋଉ ବାପୁଡ଼ା ନିର୍ବାଚନ ଫୁଲକାକୁ ଆସୁଛି ଆସୁ ।"



# ॥ ଭୋଟର ତାଲକା ॥

ଖଣ୍ଡପୁର ନିର୍ବାଚନମଣ୍ଡଳୀରେ ଧନୁଶର, ଚକଲଙ୍ଗଳ, କୁଡ଼ିଆ, ଛାତ ଓ ଘଡ଼ିର ନେତାମାନେ ସେଦିନ ଏକଜୁଟ୍ ହୋଇଗଲେ । ଖଣ୍ଡପୁରରେ ଗାଈବାଛୁରି ଏକପ୍ରକାର ଇସ୍ତମବର ପଟା କରିଥାଏ । ଗାଈବାଛୁରିର ଏପରି ଅନ୍ୟାୟ ଦଖଲରେ ଅନ୍ୟସମସ୍ତ ହତାଶ ହୋଇପଡ଼ିଥାନ୍ତି, କହିଲେ ଚଳେ । ଡାକବଙ୍ଗଳାରେ ଏତେଗୁଡ଼ାଏ ନେତା ଏକଜୁଟ ହୋଇଛନ୍ତି । ଲୋକମାନେ ଥାଟପଟାଳି ଭାଙ୍ଗୁଥାନ୍ତି । ହେଟମେଳରେ ଥାନଟା ଜଳୁଥାଉ, ପଡ଼ୁଥାଉ । କିନ୍ତୁ କାହିଁ ? ଲୋକ କୋଡ଼ିଏ କି ପଚାଶ । ଥାନଟା ବିଲ୍‌କୁଲ ଶୁନ୍‌ଶାନ୍ । ଗାଈବାଛୁରିଆ-ଗୁଡ଼ାକ ଏକବାରେ ଏକବାଗିଆ । ସେମାନେ ଭଲ କି ଗାଈବାଛୁରି ଭଲ । ଗାଈ ପଛେ ନାଠୋଇ ହେଉ, ବାଛୁରି ପଛେ ହୁରୁଡ଼ିଆ ହେଉ ସେଇ ତାଙ୍କୁ ଭଲ । ଆଉ କେହି ସେମାନଙ୍କୁ ଭଲ ଲାଗିବେ ନାହିଁ କି କାହା କଥା ଶୁଣିପିବେ ନାହିଁ ।

ଗୋଟିଏ ଖଣ୍ଡପୁରିଆକୁ ଡାକି ଚକଲଙ୍ଗଳ ନେତା ପଚାରିଲେ— "କି ହୋ ଗାଣ୍ଡୁ ସାମଲେ, ତୁମେ ବଡ଼ ବଡ଼ ମେଣ୍ଢା ଗାଈବାଛୁରିଆଙ୍କୁ ବୁଝେଇ ସୁଝେଇ ଡାକିଥିଲଟି ? ସେମାନେ କହିଲେ କଅଣ ?"

"ଆଜ୍ଞା ସେକଥା କାହିଁକି ପଚାରୁଛନ୍ତି ? ଯାହା ତ ଭଣ୍ଡ୍‌ସଣ୍ଡ୍ କହିବାର କହିଲେ, ପ୍ରତିବାଦ କଲାରୁ ଉପରକୁ ଉହୁଙ୍କି ଆସିଲେ । ମାରନ୍ତି ନ ମାରନ୍ତି । ଶଳା ସେ ଗୋଖା ଗୋଛେଇତ କହୁଛି—ଆବେ, ତୁ ଆମକୁ କି ବୁଦ୍ଧି ଶିଖେଇବୁ ବେ, ଆମେ ତ ଗାଈବାଛୁରିକୁ ଧରିଛୁ । ଦୁଧକୁ ଦୁଧ ପିଉଛୁ । ଖତକୁ କିଆରିରେ ଲଗଉଛୁ । ଏ ମଜା

ଛାଡ଼ିଦେଇ ତୋ ଚକଲଙ୍ଗଳ, ଧନୁଶର, ତାସ, କୁଡ଼ିଆ ଭିତରେ ପଶିବୁ କାହିଁ ? ସେଠି ପାଣି ଟୋପାଏ ମିଳିବ ନା ? ତୁ ଗଳାଠା ଯଥା ଚକ-ଲଙ୍ଗଳ ପଛଆଡ଼ୁ ଦୁଧ ଚୁହିଁ ପିବୁ। ହଇରେ ଗଳାକ ଚଟକଟା ପାଇଛୁ ଯେ ଗାଈବାଛୁରିଙ୍କୁ ମୁଛି ଚକଲଙ୍ଗଳ ପଛରେ ଗୋଡ଼େଇଛୁ। ଆବେ ତୁ ତ ତୁ, ତୋ ନେତାମାନେ ହଜାରେ ଚେଷ୍ଟା କଲେ ବି ଭଣ୍ଡ୍ରପୁରରେ ଆଙ୍ଗୁଠି ପୂରେଇ ପାରିବେ ନାହିଁ। ସେ ଗଳା ଝଗାଙ୍କୁ ବୁଝେଇ ଲାଭ ନାହିଁ। ମେଣ୍ଢା ମେଣ୍ଢା ଗାଈବାଛୁରିଆମାନେ ଏମିତିଆ ଝଗା-ଗୁଡ଼ାଙ୍କୁ ଟଙ୍କାରେ ପୋତି ପକାଉଛନ୍ତି। ଗଣ୍ଡି ହଲୁକ, ଅଥଚ ଗାଞ୍ଜିଆ-ସବୁବେଳେ ଝମ ଝମ। ଶଳେ ତ ବୁଝିଲେ ନାହିଁ, କିଏ ଟଙ୍କା ଦେଉଛି, କୋଉଠୁ ଆଣି ଦଉଛି। ଗୋଟାଏ ଟଙ୍କା ନେଇ ସେମାନେ କେତେ ଟଙ୍କା ହରୁଛନ୍ତି। ମନ ହଉନି ସେ ଗୋବାଙ୍କ ସାଙ୍ଗେ ଆଉ କଥାବାର୍ତ୍ତା କରିବାକୁ।”

“କଅଣ କହୁଛ ଗାଣ୍ଡୁ ସାମଲେ, ଏ ଭଣ୍ଡ୍ରପୁର ନିର୍ବାଚନ-ମଣ୍ଡଳୀ ଗୋଟାଯାକ ଗାଈବାଛୁରିଆ ? ଅନ୍ୟ କେହି ଅଣଗାଈ-ବାଛୁରିଆ ନାହାନ୍ତି ? ଏ ତ ବଡ଼ ଅଜବ କଥା।”

“ନା ଆଜ୍ଞା ! ତା ନୁହେଁ ଯେ, ଆମ ନିର୍ବାଚନମଣ୍ଡଳୀରେ ଯେଉଁ ଅବୁଝାପୁର ଗ୍ରାମପଞ୍ଚାୟତଟି ରହିଛି, ସେହି ଗୋଟିକ ଯୋଗୁ ସବୁ ଭଣ୍ଡୁର ହୋଇଯାଉଛି। ସେହି ଗ୍ରାମପଞ୍ଚାୟତର ଭୋଟର ସଂଖ୍ୟା ହେଉଛି ୫୬୭୮। ଆଉ ଅନ୍ୟ ସବୁ ପଞ୍ଚାୟତରେ ଆମ ତରଫ ଆଉ ଗାଈବାଛୁରିଆ ତରଫର ଲୋକ ଅଛନ୍ତି। କିନ୍ତୁ ସେ ପଞ୍ଚାୟତରେ ସବୁଯାକ ଗାଈବାଛୁରିଆ। ଯାହା କିଛି ଅଣଗାଈବାଛୁରିଆ ଅଛନ୍ତି ସେମାନେ ‘ଅଣ’ ବୋଲି ପଦାରେ ପ୍ରକାଶ କରନ୍ତି ନାହିଁ। ସେମାନଙ୍କର ଘର ଉପୁ, ଜଣାପଡ଼ିଗଲେ ସେମାନଙ୍କ ଚୁଟିମାଟି ଏକ ହୋଇଯିବ। ଅନ୍ୟ ସବୁ ପଞ୍ଚାୟତରେ ଆମକୁ ଅଧାଅଧି ମିଳେ। ହେଲେ ଏହି ଅବୁଝାପୁର ପଞ୍ଚାୟତର ଭୋଟର୍ ତକ ସବଡ଼ ଜୁଆଁଠୁ ଆରମ୍ଭ କରି ବୁଢ଼ା ହଡ଼ାଯାଏ ସମସ୍ତେ ଗାଈବାଛୁରି ଉପରେ ଆଉଜି ପଡ଼ନ୍ତି। କେବଳ ଏଇ ପଞ୍ଚାୟତ ଯୋଗୁଁ ଏ ନିର୍ବାଚନମଣ୍ଡଳୀଟା ଗାଈବାଛୁରିଙ୍କର

ଗୁହାଳ ହୋଇ ଅଳପାଏ ଉଷ୍ମି ରହୁଛି । ଏ ଅବୁଝା ଭୋଟର୍‌ମାନଙ୍କ ପାଇଁ ଆଉ ସେ କେତେକାଳ ରହିବ ତାହା କହି ହେବ ନାହିଁ । ଗାଈ-ବାଛୁରୀଙ୍କୁ ହୁଡ଼ୁରେଇ ହୁଡ଼ୁରେଇ ଆମେ ଥକିଗଲୁଣି । ଠାଣୁଆ ଗୁହାଳ-ଟାଏ ତ ତିଆରି ହୋଇ ସାରିଛି । ଯେତେ ଝଡ଼ ତୋଫାନ ବୋହିଲେ କୁଟାଖିଏ ବି ସେ ଗୁହାଳରୁ ଉଡ଼ୁ ନାହିଁ । ଗାଈବାଛୁରୀ ତା' ଭିତରେ ବେଶ୍ ଆରାମରେ ଶୋଇ ପାକୁଳି କରିବାରେ ଲାଗିଛନ୍ତି ।"

ଚକଲଙ୍ଗଳର ଜଣେ ନେତା ଉତ୍ତେଜିତ ହୋଇ କହିଲେ—"ନା-ନା, ଏହା ବରଦାସ୍ତ କରାଯାଇ ପାରିବ ନାହିଁ । ଆମକୁ ଯେ କୌଣସିମତେ ଗାଈବାଛୁରୀଙ୍କୁ ସେ ଗୁହାଳରୁ ଘୋଷାରି ନେଇ କାଞ୍ଜିଆହୁଦାରେ ପକେଇ ଦେବାକୁ ହେବ । ସେ ଗୁହାଳକୁ ଭାଙ୍ଗି, ଲଙ୍ଗଳରେ ସେ ଥାନକୁ ଚଷି ସେଠି ଧାନଗଛ କରିବା । ଆସନ୍ତା ନିର୍ବାଚନରେ ସେମାନଙ୍କ ଦଖଲ ଉଚ୍ଛେଦ କରିବାକୁ ହିଁ ହେବ । ସେମାନଙ୍କୁ ସୂଚେଇ ଦେବାକୁ ହେବ ଯେ ଆମେ ନାମର୍ଦ୍ଦ ନୋହୁଁ କି ଆଠମାସିଆ ଛୁଆ ହୋଇ ଜନମ ହୋଇନୁ । କିଛି ନ ହେଲା ବେଳକୁ ତାଙ୍କର ଯିଏ ମେଣ୍ଢା ତା' ଉପରକୁ କୁଦିପଡ଼ି ସଧା ଗୁଆଡ଼ା ନାଇଁଦେବୁ । ଗମ୍ଡ଼ୁ ଲହୁଲୁହାଣ କରିଦେବୁ । ଗଞ୍ଜି କମିଜ ଚିରି ଅଧା ଲଙ୍ଗଳା କରିଦେବୁ । ମେଣ୍ଢାର ଏ ଅବସ୍ଥା ଦେଖିଲେ, ବାକିତକ ଗାଈବାଛୁରୀ ଗୁହାଳ ଛାଡ଼ି ପଳେଇବେ । ମାଡ଼କୁ ମହାଦେବ ଡରନ୍ତି ।"

ଚାରବାଲାଙ୍କ ଭିତରୁ ଜଣେ ଢେଙ୍କାନାଳିଆ ନେତା ବାଧାଦେଇ କହିଲେ—"ନା-ନା-ନା, ସେ କଥା ଭୁଣ୍ଡରେ ଧରନା, ସେଥିରେ ଠିକ୍ ବିପରୀତ ଫଳ ମିଳିବ । ପାକଳା ପାକଳି କଲେ, ସେମାନଙ୍କ ବିପଦ-ଆପଦ ବେଳକୁ ଅଟକୁଗ ଯାଇ ସେମାନଙ୍କ ପାଖରେ ଠିଆ ହେଲେ କିଛି ଲୋକଙ୍କର ମନ ବଦଳିଯାଆନ୍ତା । କେତେବେଳେ ହେଲେ ଆମ ଆଡ଼କୁ ଢଳି ପଡ଼ନ୍ତେ । ଏ କାମ କଲେ ସେ ସମ୍ଭାବନା ଆଉ ଢଲ୍‌କୁଲ୍ ରହିବ ନାହିଁ । ଓଲଟି ସେମାନଙ୍କ ରାଗ ବଢ଼ିବ । ସେମାନେ ଅଧିକ ଟାଣପଣ ଦେଖାଇବେ । ସେ ସବୁ ଧୁମ୍‌ଧଡ଼ାକ କାରବାର ମୁଣ୍ଡରେ ପୂରେଇବାର ନୁହେଁ ।

କଥାଟା ସମସ୍ତଙ୍କ ମନକୁ ପାଇଲା । ଖଣ୍ଡପୁର ନିର୍ବାଚନ-ମଣ୍ଡଳୀଟା ଯେ, କେବଳ ଅବୁଝାପୁର ପଞ୍ଚାୟତ ପାଇଁ ଗାଈବାଛୁରୀଙ୍କ ଅଭେଦ୍ୟ ଦୁର୍ଗ ହୋଇ ରହିଛି, ସେ ବିଷୟରେ ଆଉ କାହାରି ସନ୍ଦେହ ରହିଲା ନାହିଁ । ସମସ୍ତେ ଠିକ୍ କଲେ ଯେ, ଏଇ ଅବୁଝା ଗ୍ରାମ-ପଞ୍ଚାୟତରେ ପୂର୍ଣ୍ଣ ଶକ୍ତି ଖଟେଇ ତାକୁ ଫଟେଇ ଦେବାକୁ ହେବ । ସେବା ଓ ସହାନୁଭୂତି ବୋମାରେ ଗାଈବାଛୁରୀଙ୍କ ଅଭେଦ୍ୟ ଦୁର୍ଗକୁ ଉଡ଼େଇ ଦେବାକୁ ହେବ । ଯେତେ ଶୀଘ୍ର ଏ କାର୍ଯ୍ୟ ହୁଏ ସେତେ ମଙ୍ଗଳ । ମହାମେଣ୍ଟର ପୋଷିତ କର୍ମୀମାନଙ୍କୁ ଅବୁଝା ଗ୍ରାମ-ପଞ୍ଚାୟତରେ ସେବାକାର୍ଯ୍ୟ ଆରମ୍ଭ କରିଦେବାକୁ ନିର୍ଦ୍ଦେଶ ଦିଆଗଲା ।

କିନ୍ତୁ ଗୋଟାଏ ଦୈବ ବିପତ୍ତି ନ ପଡ଼ିଲେ ସେବାକାର୍ଯ୍ୟ ଆରମ୍ଭ ହେବ କିପରି ? କର୍ମୀମାନେ ମନେ ମନେ ଭଗବାନଙ୍କ ନିକଟରେ ପ୍ରାର୍ଥନା କଲେ—"ହେ ଭଗବାନ ! ଶୀଘ୍ର ଗୋଟାଏ ପ୍ରଳୟଙ୍କରୀ ବାତ୍ୟା କିମ୍ବା ବନ୍ୟାଟାଏ ପଠାଅ । ନଚେତ୍ ଆମର ସେବାକାର୍ଯ୍ୟ ଆରମ୍ଭ ହେବାରେ ଗୁରୁତର ସଙ୍କଟ ଦେଖା ଦେଉଛି । ନିହାତି ଯଦି ବନ୍ୟା ବାତ୍ୟା ପଠାଇ ନ ପାରୁଛ ତେବେ ଅନ୍ତତଃ ହଇଜା ବୁଢ଼ୀକୁ ପଠାଅ ।"

ସତେ ଯେପରି ଭଗବାନ ଏମାନଙ୍କ ପ୍ରାର୍ଥନାକୁ କାନଡେରି ରହିଥିଲେ ! ହଗଡ଼ କପାଳକୁ ଶିକା ଛିଣ୍ଡିଲା ପରି କୁଆଡ଼ୁ ମାଡ଼ି ଆସିଲା ଅଶେଷ ପବନ । ଦୁବ ଓପାଡ଼ିଲା ପରି ମହାମହା ଦ୍ରୁମମାନଙ୍କୁ ଫୁଟ୍-ଫାଟ ଓପାଡ଼ି ପକେଇଲା । ମଣିଷ ଗାଈବାଛୁରୀମାନଙ୍କୁ ଉଡ଼େଇ ନେଇ ଗଛ ଅଗରେ ଲଟକେଇ ଦେଲା । ଘର ସବୁ ଉଡ଼ିଯାଇ କୁଆଡେ ପଡ଼ିଲା ତା'ର ଠିକଣା ରହିଲା ନାହିଁ । ଲୁହାଧାରଣାର ତାରଖୁଣ୍ଟି ସବୁକୁ ତାର ମୋଡ଼ିଲା ପରି ବଙ୍କା କରିଦେଲା । ଅଧ ଘଣ୍ଟାକ ମଧ୍ୟରେ ସବୁ ଧ୍ୱଂସ ପାଇଗଲା ।

କର୍ମୀ ଓ ନେତାମାନଙ୍କୁ ଆଉ ସମ୍ଭାଳେ କିଏ ! ଆସନ୍ତା ନିର୍ବାଚନ ପାଇଁ ଭୋଟ ଖରିଦ ଲାଗି ବଇନା ଦେବାର ଏହାହିଁ ହେଉଛି

ସର୍ବୋତ୍କୃଷ୍ଟ ସମସ୍ତ । ଚୂଡ଼ା, ଗୁଡ଼ଖଳ, ବିସ୍କୁଟ, ପାଉଁରୁଟି, ଲୁଗା, କମ୍ବଳ ଧରି କର୍ମୀମାନେ ହଗାମୁତା ହୋଇ ଧାଇଁଲେ । କାହାକୁ ମାଉସୀ, କାହାକୁ ପିଉସୀ, କାହାକୁ ଭାଇନା, କାହାକୁ ବା ଅଜା, ଦାଦା, କକା ଡାକି ପଞ୍ଚାୟତ ଗୋଟାଯାକ ସମସ୍ତଙ୍କୁ ବନ୍ଧୁତା ଦଉଡ଼ିରେ ବାନ୍ଧି ପକାଇଲେ ।

“ଆରେ ମହାମେଣ୍ଟିଆ ସବୁ ପଶିଗଲେରେ” କହି ଗାଈ-ବାଛୁରିଆମାନେ ବଡ଼ଦ ଶିଙ୍ଗା ବଜେଇ ଦେଲେ । ରାଜଧାନୀରୁ ରାଜକୋଷରୁ ସାହାଯ୍ୟର ସୁଅ ଛୁଟିଲା । ଆଉ ମହାମେଣ୍ଟ ସୁଅ, ସାଙ୍ଗ ଗାଈବାଛୁରିର ସୁଅ । ଲାଗିଗଲା ମଝିରେ ଧକ୍କା, ଗୋଟିଏ ଯାତ୍ରୀକୁ ଦୁଇ ପଣ୍ଡାଙ୍କର ଝି' ଦଳାଛଡ଼ାଦାର ଭେଟିଲେ ଠିକ୍ ଯାହା ହୁଏ । ଅବୁଝାମାନେ ଝି'ଆଡ଼ୁ ଗ୍ରାସ ପକେଇ ଗଣ୍ଡି ଫୁଲେଇ ସାରିବା ପରେ ମହାମେଣ୍ଟିଆମାନଙ୍କୁ ବହୁତ ବହୁତ ଧନ୍ୟବାଦ ଦେଇ କହିଲେ— “ଉସର୍ ଉସର୍ ପାଣି, ତୁମେ ଯାହା ପାଇଁ ଲସର୍ ପସର୍, ଆମେ ସେହି କଥା ଜାଣି । ନିର୍ବାଚନ ବହୁତ ଦୂରରେ ଅଛି । ଯାହାହେଉ ଆପଣ-ମାନେ ବହୁତ ଆଗରୁ କାମ ଆରମ୍ଭ କରି ଦେଲେଣି । ଫଳପ୍ରାପ୍ତି ଆଶା ନ ରଖି ଏମିତିଆ କାମ ସବୁ କରିଯାଆନ୍ତୁ । କର୍ମଯୋଗୀ ପାଲଟି-ଯାଆନ୍ତୁ । ଦେଖିବେ କେତେ ସନ୍ତୋଷ ଓ ଶାନ୍ତି ପାଇବେ । ଭୋଟରୁ ପ୍ରାପ୍ତ ସୁଖ, ଶାନ୍ତି, ସନ୍ତୋଷ ତା' ଆଗରେ ଅତି ତୁଚ୍ଛ, ହେୟ । ହଉ ଆଜ୍ଞା ନମସ୍କାର ।” ମହାମେଣ୍ଟିଆଙ୍କ ମୁହଁ ସରମରେ କଳାକାଠ ପଡ଼ିଗଲା । ଦିହ ରାଗରେ ଜଳି ଉଠିଲା— “ଶଳା ଗୋଖାଗୁଡ଼ାକ ନାକ-ମୁଣ୍ଡାରୁ କଥାଟକ ଘୋଷାଡ଼ି ନେଇଗଲେ । ଶଳେ କେଡ଼େ ଚାଲାଖ, ସବୁତକ ସାହାଯ୍ୟ ନେଇସାରି ବେହିଆଙ୍କ ଭଳିଆ କହୁଛନ୍ତି କ'ଣ ନା—ଆମେ ସେଇ କଥା ଜାଣି । ଆରେ ଶଳେ ! ଜାଣିଥିଲ ତ ଆଗରୁ କହି ଦେଲନ, ଆମେ ଆମ ରାସ୍ତାରେ ଯାଇଥାଆନ୍ତୁ ।”

ଗାଈବାଛୁରିଆ ଜଣେ ସାଫ୍ ସାଫ୍ ହାକି ଦେଲା— “ଏଥର ଜାଣିଗଲ ତ ବାବୁ ? ଏବେ ମେଣ୍ଟ ସୁମର ବାଟଧରି ଯିବ, ଅବୁଝା ଗାଆଁ ନାମ ନ ଧରିବ ।”

ମହାମେଣ୍ଟରେ ପୁଣି ଏକ ଜରୁରୀ ସଭା ବସିଲା । ଅବୁଝା ଗ୍ରାମ-ପଞ୍ଚାୟତର ଗାଈବାଛୁରୀଆମାନେ ସେମାନଙ୍କଠାରୁ ପଟି ମାଗିନେଇ କାପଡ଼ ଶେଷରେ ଠିଆଚରା କାଟିଦେଲେ ତା'ର ଏକ ପରିଷ୍କାର ଚିତ୍ର ସଭା ଆଗରେ ଥୁଆଗଲା ।

ତାଙ୍କର ନେତା କହିଲେ—"ସେ ଗାଆଁର ଲୋକେ ଅତି ବର୍ବର । ସେମାନଙ୍କୁ ପରିବର୍ତ୍ତନ କରିବାକୁ ଦୀର୍ଘ ସମୟ ଲୋଡ଼ା । ପଇସା ବା ବଳ ପ୍ରୟୋଗ ଦ୍ୱାରା ସେମାନଙ୍କୁ ଅଧୀନ କରି ହେବନି । କାରଣ ଗାଈବାଛୁରୀଆଙ୍କର ଆମଠାରୁ ବେଶୀ ପଇସା । ବଳ ମଧ୍ୟ ବେଶୀ । ବହୁଦିନ ଧରି କ୍ଷମତା ସେମାନଙ୍କ ହାତରେ ରହିବାରୁ ଚଣ୍ଡା, ଭେଣ୍ଡା, ଗୁଣ୍ଡାମାନଙ୍କୁ ନାନାପ୍ରକାର ସୁବିଧା କରେଇ ଦେଇ ଅକ୍ତିଆର କରି ନେଇଛନ୍ତି । ଥରେ ତାଙ୍କ ହାତରୁ କ୍ଷମତା ଗଲେ ସବୁ ସୁଧୁରିଯିବ । ଅବୁଝା ଗାଆଁରୁ ଗାଈବାଛୁରୀ ନିଶ୍ଚିହ୍ନ ହୋଇଯିବ । ସେହି ଗାଆଁ ଉପରେ ଆମର ସମସ୍ତ ଶକ୍ତି ଖଟେଇବାକୁ ପଡ଼ିବ । ଏବେ ତା'ରି ଉପରେ ଆମର ଇଜ୍ଜତ୍ ମହତ ନିର୍ଭର କରୁଛି ଜାଣ । ସେ ଥାନ ଯାହା ହାତରେ ପଡ଼ିବ ତା'ରି ଇଜ୍ଜତ୍ ଜାଣ ରହିବ । ଆଉ ପକ୍ଷର ଇଜ୍ଜତ୍ ଧୂ' କଡ଼ାର ହେବ । ଏବେ ଆମ କର୍ମୀମାନଙ୍କୁ ଗାଈବାଛୁରୀ ବେଶ କରାଇ ସେ ଗାଆଁରେ ଛାଡ଼ିଦେବା । ସେମାନେ ତାଙ୍କ ଗୋଠରେ ପଶି ଧୀରେ ଧୀରେ ସେମାନଙ୍କ ଭିତରେ ଅସନ୍ତୋଷର ବିଷ ପୂରାଇବେ । ସେଠି ଆମ ତରଫିଆ ଯେଉଁ କେତୋଟି ଲୋକ ଶେଉଳ ମାଛ ପରି ପଙ୍କରେ ଛପି ରହିଛନ୍ତି ସେମାନଙ୍କୁ ଖୋଜି ସେମାନଙ୍କ ସଙ୍ଗେ ଯୋଗ-ସୂତ୍ର ରଖି ଗୋଟାଏ ଗ୍ରେଟ୍ କାଣ୍ଟିଆ ମେଣ୍ଟ କରିବେ । ସେମାନଙ୍କୁ ସାଫ୍ ସାଫ୍ ଜଣେଇଦେବେ ଯେ, ଆମେ ଏତେ ଏତେ ନେତା ସେମାନଙ୍କ ପଛେ ପଛେ ଜଣେ ରହିଛୁ ।"

ପ୍ରସ୍ତାବଟି ସମସ୍ତଙ୍କ ମନକୁ ପାଇଲା ଓ ଅବିଳମ୍ବେ କାର୍ଯ୍ୟକାରୀ ହୋଇଗଲା । ଚରମାନେ ଗାଈବାଛୁରୀଆଙ୍କ ଭିତରେ ପଶି ମହା-ମେଣ୍ଟିଆଙ୍କୁ ନିଷ୍କୃତିଆ ଶୋଧି ଲାଗିଲେ । ପୁଲିସ୍ ଯଦି କାହାକୁ ବାନ୍ଧି ପକେଇଲା ତେବେ ସେମାନେ ରଡ଼ି ଛାଡ଼ିଲେ ଦେଖ ହୋ, ଏ ପୁଲିସ୍ ଠା

ମହାମେଣ୍ଟିଆ ଅଛୁ, ସାମାନ୍ୟ ଟିକଏ ଦୋଷରେ ଆମ ଗାଈ-ବାଛୁରିଆଙ୍କୁ ବାନ୍ଧ ପକାଉଛୁ ହୋ । ମନ୍ତ୍ରୀଙ୍କୁ କହ ଏଇଟାକୁ ଏଠୁ ନିକାଳିବାକୁ ହେବ । ପୁଲିସ୍ ଯଦି ନ ବାନ୍ଧ ଚୁପ୍ଚାପ୍ ରହନ୍ତେ ତେବେ ରଡ଼ି ଉଠିନ୍ତା—“ଦେଖ ଦେଖ, ଏ ପୁଲିସ୍ କପରି ଆମ ସରକାରଙ୍କୁ ନିନ୍ଦିତ କରିବାକୁ କହୁ ହେଲେ କାର୍ଯ୍ୟାନୁଷ୍ଠାନ କରୁନି । ଲୋକେ ଅଲବତ ଭାବିବେ ଯେ, ସରକାର ପ୍ରିତ୍ୟୁପ୍ରୀତି କରି ଆଇନର ତଣ୍ଟି ଚିପି ଦେଲେ । ମିତ୍ର ଓ ଦୁସ୍‌ମନ୍ ପାଇଁ ସରକାର ଦୁଇ ରକମ୍ ଆଇନ୍ କରିଛନ୍ତି । ହଟାଅ ଏ ଦୋମୁହାଁ ସରକାରକୁ । ମନ୍ତ୍ରୀଙ୍କୁ କହ ହଟାଅ ଏ ପୁଲିସ୍‌କୁ ।” ଦରଦାମ୍‌ର ଅତିରିକ୍ତ ବୃଦ୍ଧି ହେବା ଫଳରେ ସମସ୍ତେ ବ୍ୟବସାୟୀମାନଙ୍କ ସତରପୁରୁଷ ଯାଏ ଉଦ୍ଧାର କରି ସେମାନଙ୍କ ଉଦ୍ଦେଶ୍ୟରେ ଅଶ୍ଳୀଳ, ଅକଥ୍ୟ, ଅଶ୍ରାବ୍ୟ ଗାଳିମାନ ବର୍ଷା କରୁଥିବା ସମୟରେ ଜଣେ ଅସାବଧାନ ଚର ମୁହଁରୁ ବାହାରି ପଡ଼ିଲା—“ବ୍ୟବସାୟୀ କରିବେ କଅଣ ? ସେମାନଙ୍କଠାରୁ ମନ୍ତ୍ରୀଏ ଲକ୍ଷ ଲକ୍ଷ ଟଙ୍କା ଚାନ୍ଦା ନେଉଛନ୍ତି । ବ୍ୟବସାୟୀମାନେ କଅଣ ଟଙ୍କା ବେଉଛନ୍ତି ? କୋଡ଼ିଏ ଟଙ୍କାର ନିଶ୍ଚିତ ସମ୍ଭାବନା ନ ପାଇଲେ ସେମାନେ ଦଶଟଙ୍କା ଚାନ୍ଦା ଦେବେନି । ଏଣୁ ସରକାର ସେମାନଙ୍କୁ ଦୁଇଲକ୍ଷ ଟଙ୍କାର ମୁନାଫା ଉଠେଇବାକୁ ବାଟ ଛାଡ଼ି ଦେଉଛନ୍ତି । ଏ ଲୋଖି ମନ୍ତ୍ରୀଗୁଡ଼ାକ ଥିବାଯାଏ ଦରଦାମ୍ କମିବ ନାହିଁ ।”

ଗାଈବାଛୁରିଆ ତା' ଆଡ଼କୁ ଗାରେଡ଼ିଇ ଚାହିଁଲେ । ଜଣେ ରାଗିଯାଇ କହିଲା—“କେତେ ବ୍ୟବସାୟୀ ଟଙ୍କା ପାଞ୍ଚ ଦେଲା, ମନ୍ତ୍ରୀଏ ନ ନେବେ କାହିଁକି ? ଯାଚିଲା ମାଲ ଛାଡ଼େ କିଏ ? ମନ୍ତ୍ରୀ ବ୍ୟବସାୟୀମାନଙ୍କୁ କଅଣ ଦର ବଢ଼ାଇବାକୁ କହିଛନ୍ତି । କୋମ୍ପାନି ଅମଳରେ ଟଙ୍କାକୁ ମହଣେ ଚାଉଳ ଥିଲା । ତାହା ତ ପୁଣି ବଢ଼ି ବଢ଼ି ଟଙ୍କାରେ ଛ'ସେର ଅଧେ ଚାଉଳ ହୋଇଗଲା ଓ ନଅଙ୍କ ଦୁର୍ଭିକ୍ଷରେ ଲୋକେ ହେବାଲି ପୋକ ପରି ମରିଗଲେ । ସେତେବେଳେ ତ ଆମ ମନ୍ତ୍ରୀ ନଥିଲେ । ଦର ବଢ଼ିଗଲା କାହିଁକି ? ଦର ବଢ଼େଇରେ ମନ୍ତ୍ରୀଙ୍କୁ ଦୂଷୁଛ କାହିଁକି ? ଦର ଯେମିତି ବଢ଼ୁଛି ମନ୍ତ୍ରୀଏ ସେମିତି ଦରମା

ବଢ଼େଇ ଦେଉଛନ୍ତି । ଯୋଉ ପିଅନ ୧୦।୧୨ଟଙ୍କା ପାଉଥିଲା ସେ ଏବେ ଦୁଇଶହ ଟଙ୍କା ପାଉଛି । ସେତକ ଆଖିରେ ପଡ଼ୁନ, ଅଖି ଫୁଟିଯାଉଛି । ହଉରେ ତମେ ସବୁ ଗାଣ୍ଡବାଛୁଣିଆ ହୋଇ ମନ୍ତ୍ରୀଙ୍କୁ ନିନ୍ଦୁଛ ! ତମ ପାଟିରେ ପୋକ ପଡ଼ିବ, ଅଶହ୍ନା ରୋଗ ଧରିବ । ଆରେ ମହାମେଣ୍ଟିଆଙ୍କ ଠାରୁ କିଛି ହାତଗୁଞ୍ଜା ପାଇଲଣି କିରେ ?"

× × ×

ଚକଲଙ୍ଗନ ନେତା ତାର ନେତା ଉପରେ ବିଗିଡ଼ିଯାଇ କହିଲେ—"ଛୁଚ୍ଛାଟାରେ ଗୋଟାଏ ଗାଁରେ ଏତେ ଶ୍ରମ, ଏତେ ଧନ ଖର୍ଚ୍ଚ କରିବା କି ଦରକାର ? ଦେଖୁନ ତ ବଳଦ, ଟିକିଏ ଦୁହିଁ କହି କି ଲାଭ । ସେ ଗୋଖା, ଅବୁଝା ଲୋକଙ୍କୁ ଛାଡ଼, ଆଉ ସବୁ ଗାଁ ପଞ୍ଚାୟତରେ ସମସ୍ତେ ଲାଗିପଡ଼ ସଜାଡ଼, ମୁଁ ସେ ଅବୁଝା ଗାଁକୁ ଭୁଆଁ ବୁଲେଇଦେବି । ଏମିତି ଭକୁଆ ବନେଇ ଦେବି ଯେ, ସେମାନେ କଅଣ କରିବେ କିଛି ସ୍ଥିର କରି ପାରିବେ ନାହିଁ । ଆଉସବୁ ଗାଆଁର ଭୋଟ ସବୁ ତୁମେମାନେ ଆଣ । ମୁଁ ଅବୁଝା ଗାଁର ଭୋଟତକ ଅକାମୀ କରିଦେବି ।"

ଅନ୍ୟମାନେ ଭୋଟରମାନଙ୍କ ସଙ୍ଗେ ସଂପର୍କ ସ୍ଥାପନ କଲେ । ଚକଲଙ୍ଗନ ନେତା କିନ୍ତୁ ସଂପର୍କ ସ୍ଥାପନ କଲେ ଗାଁର ଭୋଟର ତାଲିକା ଲେଖିଥିବା ଗାଆଁ ମାଷ୍ଟରମାନଙ୍କ ସହିତ, ଆଉ ନାଗ୍ଗ କର୍ମୀମାନଙ୍କ ଜରିଆରେ ଅବୁଝା ଗାଆଁର କ୍ଲର୍କମାନଙ୍କ ସହ । ନିର୍ବାଚନ ଅଫିସ୍ ଆଉ ଭୋଟର୍ ଲିଷ୍ଟ ଛାପୁଥିବା ପ୍ରେସ୍ ମାନଙ୍କ ସହ ମଧ୍ୟ ଘନିଷ୍ଠ ସଂପର୍କ ରଖିଲେ । ନେତାଙ୍କର ଏପରି କାର୍ଯ୍ୟରୁ ଅନ୍ୟମାନେ ଆଦ୍ୟଅନ୍ତ ପାଇଲେ ନାହିଁ । ଶେଷରେ ବିରକ୍ତ ହୋଇ କହିଦେଲେ—"ତା ଇଚ୍ଛା ଯାହା କରୁଛି କରୁ । ସେ ଗୋଲକଧନ୍ଦାରେ ମୁଣ୍ଡ ଭର୍ତ୍ତିକରି ଲାଭ ନାହିଁ । କାରଣ ସେ ଧନ୍ଦା ଭେଦ କରିବାକୁ ସମୟ ଦରକାର ।"

ଗାଣ୍ଡବାଛୁଣିଆ ଓ ମହାମେଣ୍ଟିଆଙ୍କ ପ୍ରଚାର ତାଉ ଟକମକ ହୋଇ ଫୁଟିଲା । ଶୋଧାଶୋଧିଟା କାଳେ କିଏ ଶୁଣିପାରିବନି ସେଥିଲାଗି ଅତି ଶକ୍ତିଶାଳୀ ବଡ଼ପାଟିଆ ( ମାଇକ୍ )ରେ ଦୁହେଁ ଅତି ଚମତ୍କାର

ଘବରେ ଶୋଧାଶୋଧି ହେଲେ । ବାଡ଼ିଆପିଟା ଗଣ୍ଡଗୋଳରେ ଘଣ୍ଡପୁର ନିର୍ବାଚନମଣ୍ଡଳୀଟା ଉଠିଲା, ପଡ଼ିଲା । ଲୋକେ ଅସ୍ତବ୍ୟସ୍ତ ହୋଇ-ପଡ଼ିଲେ । ପୁଲିସ୍‌ବାଲାଙ୍କ ନାକରୁ ବୁଢ଼ାଶିଙ୍ଘାଣି ବାହାରିଲା । ଅବୁଝା ଗ୍ରାମପଞ୍ଚାୟତ କଲୁ ଧୀରଣ୍ଡିର । ସେଠି ଯେମିତି ଭୋଟ୍ ହେଉନ । ତାକୁ ଅଜେୟ ଗଡ଼ ଭାବି ଗାଈବାକୁଣ୍ଡିଆମାନେ ତା' ଷଣ୍ଢପୁରେ ବଲ୍‌କୁଲ୍ ମୁଣ୍ଡ ଖେଳେଇଲେ ନାହିଁ । ମହାମେଣ୍ଢିଆମାନେ ସବୁ ପରିଶ୍ରମ ପାଣିରେ ପଡ଼ିବା ଭୟ ସେଠାରେ ପାଦ ପକେଇଲେ ନାହିଁ । ଏମିତିଆ ବାତାବରଣ ଭିତରେ ଭୋଟଦାନର ଦିନଟି ଆସିଗଲା ।

ଅବୁଝା ଗ୍ରାମପଞ୍ଚାୟତର ଭୋଟ କେନ୍ଦ୍ରମାନଙ୍କରେ କଡ଼କଚୁର୍ ମହାମେଣ୍ଢିଆ କପାଳିଂ ଏଜେଣ୍ଟମାନେ ଜଣରେ ଡାଉ ଦେଇ ବସିଥାଆନ୍ତି । ସେମାନେ ଭୋଟର ତଲେଇ ଜାଲକୁ ଏମିତି କଡ଼ା କଡ଼ ବସେଇ ଥାଆନ୍ତି ଯେ ଭୋଟର ତାଲିକାରେ ଟିକିଏମାତ୍ର ଏପାଖ ସେପାଖ ଦେଖିବା ମାତ୍ର ଭୋଟରମାନଙ୍କୁ ଗୁଣି ସଦାକୁ ଫିଙ୍ଗି ଦେଉଥାନ୍ତି ।

କମଳା ବେଓ୍ବା, ସ୍ୱାମୀ ନର ଷଣ୍ଢାଳ । ହେଃ ! ତା' ବାପ ନାଁ ନର ଷଣ୍ଢାଳ, ସ୍ୱାମୀ ନାଁ ଅଲଗା । ତୁମର ଭୋଟ ନାକଚ ।

ହଗୁସି ଦେଈ, ସ୍ୱାମୀ ଚେଙ୍ଗେଇ ଦେଈ । ହେଃ ! ତୁମ ସ୍ୱାମୀ କଅଣ ଗୋଟାଏ ସ୍ତିରୀ ? ତୁମେ ଭୋଟ ଦେଇପାରିବ ନାହିଁ ।

କ୍ଷେଣ୍ଟ ମଳିକ, ପିତା ବାସୁଆ ଭୋଇ । ହଟ୍ ହଟ୍, ତୋ ବାପର ନାଁ ଠିକ୍ ନାହିଁ । ତୁ ତ ମଳିକ ତୋ ବାପ ଭୋଇ ହେଲା କେମିତି ? ତୁ ଭୋଟ ଦେଇପାରିବୁନ ।

ସନେଇ ସେଠି, ପିତା ଦୁଲଣା ଦେଈ । ସାବାସ୍ ସେଠି, ସ୍ତିରୀଟାଏ ତୋ ବାପା ! ପଳା ପଳା, ତୁ ଭୋଟ ଦେଇପାରିବୁନ ।

ଅବୁଝା ଗ୍ରାମପଞ୍ଚାୟତର ବୁଥ୍‌ମାନଙ୍କରେ ଏମିତିଆ ପ୍ରମାଦପୂର୍ଣ୍ଣ ପ୍ରାପ୍ତ ଅଧାଅଧି ଭୋଟରଙ୍କୁ ଗୁଣି ଗୁଣି ପୋଲିଂ ଏଜେଣ୍ଟମାନଙ୍କ ହାତ ବଥେଇଗଲା ।

ଭିନ୍ନ ଭୋଟରମାନଙ୍କ ଅବସ୍ଥା ଅନ୍ୟପ୍ରକାରର ଥିଲା । ଦଳ-ଦଳ ହୋଇ ଭିନ୍ନମାନେ ଭୋଟ୍ ଦେଇ ଘରକୁ ଫେରିଲାବେଳେ ଚୁପି ଚୁପି କଥାବାର୍ତ୍ତା ହେଉଥାଆନ୍ତି—"କଅଣ କରିବା ସଙ୍ଗାତ, ଘରୁ ବାହାରିଲା ବେଳକୁ ସେ ଯୋଗିଣିଖାଇଟା କହୁଛି—'ମାଉସୀ ! ତମ ପୁଅ-ରଣ, ଚକଲଙ୍ଗଳରେ ଭୋଟ୍ ଦେବ ।' ସେ ତ ମୂଳରୁ ତାଗିଦ୍ କରି କହିଥିଲେ ଗାଈବାଛୁରିରେ ଦେବାକୁ । ମୋ ପୁଅ ଆଗ ନା କଏ ଗୋଟାଏ ଅଜଣା ଲୋକ ଆଗ । କଅଣ କରିବ ନାଚାର ହୋଇ ଚକ-ଲଙ୍ଗଳରେ ଦେଲି । କହ୍ନଦେବ ଗାଈବାଛୁରିରେ ଦେଇଛି । ହଅବା ସେ କୋଉ ଖେଳ ଯାଉଛନ୍ତି ।"

"ଇଲେ ମା, ଠିକ୍ ବାହାରିଲାବେଳକୁ ସେ ଟୋକାଟା ଆସି-ଛୁଇଁ କହିଲା ଯେ, ଗାଈବାଛୁରି ଓ ଚକଲଙ୍ଗଳଆ ଦୁହେଁ ଚିହ୍ନ ନିଜ ନିଜ ଭିତରେ ବଦଳେଇ ଦେଇଛନ୍ତି । ସେଇଥିଲାଗି ପରା ମୁଁ ଗାଈବାଛୁରିରେ ନ ଦେଇ ଚକଲଙ୍ଗଳରେ ଦେଇଦେଲି । ଯାହା ତ ହେବାର ହେଲାଣି ତାଙ୍କୁ କହ୍ନଦେବ ଗାଈବାଛୁରିରେ ଦେଇଛି ।"

"ଏ ମା ! ମୋ ଭୋଟ୍‌ଟା ତେବେ ଅକାରଣ ହୋଇଗଲା ! ଛତରଖାଇଟା ମୋତେ ବୁଝେଇଦେଲା ଗାଈ ଉପରେ ମୋହର ମାରିଲେ ଗୋମାତାର ନିଃଶ୍ୱାସ ପଡ଼ିବ । ତେଣୁ ଗାଈବାଛୁରି ଠିକ୍ ତଳକୁ ଯୋଉ ଗାର ଅଛି ତା'ର ଉପରେ ମାରିବୁ । ମୁଁ ତ ସେଇଆ କଲି । ଯା, ଆମ ତାଙ୍କୁ କହ୍ନଦେବ ଠିକ୍ ଗାଈ ଉପରେ ମାରିଛି ।"

× × ×

ଭୋଟ୍ ପରେ ଜଣେ ନାକରେ ତେଲ ଦେଇ ଶୋଇଲା । ଆଉ ଜଣେ ଦକଦକ ହୋଇ କାଳ କାଟିଲା । ଭୋଟ ଫଳ ବାହାରି ପଡ଼ିବା ପରେ ଅବସ୍ଥା ପୁରାପୂରି ଓଲଟିଗଲା ।

ଚକଲଙ୍ଗଳ ନେତାଙ୍କର ଅଭୂତପୂର୍ବ ସାଫଲ୍ୟ ଲାଗି ଚାରିଆଡ଼େ ଜୟଜୟକାର ଖେଳିଗଲା । ସେ ମେଣ୍ଟର ଗୁପ୍ତସଭାରେ କହିଲେ—"ଏଥିରେ ମୋର କୃତିତ୍ୱ ବିଶେଷ କିଛି ନାହିଁ । ସବୁ କିଛି ସାଫଲ୍ୟ ପାଇଁ ଭୋଟର ତାଲିକାର ଲେଖକ, ମୁଦ୍ରାକର ଓ ଗାଆଁରେ ଥିବା ଆମ କାର୍ଯ୍ୟ-କର୍ମୀମାନେ ଦାୟୀ ।"

—❋—

# ॥ ନିର୍ବାଚନ ସଙ୍କେତ ॥

ଦଳମାନଙ୍କୁ ସଂପୂର୍ଣ୍ଣ ରୂପେ ପ୍ରସ୍ତୁତ ହୋଇଯିବାକୁ ଠିକ୍ ଦଶମାସ ଆଗରୁ ସାଧାରଣ ନିର୍ବାଚନର ଦିନ ନିର୍ବାଚନ କମିଶନର ଘୋଷଣା କରି-ଦେଲେ । ତା’ ସଙ୍ଗେ ସଙ୍ଗେ ପ୍ରାର୍ଥୀପତ୍ର ଦାଖଲ, ତା’ର ପ୍ରତ୍ୟାହାରର ଶେଷ ତାରିଖ ବି ଘୋଷିତ ହୋଇଗଲା । ଠାଇଁ ଠାଇଁ ବୈଶାଖର ଶେଷ-ଆଡ଼କୁ ଅସରାଏ ଉତ୍ତମା ବର୍ଷା ହୋଇଗଲେ ଚଛଲତାମାନେ ଯେପରି କୁଳୁରି ଉଠନ୍ତି, ଏ ନିର୍ବାଚନ ଘୋଷଣା ନିର୍ବାଚନସର୍ବସ୍ୱ ରାଜନୈତିକ ନେତା ଓ ଧକଉଥିବା ହେକଲା ଠାଉଟରମାନଙ୍କ ଶୁଷ୍କ ପ୍ରାଣରେ ଯେମିତିଆ ପୁଲକ ସଞ୍ଚାର କଲା । ଉତ୍ସାହ ଉଦ୍ଦୀପନାର ଘନ ଦ୍ରବଣ ସହ ସବୁ ଭିଟାମିନ୍ ସଂଯୋଗ କରି କିଏ ଯେମିତି ଗୋଟାଏ ଗୋଟାଏ ଇଞ୍ଜେକ୍‌ସନ ଫୋଡ଼ି ଦେଇଗଲା ।

କ୍ଷମତାସୀନ ଦଳର ଚାରି ବର୍ଷ ଦୁଧପିଆରେ ଓ ମାଛଖିଆରେ କଟିଗଲା । ସୁଖର ଦିନଗୁଡ଼ାକ ଏତେ ଚଞ୍ଚଳ ବିତିଯାଏ । କାଲି ସକାଳେ ଯେମିତି କ୍ଷମତାକୁ ଆସିଥିଲେ ସେମିତି ତାଙ୍କୁ ଜଣାଗଲା । ମଉଜ ମଜଲିସ୍‌ରେ ମାଟିରଙ୍ଗା ଗଡ଼ର ସୁରକ୍ଷା ଉପରେ ନଜର ଦେଇ ନ ଥିଲେ ପୁଣି ଗୋଟାଏ ଯୁଦ୍ଧର ଦିନ ଠିକ୍ ହୋଇଯିବାରୁ ଗଡ଼ର ନିରାପତ୍ତା ପାଇଁ ଚାରିଆଡ଼କୁ ଆଖି ପକେଇଲେ । କେଉଁଠି ଫାଟ, କେଉଁଠି କଣା, କେଉଁଠି ଗଡ଼ପାଚେରି ଏକାବେଳେକେ ଭୁଷୁଡ଼ି ପଡ଼ିଛି ସେସବୁ ସ୍ଥାନ ଉପରେ ନଜର ପଡ଼ିଲା । ଡକା ପଡ଼ିବାକୁ ଅପେକ୍ଷା କରୁଛି କିଏ ? ଠାଉଟର୍‌ମାନେ ମିସ୍ତ୍ରୀ ସାଜି ଗଡ଼ ମରାମତି ପାଇଁ ଆସି ହାଜର୍ ହୋଇଗଲେ । ସେମାନେ ନେତାମାନଙ୍କୁ ବୁଲାଇ ଫାଟ, କଣା, ଭୁଷୁଡ଼ା ପାଚେରି ସବୁ ଦେଖାଇ ତା’ର ଆଶୁ ମରାମତି ଓ ତା’ ପାଇଁ ଖର୍ଚ୍ଚର ହିସାବ ଫର୍ଦ୍ଦମାନ ଗଢ଼ି-ପକାଇଲେ । ଫାଟ, କଣା ଆଦିର ସଂଖ୍ୟା କେତେ ଜଣା ନ ଥିଲା । ଏ ସାହ୍ୱ

ଠାକୁରଘରର ସ୍ଥିତଟା ୪ବର୍ଷ ହେଲା ପଡ଼ିବ ପଡ଼ିବ ହୋଇ ପଡ଼ିପାରିନି । ସେ ସବୁ ଯୁବକସଂଘ ବିରୁଦ୍ଧରେ ହୋଇଥିବା ଫୌଜଦାରି ମାମଲା ଏ ପର୍ଯ୍ୟନ୍ତ ସରକାର ଉଠାଇ ନେଇ ନାହାନ୍ତି । ହେ—ସେ ସବୁର ଗୁଣ୍ଡା ସର୍ଦ୍ଦାର ଗୋଟାଏ ଜନାକାରି ମକଦ୍ଦମାରେ ପଡ଼ି ଆଖିର ଜେଲ୍ ଗଲା, କେହି ବି ମନ୍ତ୍ରୀ ତାକୁ ସାହାଯ୍ୟ କଲେ ନାହିଁ । ଏପର୍ଯ୍ୟନ୍ତ ବିଚରା ଜେଲ୍‌ରୁ ମୁକୁଳି ନାହିଁ । ଆଜି ସେ ସାହିର ସ୍କୁଲଟା ସାତ ବ୍ଲାକ୍ (ବ୍ଲାକ୍) କରୁ କରୁ ଧରାପଡ଼ିବା ସଙ୍ଗେ ସଙ୍ଗେ ତା'ର ଲାଇସନ୍ସ କଟିଯାଇଛି । ମୁଣ୍ଡ ବାଡ଼େଇ ବାଡ଼େଇ ତା' ମୁଣ୍ଡରେ ବଣ୍ଡି ହୋଇଗଲାଣି, ତଥାପି ତାକୁ ଖଣ୍ଡିଏ ପାନ ଲାଇସନ୍ସ ମିଳୁନି । ଅମୁକ ସାହି ଅଧିକାରୀ ପୁଅ ମେଟ୍ରିକ୍ ପାସ୍ କରି ଯାଇଥାନ୍ତା, ସେ ହୋଗଲା ମାଷ୍ଟରଟା ଅହେତୁ ରାଗି ତାକୁ ଫେଲ୍ କରିଦେଲା । ତାକୁ ମୋଟେ ପଢ଼େଇ ଦେଲାନାହିଁ । ପାଠ ହେଲା ନାହିଁ, ଗୋଟାଏ ବଡ଼ ଚାକିରିରେ ରଖାଇ ଦେବାକୁ ସବୁ ମନ୍ତ୍ରୀଙ୍କୁ କୁହାଗଲା । ବହୁତ ବହୁତ ହାକିମଙ୍କୁ ଦହିଖିର, ନଡ଼ିଆ ଗୁଆ ଘିଅ ଉଣ୍ଡା ଦିଆଯାଇଛି, ହେଲେ ଏ ପର୍ଯ୍ୟନ୍ତ ତାକୁ ଖଣ୍ଡେ ଯାହାତାହା ହେଲେ ଚାକିରି ମିଳିଲା ନାହିଁ ।

ଏମିତିଆ ଅସଂଖ୍ୟ ଫାଟ ଟାଉଟରମାନେ ଦେଖାଇଦେଲେ । ନେତାମାନେ ବି ଅଣ୍ଡାଳି ଉପରା ଫାଟ ଦେଖିଲେ ନାହିଁ । ଘେଉର୍‌ଗ୍ରୁପ ଅଯାଚିତ ଭାବରେ ନିର୍ବାଚନବେଳେ ଦଶହଜାର ଟଙ୍କା ଦେଇଥିଲା । ଆଜିପର୍ଯ୍ୟନ୍ତ ତାକୁ ହୋଲ୍‌ସେଲ୍ ଷ୍ଟେକର୍ଡ଼ ଏଜେନ୍‌ସିଟା ଦିଆଯାଇ ପାରିଲା ନାହିଁ । ଓଃ, ମଗନ୍‌ଲାଲ୍‌ଟା କେନ୍ଦୁପତ୍ରର ଏକଚାଟିଆ କାରବାର ପାଇଁ ତିନି ଲକ୍ଷ ଟଙ୍କା ଦେଲା । ଏକଚାଟିଆ ତେଣେ ଥାଉ, ଏତାବେଳକେ ଜାତୀୟକରଣ ହୋଇଗଲା । ମାର୍ ମାର୍ ଭଣ୍ଡାରିଆକୁ ମାର୍ ପରି ସମସ୍ତେ ଆଗଉଛି ବକ୍ତୃତା କରି ରଡ଼ିଦେଲେ ଜାତୀୟକରଣ ହେଉ, ଜାତୀୟକରଣ ହେଉ । ଜାତୀୟକରଣଟା ଅଳକ୍ଷରେ ହୋଇଗଲା । ବିଚରା ତା' ତିନିଲକ୍ଷ ଟଙ୍କା ପାଣିରେ ପଡ଼ିଗଲା । ଆଜି ସେ ଆମ ମୁହଁ ଚାହିଁବ ନା !

ଏମିତି ଏମିତି କାହାକୁ ଖଣି ପଟ୍ଟା, କାହାକୁ ଜଙ୍ଗଲ ପଟ୍ଟା, କାହାକୁ ଆମଦାନି-ରପ୍ତାନି ପରମିଟ୍, କାହାକୁ ଏକ ନୂଆ କାରଖାନା, କାହାକୁ ନୂଆ ସିନେମା ଘର ପାଇଁ ଲାଇସେନ୍‌ସ ଦେବାର ଅଙ୍ଗୀକାର

ଭଗ୍ନ ଆଉ ଅସଂଖ୍ୟ ଫାଟ ଦେଖି ନେତାମନେ ଘାବରେଇ ଗଲେ । ଏତେ ଛିଦ୍ର ଓ ଫାଟବିଶିଷ୍ଟ ଗଡ଼ ଯେ ଆସନ୍ତା ଯୁଦ୍ଧକୁ ସମ୍ଭାଳି ନେବ ସେ ବିଷୟରେ ଘୋର ସନ୍ଦେହ ଜାତ ହେଲା । ଯେଉଁ ଗଡ଼କୁ ପୂର୍ବରୁ ସେମାନେ ଗଡ଼ ଜୟକରି ଭୋଗ ଦଖଲ କରୁଛନ୍ତି, ସେ ଗଡ଼ଟି କାଳେ ହାତରୁ ଖସିଯିବ ସେଇ ଭୟ ସବୁବେଳେ ସେମାନଙ୍କୁ ଅନବରତ ଘାରିଲା । ଧର ଯେପରି ଜୁଟେଇଥିବା ଧନକୁ କୃପଣ ନିଃଶବ୍ଦରେ ଚୋରମାନଙ୍କଠାରୁ ଲୁଚେଇ ରଖିବ ସେଇ ଭାବନାରେ ସର୍ବଦା ଆତଙ୍କିତ ହୋଇ ରହୁଥାଏ, ଏମାନଙ୍କ ଅବସ୍ଥା ଠିକ୍ ସେହିପରି ହେଲା । ନିର୍ଦ୍ଧନର କିନ୍ତୁ ଚିନ୍ତାଦିକ କୋଉଥିକି ନାହିଁ । ପାଇବାର ରଙ୍ଗିନ୍ କଳ୍ପନା କେବଳ ତା' ମୁଣ୍ଡରେ ଥାଏ ।

ବିରୁଦ୍ଧଦଳିଆମାନଙ୍କର ଅବସ୍ଥା ଠିକ ଏମିତିଆ ହେଲା । ସେମାନେ କୋଉ ଜୟ କରିଥିଲେ ଯେ, ହାରିଯିବାର ଭୟ ତାଙ୍କୁ ଘାରିବ । କିସ କଦରରେ ଧୋବେଇପଠ୍ ମାରି କ୍ଷମତାସୀନ ଦଳକୁ ମାଙ୍କଡ଼ଚାଳ୍ ମରେଇବେ ଓ ତାଙ୍କ ହାତରୁ କ୍ଷମତାକୁ ଜବରଦସ୍ତି ଛଡ଼େଇ ଆଣି ପାଞ୍ଚ୍ ସାଲ୍‌କା ସୁଲ୍‌ତାନ୍ ବନିବେ, ସେହି ରଙ୍ଗିନ କଳ୍ପନାରେ ସବୁବେଳେ ମଜ୍ଜି ରହିଲେ ।

ଅଗା ମହାନ୍ତି, ବଗା ମହାପାତ୍ର ଓ ଖଗା ମିଶ୍ର ପ୍ରମୁଖ ବିରୁଦ୍ଧ ଦଳର ମେଣ୍ଟା ମେଣ୍ଟା ସେନାପତିମାନେ ମନେ ମନେ ତଉଲତାଉଲ କରି ଦେଖିଲେ ଯେ ଗାଦିନସୀନ ଦଳକୁ ହଟେଇବା କିଛି ସହଜ କଥା ନୁହେଁ । ଆମେ ସମସ୍ତେ ଅଲଗା ଅଲଗା ହୋଇ ଲଢ଼ିବାରୁ ତାକୁ ଜିତିବାକୁ ଭାରି ସହଜ ହେଉଛି । ଆମ ଭିତରେ ନାନାପ୍ରକାର ଫନ୍ଦିଫିକରିଆ ଭର୍ତ୍ତି କରିଦେଇ ଯାବତ ଗଣ୍ଡଗୋଳ ସୃଷ୍ଟି କରି ଦେଉଛି । ତା'ର ଫାଇଦା ସେ ଉଠେଇ ନେଉଛି । ଆମେ ଯଦି ମଇଁଷି ଶିଙ୍ଗ ପରି ଗୋଟ'ଏ ହୋଇ ଲଢ଼ନ୍ତୁ ତେବେ ସେ କଏରେ କଏରେ ଦଉଡ଼ିଦେଇ ପଳେଇବାକୁ ବାଟ ପାଆନ୍ତା ନାହିଁ । କଥାଟି ସମସ୍ତଙ୍କ ମନକୁ ପାଇଲା ।

ପ୍ରସ୍ତୁତିର ପ୍ରାରମ୍ଭିକ ସୋପାନ ସ୍ୱରୂପ ସବୁ ବିରୋଧୀଦଳଙ୍କର ଗୋଟାଏ ମହାମେଣ୍ଟ ଗଢ଼ିବାକୁ ଏକ ସଭା ଡକାଗଲା । କୁମ୍ଭମେଳାରେ

ନାନା କିସମର ସାଧୁ ଏକଜୁଟ୍ ହେଲପରି ନାନା ମତବାଦର ପଣ୍ଡାମାନେ ଆସି ସଭାରେ ଯୋଗଦେଲେ । ଭୋଟର୍‌ମାନଙ୍କ ମତାମତ ଜାଣିବା ପାଇଁ ବଚ୍ଛା ବଚ୍ଛା ଜାଗ୍ରତ ଭୋଟରମାନଙ୍କୁ ମଧ୍ୟ ସଭାକୁ ଡକାଯାଇଥିଲା । ସମସ୍ତଙ୍କର ଉତ୍ସାହ ଉଦ୍ଦୀପନା ଦେଖି ଅନୁମାନ ହେଉଥାଏ ଏଥର ଗୋଟାଏ କିଛି ହେବ । ସଭାରେ ପ୍ରଥମେ ଆଲୋଚନା ଆରମ୍ଭ ହେଲା, କି ପେଞ୍ଚ କରି ଶାସକଦଳ ଥରକୁଥର ଗାଦିଟା ମାରି ନେଉଛନ୍ତି । ହତାଶଭରା କଣ୍ଠରେ ଜଣେ ସେନାପତି କହିଲେ—"ଏତିକ ଜାଣିବାକୁ ଆଉ ବାକି ଅଛି ନା । ଆମ ଦେଶର ନବେ ଭାଗ ହେଲେ ମୂର୍ଖ, ଭୋଟ ଅର୍ଥ କଅଣ ଜାଣନ୍ତି ନାହିଁ । ଦୁଇଟିମାତ୍ର ଟଙ୍କା ସେମାନଙ୍କଠାରୁ ନେଇ ତାଙ୍କର ଚିହ୍ନରେ ମୋହର ମାରି ଦେଉଛନ୍ତି । ମୂର୍ଖଗୁଡ଼ାକ ବୁଝିପାରୁ ନାହାନ୍ତି ଯେ, ସେମାନେ ଦୁଇ ଦୁଇ ଟଙ୍କାରେ ଭୋଟମାନ କିଣି ସାରିବା ପରେ ଗାଦିରେ ବସି ସେମାନଙ୍କ-ଠାରୁ ଦର ବୃଦ୍ଧି ଜରିଆରେ ୨ରେ କେତେ ଶୂନ ବସାଇ ଲୁଟି ନେଉଛନ୍ତି । ଏହି ମୂର୍ଖ ଦଳଙ୍କ ଲାଗି ତ ଆଜି ଦେଶର ଏ ଦୁର୍ଦ୍ଦଶା ।"

ଜଣେ ଭୋଟର୍ ଉଠିପଡ଼ି ମାର୍ ନମାର୍ ହୋଇ କହିଲା—"କେମିତି । ଆମେ ସବୁ ମୂର୍ଖ, କିଛି ବୁଝୁନୁ, ଆଉ ତୁମେମାନେ ଭାରି ବଡ଼ ପାଠୁଆ । ଲୋକେ ଶାସକଦଳ ସପକ୍ଷରେ ବେଶି ଭୋଟ ଦେଉଛନ୍ତି କି ବିପକ୍ଷରେ ବେଶି ଭୋଟ ଦଉଛନ୍ତି ? ଯାବତ ଫୌଜବଗାଡ଼ ତୁମେ ବିରୁଦ୍ଧଦଳଆତିକ । ନିଜ ନିଜ ଭିତରେ କାମୁଡ଼ା କାମୁଡ଼ି ଲାଗି ଭୋଟ୍-ଗୁଡ଼ାକ ତ ଖେଳେଇ ଦେଉଛ । ଫଳରେ ଶାସକର ବେଶି ଭୋଟ୍ ହୋଇ ଯାଉଛି । ତୁମେ ସମସ୍ତେ ତ ଏକ ହେଇପାରୁନ, 'ମୁଁ' ପଦ ତ କେହି ଛାଡ଼ୁନ । ତୁମକୁ ଶାସକ ଚିତା କାଟିବନି ତ ଆଉ କାହାକୁ କାଟିବ । ନିଜ ଦୋଷ ନ ଦେଖି ଆମ ମୁଣ୍ଡରେ ଦୋଷ ଲଦୁଛ । ଗୁଲ ନ ଜାଣି ବାଟର ଦୋଷ । ଆଚ୍ଛା ଆମେ ଭୋଟରମାନେ ମୂର୍ଖ ନା ତମେ ଯେତିକ 'ମୁଁ' ବାଲା ମୂର୍ଖ ? ଆମେ ଶାସକଠୁଁ ଟଙ୍କା ଖାଉଛୁ, ତମକୁ ଭୋଟ ଦଉଛୁ । ତୁମେ ସବୁ ଏମିତିଆ ନିବୁର୍ଦ୍ଧିଆ, ଝିକମା ଯେପ ସେତିକ ଏକାଠି ଠୁଳ କରିପାରୁନ । ତମ ମୂର୍ଖାମି ଯୋଗୁଁ ଶାସକ ଗାଦିରେ ବସୁଛି—ଆମ ଯୋଗୁଁ ନୁହେଁ ।"

ଏମିତିଆ ଗୋଟାଏ କଡ଼କଚୁର ବାଣ ଫୁଟିବ ବୋଲି କେହି ଆଶା କରି ନଥିଲେ । କଥାଗୁଡ଼ାକ ପିଚା ପିଚା ଲାଗିଲେ ବି ହିତକର ମନେହେଲା । ସମସ୍ତେ ଏକ ସ୍ୱରରେ କହିଲେ—"ନାଃ, ଆମକୁ ଏକ ହବାକୁ ପଡ଼ିବଇଁ ପଡ଼ିବ । 'ମୁଁ' ପଦ ଛାଡ଼ିଦବାକୁ ପଡ଼ିବଇଁ ପଡ଼ିବ । ବାସ୍ତବିକ ଆମ ବୋକାମି ଯୋଗୁଁ ଶାସକ ଗୁଡ଼ମୁଆଁ ଖାଉଛନ୍ତି ।"

ଶାସକ ଦଳ ଆଉ କଅଣ କଅଣ ମନ୍ତ୍ର ଯନ୍ତ୍ର ରଖିଛନ୍ତି ତାହା ପୁଣି ଖୋଜାଗଲା । ଜଣେ କହିଲା, ଯାହା କୁହ ସେମାନଙ୍କର ଯେଉଁ ନବାଚନ ସଙ୍କେତଟି ରହିଛି ସେଇ ତାଙ୍କୁ ଜିତେଇ ଦେଉଛି । ଆମ ଦେଶର ଝିଅମାନେ ତ ସଂଖ୍ୟାରେ ପୁରୁଷମାନଙ୍କୁ ଗିଳିଦେବାକୁ ବସିଲେଣି । ସେମାନଙ୍କୁ ସେ ସଙ୍କେତଟା ଭାରି ବଢ଼ିଆ ଦେଖାଯାଉଛି । ଜଣେ ଯୁଆଡ଼େ ପଶିଗଲା ଅନ୍ୟମାନେ ଭଲମନ୍ଦ ନ ବିଚାରି ସେଇଆଡ଼େ ଠେଲାଠେଲି ହୋଇ ପଶିଗଲେ । ଉଃ ! ଏ ଝିଅଗୁଡ଼ାକ ପୁଣି ଏମିତି ଉଦ୍ଧତ ହୋଇଗଲେଣି ତା'ର ଆଉ ସୀମା ନାହିଁ । କୁଆଡ଼େ ଗଲା ସେ ଯୁଗ, ପିଟି ପିଟି ମାରିଦେଲେ ସୁଦ୍ଧା ସେମାନଙ୍କ ପାଟିରୁ କଥା ବାହାରୁ ନ ଥିଲା । ଘଇତା 'ନାକ ଘଷ୍' ବୋଲି କହିଲେ ନାକ ଘଷି ଘଷି ଛିଣ୍ଡେଇ ଦେଉଥିଲେ । ଏବେ ଘଇତା ଯେବେ କହିଲଣି, ହେ ଚକଲଙ୍ଗକରେ ମୋହର ମାରିବୁ ତେବେ ସେ ଇସ୍ ନାହିଁ ଭିସ୍ ବତେଇ ସାଫ୍ ସାଫ୍ ଶୁଣେଇ ଦେଉଛି—ସେ ହୁକୁମ ଆଉ ଚଳିବନି । ମୋ ଇଚ୍ଛା, ମୁଁ ଯାହା ଚିହ୍ନରେ ମୋହର ଦେବି । ଆମକୁ ଯୋଉଟା ସୁନ୍ଦର ଦିଶିବ ଆମେ ସେଇଠି ମୋହର ଦେବୁ । ଅପଦାର୍ଥଗୁଡ଼ାକ ଆଖିରେ କି ଅଞ୍ଜନ ପିନ୍ଧିଛନ୍ତି କେଜାଣି ସେମାନଙ୍କୁ ସେଇ ଚିହ୍ନ ଛଡ଼ା ଆଉ କିଛି ଭଲ ଦିଶିବ ନାହିଁ । ଇଚ୍ଛା ହେଉଛି ଆମେ ଅଣ୍ଡିରାମାନେ ଏକଜୁଟ୍ ହୋଇ ସେମାନଙ୍କୁ ଘରୁ ତଡ଼ିଦିଆଏ ଲେଖାଏଁ ଦେଇ କହନ୍ତେ—"ଏ ମହର୍ଘ କାଳରେ ଆମେ ଆଉ ଘର ଚଳେଇ ପାରିବୁନି । ଆମ ଅଣ୍ଟା ଭାଙ୍ଗିଗଲଣି । ଯାଅ, ଯାହାକୁ ଭୋଟ୍ ଦେଇଛ ତାରିଠୁଁ ଶସ୍ତାରେ ଖାଉଟି ଜିନିଷ ସବୁ ଆଣ, ନ ହେଲେ ଭୋକ ଉପାସରେ ମର । ଭୋଟ୍ ଦେଲାବେଳକୁ ତ ଆମ ଆଡ଼େ ଗୁହାଁନଥିଲ ? ଏବେ ମହର୍ଘ ହେଲାରୁ ଆମ ଆଡ଼େ ଗୁହାଁଁଛ କିଆଁ ? କହିଲେ—ନାହିଁ ତ ଏ ଠେଙ୍ଗା ।"

ଆଉଜଣେ ତାଙ୍କୁ ବାଧା ଦେଇ କହିଲେ—"ଆହେ, ଭୋଟରଙ୍କ ମୁଣ୍ଡରେ ସବୁ ଦୋଷ ଲଦି ଦେଲେ ଚଳିବ ନା। ସେମାନଙ୍କ ଉପରେ ଭୁଲଟାରେ ରଗି କି ଲାଭ, ନିର୍ବାଚନ ସଙ୍କେତ ଗାଈବାଛୁରିଟି ପ୍ରକୃତରେ ଚକ୍ଷୁରୋଚକ, ଆକର୍ଷଣୀୟ ଓ ଲୋଭନୀୟ ହୋଇନ୍ତି। ଆମେ ଯଦି ତା'ଠୁ ଅଧିକ ଆକର୍ଷଣୀୟ ସଙ୍କେତଟିଏ ଗ୍ରହଣ କରିପିବା ତେବେ ଆମର ଜିତାପଟଟାଏ ହୋଇଯିବ। ମୋଟ ଉପରେ ଅମୋଘଅସ୍ତ୍ର ଛଡ଼ା ଆଉ ଅନ୍ୟ ସବୁ ବିଷୟରେ ତାଙ୍କୁ ଯେ କୌଣସିମତେ ଟପିବାକୁ ହେବ। ବର୍ତ୍ତମାନକୁ ଗୋଟାଏ ଚହୁଁ ବଢ଼ିଆ ନିର୍ବାଚନ ସଙ୍କେତ ଗୃଲ ଆମେ ଠିକ୍ କରିବା।"

ଜଣେ କହିଲା—"ସଙ୍କେତ ତାଲିକାରେ ଗାଈବାଛୁରିକୁ ଘୋଡ଼େଇ ଦେବା ଭଳି କୋଉ ସଙ୍କେତଟା ରହିଛି ଯେ ?"

"କାହିଁକି—ମାଛ, କୁକୁଡ଼ା, ବଢ଼ିଆ ପ୍ରୋଟିନ୍, ସବୁଦିନେ ଏଥିରୁ କିଛି କିଛି ଖାଇଲେ ଦେହ ବମ୍ ବନିଯିବ । ଭୋଟରମାନେ ବି ସବୁ-ଦିନେ ଗେରସ୍ତକୁ ବରାଦ କରନ୍ତି—ଆଜି ବଡ଼ ଇଲିଶି ଦେଖି ଆଣିବ। ଆଜି ଭଲ କଟା ରେହୁ ଆଣିବ । ମାଛ ସଙ୍କେତଟା ଆମେ ରଖିଲେ ଭୋଟରଙ୍କ ମନକୁ ପାଇଯିବ।"

ଆଉ ଜଣେ କହିଲା—"ହେଃ, ବହୁତ ଭୋଟର ମାଛ ମାଉଁସକୁ ଭାରି ଘୃଣା କରନ୍ତି। ସବୁଯାକ ଭୋଟର ଗୁରୁବାର ଦିନ ଘରେ ମାଛ ମାଂସ ବିଲ୍‌କୁଲ୍ ପୂରାନ୍ତି ନାହିଁ । ଦୈବ ଯୋଗକୁ ଗୁରୁବାର ଦିନ ଯଦି ଭୋଟ-ଦେବା ଦିନ ପଡ଼େ ତେବେ ତ ଆମ ଦଳର ନାଲିବତି ଜଳିଉଠିବ। ବରଂ ଗୋଲାପ ଫୁଲଟା ରଖିବା । ଫୁଲକୁ ଭୋଟରମାନଙ୍କର ଭାରି ଶରଧା—"

କଥାଟାକୁ ପଚ୍‌କରି କାଟି ଦେଇ ଜଣେ କହିଲା—"ରଖ ରଖ ସେ ଫୁଲ, ନଳିପେଣ୍ଟିଆ ଓ ଲମ୍ବାକଲିଆଙ୍କ ଦାଉରେ ଭୋଟରମାନେ ଗୋଲାପଫୁଲ ତ ଗୋଲାପଫୁଲ, କଖାରୁ ଫୁଲଟାଏ ମୁଣ୍ଡରେ ଲଗାଉ ନାହାନ୍ତି। ସେମାନଙ୍କର ଫୁଲ ଉପରୁ ସମ୍ପୂର୍ଣ୍ଣରୂପେ ଆକର୍ଷଣ ହ୍ରାସ ଲାଗିଲାଣି।

ଫୁଲ ଭିତରେ ସେମାନେ ନଳାପେଣ୍ଡିଆଙ୍କୁ ଦେଖି ହୁରୁଡ଼ନ୍ତି । ଏଣୁ ତାକୁ ଛାଡ଼ ।"

ସଙ୍କେତ ମୁଣି ଝାଡ଼ଝଡ଼୍ ହୋଇଗଲା । ସମସ୍ତେ ଅତଳସାଗରରେ ଭାସିଲେ । ଜଣଙ୍କର ହଠାତ୍ ଗୋଟିଏ ଥାନରେ ଗୋଡ ଲାଗିଗଲା । ସେ କହିଲା—"ଦେଖ ଆମକୁ ତାଲିକା ବାହାରୁ ଗୋଟାଏ ସଙ୍କେତ ବାଛିବାକୁ ହେବ ।" ଆଉ ଜଣେ କହିଲା—"ତା' ଠିକ୍ ଯେ, ନବାଚନ କମିଶନର ଯଦି ଅଡ଼ିବସେ, ନା, ସେଇ ତାଲିକା ଭିତରୁ ଗୋଟାଏ ସଙ୍କେତକୁ ନେବାକୁ ହେବ, ତେବେ କଅଣ କରାଯିବ ?"

ଜଣେ ଢାଉଁକର ମାଡ଼ି ବସି କହିଲା—"ତେବେ ସେ କମିଶନରଙ୍କୁ ପଚାରିବା—"ବାପଧନ,ଗାଈବାଛୁରି ଚିହ୍ନଟା କେଉଁ ତାଲିକା ଭିତରେ ଥିଲା ? ଶାସକ ଦଳ ପାଇଁ ଯେଉଁଟା ହବ ସେଇଟା ଆମପାଇଁ ନ ହେବ କାହିଁ ? କମିଶନର କାଣ୍ଡୁଆ ହୋଇଯିବନି ? ସେ କେବେ-ହେଲେ ନାସ୍ତି କରିବନି ।"

ଏଥର ତାଲିକା ବାହାରୁ ସର୍ଭଙ୍କର ଆଦରଣୀୟ ଜିନିଷ ଖୋଜାଗଲା । ଝାଡ଼ୁଣୀ ମୁଠା, ବେଲଣା କାଠି, ପିଠାଖଡ଼ିକା, ତାଉଆ, କଟୋରି, ପାନବଟୁଆ, ପେଡ଼ି, ଗହଣା, ଶାଢ଼ୀ ଆଦି ବହୁତ ବହୁତ ଜିନିଷ ପସନ୍ଦକୁ ଆସିଲା ନାହିଁ । ପୁଣି ସେହି ନୈରାଶ୍ୟ । ଶେଷରେ ରାଧାନାଥ ରଥଙ୍କୁ ଡାକି ତାଙ୍କ ପରାମର୍ଶ ନେବାକୁ ସର୍ବସମ୍ମତିକ୍ରମେ ସ୍ଥିର ହେଲା ।

ରାଧାନାଥ ରଥ ଆସିଲେ । ସମସ୍ୟାଟାକୁ ତାଙ୍କ ଆଗରେ ପ୍ରାଞ୍ଜଳ ଭାବରେ ବୁଝାଇ ଦେବାକୁ ଯାଇ ଜଣେ କହିଲେ—"ଦେଖନ୍ତୁ ଆଜ୍ଞା ! ଆମେ ସ୍ପଷ୍ଟ ଜାଣିପାରୁଛୁ ଶାସକଦଳ ସର୍ଭମାନଙ୍କ ଭୋଟ୍‌ଗୁଡ଼ାକୁ ଏକଚାଟିଆ କରି ନେଇଛନ୍ତି । ଫଳରେ ପିଠିରେ ଅଠା ଲଗାଇ ଗାଦି ଉପରେ ବସି ଯାଇଛନ୍ତି । ସେମାନେ ଯେଉଁ ଗାଈବାଛୁରି ଚିହ୍ନଟା ଆଦରି ଯାଇଛନ୍ତି ସେଇଟା ସର୍ଭମାନଙ୍କ ମନକୁ ବେଶ୍ ପାଇଯାଇଛି । ଫଳରେ ଆଗ ପଛ ନ ବିଚାରି ସେହି ଚିହ୍ନରେ ଭୋଟ୍ କୁଢ଼େଇ ଦେଇ ଯାଉଛନ୍ତି । ଆମର ଏମିତି ଗୋଟାଏ ସଙ୍କେତ ଦରକାର ଯାହାକୁ ଦେଖିଲେ ସର୍ଭମାନେ

ଗାଈବାଛୁରୀ ଛାଡ଼ିଦେବେ । ଆପଣ ଗୁଦଚନ୍ତ ଗୋଟିଏ ସଙ୍କେତ ଆମଙ୍କୁ ଦଅନ୍ତୁ ।"

ଚନ୍ଦାମୁଣ୍ଡିକୁ କୁଣ୍ଡଇ କୁଣ୍ଡଇ ରଥ ମହାଶୟ କହିଲେ, "ଦେଖନ୍ତୁ ଅଜ୍ଞା, କେବଳ ଗାଈବାଛୁରୀ ଯେ ଚିଲ୍‌ମାନଙ୍କୁ ଟାଣି ନେଉଛି ସେଇଟା ମୋର ବିଶ୍ୱାସ ହେଉନ । ତେବେ ଆପଣମାନେ ଯେତେବେଳେ ଗୋଟିଏ ଅଧିକ ପ୍ରିୟ ବସ୍ତୁ ଖୋଜୁଁଛନ୍ତି ସେଇଟା ମୁଁ ଦେଉଛି । ଚିଲ୍‌ମାନେ ହେଲେ ମହା ପୁଅରଙ୍କୁଣୀ । ଗୋଟିଏ ସୁନ୍ଦରିଆ ପୁଅ ଦେଖିଲେ ସେମାନେ ସବୁକାମ ପଛକୁ ପକେଇ କହୁ ସମୟ ତା' ଆଡ଼କୁ ଚାହିଁରହିବେ । ପିଲାଙ୍କ ଗୁହକନାରୁ ସେମାନେ ଚନ୍ଦନ ଗନ୍ଧ ପାଆନ୍ତି । ମୂତ କନା ଏବଂ ବାନ୍ତି କନାରୁ ମହମହ ବାସ୍ନା ହେନାର ଗନ୍ଧ ପାଆନ୍ତି । ଯାହାରନାହିଁ ତା'ର ହେଇଥାଉ ପଛକେ, ଗୁଲୁଗୁଲିଆ ଛୁଆଟିଏ ଦେଖିଲେ କାଖେଇ ପକେଇ ଗେଲ ଉପରେ ଗେଲ କରିବାରେ ଲାଗିପା'ନ୍ତି । ଚିଲ୍‌ଙ୍କୁ ଏଇ ଚିତ୍ରଟା ସବୁଠାରୁ ବେଶି ଆକର୍ଷଣୀୟ । ଏମିତ ଚିତ୍ରଟିଏ କରିବେ ଯେଉଁଥିରେ ଗୁଲୁଗୁଲିଆ ଛୁଆଟିଏ ଗୁରୁଣ୍ଡିଥିବ । ଖିଲଖିଲକରି ହସି ଦେଉଥିବ । ଗୋଟାଏ ହାତ ଉପରକୁ ଟେକି ଦେଇଥିବ । ସତେ ଯେମିତି ତା' ବୋଉକୁ ଦେଖି ହାତ ବଢ଼େଇ ଦେଉଛି । ବାସ୍, ସେଇ ଚିତ୍ରଟି ଚିଲ୍‌ମାନଙ୍କର ସର୍ବଶ୍ରେଷ୍ଠ ଆକର୍ଷଣ । ଏଣିକି ଆପଣମାନଙ୍କର ଯାହା କରିବାର କଥା କରନ୍ତୁ ।"

ଗୁପ୍ତ ମନ୍ତ୍ରଟା କଏ କହିଦେବାରୁ ଆଲିବାବା ଆଗରେ ଜିବାଟ ରତ୍ନ ଭଣ୍ଡାରର ଦୁଆରଟା ସତେ ଯେପରି ଫଟ୍‌କରି ଖୋଲିଗଲା । ସମସ୍ତେ ଆନନ୍ଦରେ ମଜ୍‌ଗୁଲ୍ ହୋଇଗଲେ ।

ଜଣେ ସାଫ୍ ସାଫ୍ ଶୁଣେଇଦେଲା—"ଚିଲ୍‌ମାନେ ଛୁଆକୁ ଟେପି ଗାଈବାଛୁରୀ ପାଏ ଆଉ ଯାଇପାରିବେ ନାହିଁ । ନହାତ ପାଦ ଦେଖିଲେ କହିଦେବା—"ମାଉସୀ ! ଛୁଆକୁ ତ ଖୋଜୁଁନ ଆଉ ଗାଈ-ବାଛୁରୀପାଏ ଯାଉଛ କଆଁ ? କ୍ଷୀର ଆଣି କାହାକୁ ପିଆଇବ । ଆଗ ହେଉଛି ପୁଅ ତା'ପରେ ଆଉ ସବୁ । ମାଉସୀ, ଛୁଆଟା କେଡ଼େ ସରାଗରେ ହାତଟେକି ଡାକୁଛି, ତା'କୁ ଛାଡ଼ିଯିବାକୁ ମନ ବଳୁଛି'ନା ? ଚିଲ୍ । ଯଦ

ବେଶି ଗଗୀ ହୋଇଥିବ ଆଜି ବୋଲି ନ ଶୁଣିବ ତେବେ ଅପାଲଟି ଅସ୍ତ୍ରଟାଏ ଛାଡ଼ିଦେବାକୁ ହେବ—ହେ ମାଉସୀ, ପୁଅକୁ ଛାଡ଼ି ଅନ୍ୟଆଡ଼େ ଯାଉଛୁ । ଯାଉଥା, ଘରକୁ ଫେରିଲେ ଆଉ ପୁଅକୁ ଦେଖିବୁ ନାହିଁ । ଏ ପୁଅର ମା-ବାପ ନାହିଁ । ଏ ହେଉଛି ଭଗବାନଙ୍କ ପୁଅ, ଏହାକୁ ଅନାଦର କଲେ ଭଗବାନଙ୍କ ଅଭିଶାପ ପଡ଼ିବ । ନିଜ ପୁଅକୁ ହରାଇବୁ ମାଉସୀଙ୍କ ବାପ୍ ସେତିକରେ ମାଉସୀ ଆଣ୍ଠେଇ ପଡ଼ିବ ।”

କଥାଗୁଡ଼ାକ ସମସ୍ତେ ଡକ୍‌ଡକ୍ ] ହୋଇଗଲେ । ଆସନ୍ତା ନିର୍ବାଚନରେ ଯେ ଶାସକଦଳ ମାଙ୍କଡ଼ଟର୍ ନିଷ୍ଟପ୍ସ ମାରିବ ଏଥିରେ କାହାର ସନ୍ଦେହ ରହିଲା ନାହିଁ । ଆଉ ଯେ ଷ୍ଟପ୍ସରେ ମୁଣ୍ଡ ନ ଖେଳେଇ କଏ କେଉଁ ମନ୍ତ୍ରୀ ହେବ ସେଥି ଷ୍ଟପ୍ସରେ ମୁଣ୍ଡ ଖେଳାଇଲେ ।



# ॥ ଭୋଟଲିନ୍ ବଟିକା ॥

ଗଦେଇ ବୁଢ଼ା ଭେଣ୍ଡିଆ ପୁଅର ଗତି ଗୋଚର ଦେଖି ପ୍ରମାଦ ଗଣିଲା । ସହରରେ ଯାଇ କି ମାଟ୍ରିକ୍ ପାଠ ପଢ଼ିଲା ଯେ ଶେଷ କଲାପରେ ଛଅ ବର୍ଷ ପାଠ ଚକଟିଲା, ଢାଢାଢାତ ଦରଜ କଲା, ନାକରୁ ବୁଢ଼ାସିଂଘାଣି ବୁହାଇଲା, ହେଲେ ସେ କ୍ଲାସରୁ ଆଉ ପଦାକୁ ଡେଇଁ ପାରିଲା ନାହିଁ । ଶେଷରେ ଘରକୁ ଫେରିଆସି କହିଲା ଯେ ତା' ମାଷ୍ଟର-ଗୁଡାକ ଖଗପ, ହିଂସୁକ, ପର ଶିରୀ ଦେଖି ପାରନ୍ତି ନାହିଁ । ତାକୁ ଜାଣି ଜାଣି ଶେଷ କ୍ଲାସ ଘରେ ଛଅ ବର୍ଷ କାଳ ଅଟକେଇ ଦେଇ ରଖି ଦେଲେ । ସେ କୁଆଡ଼େ ଯେ କ୍ଲାସଟା ଡେଇଁ ପଡ଼ିଥିଲେ ସବୁ ମାଷ୍ଟରଙ୍କୁ ପାଠରେ ହଟେଇ ଦେଇଥାଆନ୍ତା ।

ସାଙ୍ଗ ସୁଦେଇ ସବୁ କଥା ମନଯୋଗ ଦେଇ ଶୁଣି କହିଲା— "ହଁ ହୋଇଥିବ, ହୋଇଥିବ । ଟୋକାଟା ମିଛ କହୁନି । ଗୁମର ପାଠ କିଏ କାହାକୁ କଅଣ ପଢ଼େଇଲାଣି ! ଯୋଉ ପାଠ ଜାଣିଗଲେ ଶିଷ୍ୟ ଅବଧାନକୁ ଟପିଯିବାର ଭୟ ଥିବ ସେ ପାଠ ତ ଅବଧାନ କେବେହେଁ ପଢ଼େଇବ ନାହିଁ । ଓଲଟି ଯଦି ଶିଷ୍ୟ ପୋଥିପତରେ ଯୋଗାଡ଼ କରି ସେ ପାଠର ଉଦଘଷ କରିବ ଆଉ ଅବଧାନ ତା'ର ସୁରାକ ପାଇଯିବ ତେବେ ସେ କିସ୍ କଦର୍‌ରେ ତା ପାଠକୁ ଭଣ୍ଡୁର କରିଦେବ । କିନ୍ତୁ କୁଆଡ଼ୁ ନ ହେଲେ ତା' ପୋଥିକୁ ଚୋରି କରି ନେଇ ଚୁଲିରେ ପୁରାଇ ଦେବ । ପୁରାଣରେ ଏହାର ବି ବହୁତ ନମୁନା ଅଛି । ଭାରତ ପୁରାଣରେ ଶୁଣିନ ଗୁରୁ ଦ୍ରୋଣ କେଡ଼େ କୁରୁରୁପେଞ୍ଚିଆ କାମ କରିଥିଲେ । ନିଜ କଥା ଚୁଲିକି ଗଲା ତାଙ୍କ ବଡ଼ ଶିଷ୍ୟ ଅର୍ଜୁନକୁ ଟପିଯିବାର ଡର ହେବାରୁ ସେ କେମିତି ଏକଲବ୍ୟର ବୁଢା ଆଙ୍ଗୁଠି କଟାଇଦେଲେ । ସେ ମନେ ମନେ ଠିକ୍ କଲେ କେମିତି ଏକଲବ୍ୟ ଅର୍ଜୁନକୁ ନ ଟପୁ । ନିଜ କଥା ହୋଇଥିଲେ

ମେ କଅଣ ନ କରି ଥାଆନ୍ତି ! ଅବଧାନଗୁଡ଼ାକ କଥା କୁହନା ! ତୁମ ପୁଅ ମିଛ କଥା କହୁନି । କହୋ, ଗୋଟାଏ କ୍ଲାସ ପାଠରେ ମଣ ହେବାକୁ ଛଅ ବର୍ଷ ଲାଗିବ ନା । କି କଥା କହୁନ୍ତି । ବାହା ହୋଇନ୍ତୁ ବୋଲି ଆମେ କଅଣ ହଳ ପାଠରେ ମଣ ହୋଇନ୍ତୁ । ମୋ ବାପା ହଳ କରୁଥିଲାବେଳେ ମୁଁ ଦିନେ କେବଳ ବାପା ପଛେ ପଛେ ଗୋଡ଼େଇ ଏକା ଦିନକେ ଶିଖିଗଲି । ଦିନେ ଦି' ଦିନ କଣ୍ଟି ଉପରେ ହାତ ଥୋଇ ହଳ ଶିଖିଗଲି । ଧାନ କାଟିବା ଏକା ଏକା ଦିନକେ ଶିଖିଯାଇଥିଲି । ଏଇଟା କଅଣ ପାଠ ନୁହେଁ ? ଦିନ କେତୋଟାରେ ଏ ପାଠରେ ମୁଁ ମଣ ହୋଇଗଲି । କ୍ଲାସ ପାଠ ଟିକିଏ କଡ଼ା ହୋଇଥିବ । ସେଥିପାଇଁ ଦିନେ ଜାଗାରେ ଦଶ ଦିନ ଲାଗୁ, ମାସେ ବି ହୋଇଯାଉ ! କି ଅପରଛନିଆ କଥା ! ଛଅ ବରଷ ଲାଗିବନା । ସେଥିରେ ବି ପୁଣି ମଣ ହୋଇପାରିଲାନି । ଏଗୁଡ଼ାକ ଖାଲି ଅବଧାନଙ୍କ ଫେର୍‌କାମି ଛଡ଼ା ଆଉ କିଛି ନୁହେଁ । ପଇସା ଲୋଭରେ ଓକିଲ ଯେପରି ମକଦ୍ଦମାରେ ତାରିଖ ଉପରେ ତାରିଖ ଗଡ଼େଇ ପଇସା ଝୁଣେ, ଏ ଅବଧାନଗୁଡ଼ାକ ଠିକ୍ ସେମିତି । ଛାତ୍ରମାନଙ୍କୁ ଫିଏଲେ ଫିଏଲେ କରେଇ ସେମାନଙ୍କଠାରୁ ଦରମା ବାବଦରେ ପଇସା ଦି'ହାତିଆ ଦୁହିଁ ପକାନ୍ତି ।

ଗଦେଇ ବୁଢ଼ା ମନକୁ କଥାଟା ପାଇଗଲା । ସେ କହିଲା— "ଠିକ୍ କଥା କହୁଛ । ସେ ଅବଧାନଗୁଡ଼ାକ ଟଙ୍କା ଲୋଭରେ ତାକୁ ଫିଏଲ ଫିଏଲ କରି ପାରିଦେଲେ । ଆଉ କି ତା'ର ଶିଖି ଦେଖିଲେ ନାହିଁ । ସେ ଇସ୍କୁଲର ବଡ଼ ଅବଧାନ ପତ୍ର ଗୋଟାଏ ଉପରେ ଗୋଟାଏ ଚିଠି ମୋ ପାଖକୁ ପଠେଇଥିଲା । ସେଗୁଡ଼ାକୁ ମୁଁ ଜଣକୁ ପଢ଼େଇ ବୁଝିଲି ଯେ ମୋ ପୁଅ କୁଆଡ଼େ ଖରାପ । କଅଣ ନ ଲେଖିଥିଲେ ! ସେ କୁଆଡ଼େ ପାଠ ପଢ଼ୁନି, ମଦ ପିଉଛି, ଦଙ୍ଗା ଜନାକାସ୍ତି ମକଦ୍ଦମାରେ ତିନି ଚାରିଥର ପୁଲିସ୍ ଧୋଷଡ଼ା ଖାଇଲାଣି । ଶେଷ ଚିଠିରେ କୁଆଡ଼େ ଜଣେଇଥିଲେ ଯେ ତାକୁ ଇସ୍କୁଲରୁ ତଡ଼ି ଦିଆଯାଇଛି । ହଉ ହେଲା ସେ ତଡ଼ା ଖାଇଲା—ଘରକୁ ତ ଏତେ ଦିନ ହେଲା ଆସିଲାଣି, କାହିଁ ମୁଁ ତ କିଛି ହେଲେ ତା'ର ଅବଗୁଣ ଦେଖୁନି ।"

ଗଦେଇ ଆଉ ସୁଦେଇ ଦୁହେଁ ବହୁତ ମଥା ଖର୍ଚ୍ଚ କରି ନିଶ୍ଚିତ ହୋଇଗଲେ ଯେ ପୁଅ ନଟିଆ ଢଲ୍‌କୁଲ ଶୁଦ୍ଧ ସୁବର୍ଣ୍ଣ । ତା' ନାଆଁରେ

ଉଠିଥିବା ଦୁର୍ନାମଗୁଡ଼ିକ ମନ୍ଦଚରିତ୍ରବିଶିଷ୍ଟ ଅବଧାନମାନଙ୍କ ଦ୍ୱାରା ଶୂନ୍ୟରୁ ସୃଷ୍ଟି ।

ଗଦେଇ ସାମଲର ପୁଅ ଉପରେ ରଖିଥିବା ଆସ୍ଥାଟା ଦୋହଲି ଯିବାକୁ ବେଶିଦିନ ଲାଗିଲାନି । ଗଦେଇ ବଡ଼ ଭୋରରୁ ବିଲକୁ ଚାଲିଯାଏ । ନରମ ଖରା ଟିକଏ ଟାଣ ନ ହେବାଯାଏ ନଟିଆ ନ ଉଠେ । ଦିନେ ସେ ପୁଅ ଉପରେ ଖପାହୋଇ ଗାଳି ଗୁଲଜ କରିବାରୁ ସେ ବାପା ନଥିବାବେଳେ ବୋଉ ପାଖରେ ଫେରାଦ ହେଲା—"ବାପାର ଇଚ୍ଛା ମୁଁ ଯାଇ ବିଲରେ ବ ଉଁର କଣ୍ଡରାଙ୍କ ସାଙ୍ଗରେ ପିଣ୍ଡରୁ ଲୁଗା ଟେକି ଦେଇ ପାଣି କାଦୁଅରେ ଘାଣ୍ଟି ହେବି । ଏତେ ପଇସା ଖର୍ଚ୍ଚ କରି ଏତେ ପାଠ ପଢ଼ିଲି, ଏତେ ବର୍ଷ-ଯାଏ ବାବୁଭାଇମାନଙ୍କ ସଙ୍ଗେ ଚଳି ଆସିଲି । ଆଜି ମଳିମୁଣ୍ଡିଆଙ୍କ ସାଙ୍ଗରେ ମିଶିବି କିପରି ? ଏ ମଳିମୁଣ୍ଡିଆଙ୍କ ସାଙ୍ଗରେ ମିଶି ପାଣି କାଦୁଅରେ ଲଟପଟ ହେଉଥିଲାବେଳେ ଯଦି ମୋର କେଉଁ ସହପାଠୀ ସାଙ୍ଗ ଦେଖିଦିଏ ତେବେ ମୋ ଇଜ୍ଜତ ମହତ ଆଉ ରହିବନା ?"

ତା' ବୋଉ ମନେ ମନେ ଗେରସ୍ତ ଉପରେ ବିଗିଡ଼ିଲା ଆଉ ଭାବିଲା ସତ କଥା ତ ! ଯିଏ ହାକିମ ହୁକୁମାଙ୍କ ସାଙ୍ଗରେ ଚଳି ଆସିଲା ସେ ବାଉରି, କଣ୍ଡରାଙ୍କ ସାଙ୍ଗରେ ମିଶିବ କେମିତି ? ରାତିରେ ଗେରସ୍ତକୁ ବୁଝେଇଦେଲା । ଗଦେଇ ବି କଥାଟାକୁ ସମଝିଗଲା । ତଥାପି ତା' ମନରେ ଗୋଟାଏ 'କିନ୍ତୁ' ରହିଗଲା । ଆଉ ଦିନେ ପୁଅ ଉପରେ ବିଗିଡ଼ି ଯାଇ ଗାଳି ଗୁଲଜ କଲା—"ଆରେ ସବୁବେଳେ ମାଦଳମୁଣ୍ଡା ପରି ଘରଟା ଭିତରେ ପଡ଼ିଛୁ କାହିଁକିରେ ? ଯାଉନୁ ଗାଆଁ ଭିତରେ ବୁଲିବୁଲି କରୁନୁ । ଏତେଗୁଡ଼ାଏ ପାଠ ପଢ଼ିଲୁ, ସେଇ ପାଠ କଥା ଦଶଜଣ ଜାଣିବା ତ ଦରକାର । ତୋ ପାଠ କଥା ଜାଣିଗଲେ ଗାଆଁ ଲୋକେ ତୋତେ ଖୁବ୍ ଖାତିର୍ କରନ୍ତେ । ମୋତେ ଗାଆଁବାଲା ଯେଉଁ ହୁଣ୍ଡା 'ଗଦେଇ' ବୋଲି ଡାକୁଛନ୍ତି ସେଥିରୁ ମୁଁ ବି ରକ୍ଷା ପାଇଯାଆନ୍ତି । ସମସ୍ତେ ଏତିକି ତ ଭାବନ୍ତେ ଯେ ମୁଁ ଯଦି ସତସଞ୍ଜିଆ ହୁଣ୍ଡା ତେବେ ମୋ ପୁଅ ଏଡ଼େବଡ଼ ପାଠୁଆ ହେଲା କେମିତି ! ଯା ଗାଆଁ ଭିତରେ ବୁଲିବୁଲି କରି ।"

ପୁଅ ବାପ କଥାରେ ଉଁ-ଚୁଁ ନ କରି ସିଧାସଳଖ ବୋଉ ଆଗରେ ଫେଗାଦ ହେଲା—"ଦେଖିଲୁ ବୋଉ, ଏ ଜମାଠ ଓଲୁଁ ଗାଆଁ-ବାଲାଙ୍କ ସଙ୍ଗେ ମୁଁ କଅଣ କଥାବାର୍ତ୍ତା ହେବି ? ବାପା ମୋ ସାଙ୍ଗରେ ଲଗେଇଛନ୍ତି ଏ ଓଲୁ ଗାଆଁବାଲାଙ୍କ ସାଙ୍ଗରେ ବସାଉଠା କରିବ । କଅଣ ବା ସେମାନଙ୍କ ସାଙ୍ଗରେ କଥାବାର୍ତ୍ତା କରିବ ! ସେମାନେ ମୋ କଥାରୁ କଅଣ ବୁଝିବେ ? ପାଠୁଆଙ୍କ କଥା ପାଠୁଆ ସିନା ବୁଝିବେ, ଜପଟ ଓଲୁ ସେଥିରୁ ପାଇବେ କଅଣ ? ଚଷା କ ଜାଣେ ପଣାର କଥା, ପଡ଼ିଲେ ବୋଲିବେ ବାର । କାହା ପିଣ୍ଡାରେ ଯାଇ ବସି ବକର ବକର ହେବାକୁ ମୋତେ ମୋଟେ ଆରେଇବ ନାହିଁ ।"

ତା' ବୋଉ ପୂର୍ବପର ଗତିରେ ଗେରସ୍ତକୁ ଭଲ ଭାବରେ ବୁଝେଇ ଦେଲା—"ଦେଖ, ପୁଅ ଆମର ହାକମ ହୁକୁମା ପାଠପାଏ ପଢ଼ିଛି । ସେ କେମିତି ମୂରୁଖ ଗାଉଁଲିଙ୍କ ସଙ୍ଗେ କଥାବାର୍ତ୍ତା ହେବ ଯେ ? ଜଜ୍, ମେଜେଷ୍ଟରମାନଙ୍କୁ କେଉଁଠି ଦେଖିଛ ସେମାନେ ମୂରୁଖ ଗାଉଁଲିଆଙ୍କ ସାଙ୍ଗରେ ମିଳାମିଶା କରୁଛନ୍ତି ? ସେଥିରେ ପୁଅର ଇଜ୍ଜତ ମହତ ବୁଡ଼ିଯିବ । ସେ କଥା ତାକୁ ଆଉ କୁହନା ।"

ଘରଜା କଥା କାଟିବାକୁ ଗଦେଇ ମୁଣ୍ଡକୁ କଣ୍ଟା ଟେଇଁଠିଲା ନାହିଁ । ସେ ବି ମନେ ମନେ କହିଲା—ସତେ ତ ହାକମ ହୁକୁମାମାନେ ଗାଉଁଲିଆଙ୍କ ସଙ୍ଗେ ମିଳାମିଶା କରନ୍ତି ନାହିଁ । ତା' ପୁଅ ହାକମ ନ ହେଉ କଅଣ ହୋଇଚାଲେ, ହାକମ ପାଠ ପଢ଼ିଛି ତ, କୋଉଦିନ ସେ ହାକମ ନ ହେବ ସେକଥା କିଏ କହିବ । ନ ମିଶୁ, ନ ବୁଲୁ । ଉଆକଟ୍ କଥା । ଶ୍ରେଷ୍ଠ ଲୋକଙ୍କ ସାଙ୍ଗରେ ମିଶିଲେ ଇଜ୍ଜତ ମହତ ଶ୍ରେଷ୍ଠ ହୋଇଯିବ ।

ପୁଅର ଆଉ ଗୋଟାଏ ଗୁଣ ଗଦେଇକୁ ବଡ଼ ବିରକ୍ତ କଲା । ଗାଆଁ ଭିତରେ କାହାର କେମିତି ଯଦି ପିଠାପଣା ହୁଏ ସେଠିକି ଯେତେ ଡାକିଲେ ବି ତା ପୁଅ ନ ଯାଏ । ଦିନେ ସେ ପୁଅକୁ ଆକଟ କରି କହିଲା—"ତୁ'ତ କାହାର ଘରେ ପଡ଼ିଲି ପାଣି ପକେଇଲୁ ନାହିଁ । ତୋ ଘରକୁ କିଏ କାହିଁକି ଆସିବ ? ଆମେ ସମସ୍ତେ ତ ଛନ୍ଦାଛନ୍ଦି ହୋଇ ଗାଆଁରେ ରହିଛୁ । ସମସ୍ତଙ୍କୁ ଏମିତି ଦେଖାଉଛି କାଲି ସମସ୍ତେ ଆମକୁ

ବେଙ୍କାତର କରବେ । ଶେଷରେ ଏକଘରକିଆ ହେବାକୁ ପଡ଼ିବ । ଏ ଅଲକ୍ଷଣା ବୁଦ୍ଧି ଛାଡ଼ ।"

ପୁଅ ପୂର୍ବପର ବୋଉ ପାଖରେ ଫେସାଦ ହୋଇ କହିଲା—"ସତ କହୁଛି ବୋଉ, ସହରୀ ଖିଆରେ ମୋ ଜିଭ କଟିଲା । ବରା, ପିଆଜ, ପକୁଡ଼ି ମୋ ଜିଭରେ ଭେଦିଯାଇଛି । ଏଠି ଗାଆଁରେ ଖାଇବି କ'ଣ ? ଯୋଉଁମାନେ ଖାଇବାକୁ ଡାକୁଛନ୍ତି ସେମାନେ ଏ ସବୁର ନାଆଁ ଗନ୍ଧ ଧରୁନାହାନ୍ତି । ଯାହା ଘରେ ଦେଖିବ ଖାଲି ଚୁଡ଼ା, ଦହି, ଗୁଡ଼, ଲୁଣ, ଲଙ୍କା । ଥରେ ଦି' ଥର ଯାଇ ଏସବୁ ଦେଖି ମନ ଥଣ୍ଡା । ମୋତେ ସେଗୁଡ଼ାକୁ ଦେଖି ବାନ୍ତି ମାଡ଼ୁଛି, ମୁଁ ଯିବି କେମିତି ? ପୁରି, ମାଉଁସ ତରକାରି, ଚପ୍ କଟଲେଟ୍‌ରୁ ହେଲେ କିଛି ଥାଆନ୍ତା ! ସେଇଥିଲାଗି ମୁଁ କେଉଁଠିକି ଯାଏନା ।"

ଏ କଥାଗୁଡ଼ାକ ତା' ବୋଉ କିନ୍ତୁ ପସନ୍ଦ କଲାନି । ସେଦିନ ରାତିରେ ଗେରସ୍ତ ଭାରିଜା ଦୁହେଁ ଖୁବ୍ ଆଲୋଚନା କରି ଦେଖିଲେ ଟୋକା ଯାହା କହୁଛି ସେସବୁ ଠିକ୍ ନୁହେଁ । ପୁଅଟା କେମିତି ପ୍ରକୃତିଛଡ଼ା ଧରିଛି । ସକାଳେ ଗଦେଇ ଗାଆଁ ଅବଧାନଙ୍କୁ ସବୁକଥା କହିଲା । ଅବଧାନେ ବହୁତ ଶୋଚ୍ ବିଚାର କହିଲେ—ଏଇଟା ରୋଗର ଲକ୍ଷଣ । ଟୋକାର ଜିଭ ଆଉ ମନରେ ରୋଗ ହେଉଛି । ସହରର ଖାନା ଖାଇ ଜିଭରେ ରୋଗ ହେଉଛି । ଅଳସୁଆ ହୋଇଯାଇଛି, ଗାଉଁଲି ଖାଦ୍ୟରେ ଅରୁଚି ଧରିଛି । ଆଉ ସହରର ସବୁବେଳେ ଅକଥା, ଅକାର୍ଯ୍ୟ ଦେଖି ଦେଖି ମନଟା ବି ଖରାପ ହୋଇଯାଇଛି । ଏଥିକୁ ଦରକାର ଔଷଧ । ଟୋକାର ବାରଗୁଣିଆ କଥା ଶୁଣୁଛ କାହିଁକି ?

ଗଦେଇ ମନକୁ ଅବଧାନଙ୍କ କଥାଟା ପାଇଲା । ଗାଆଁ ବଇଦକୁ ଗୁହାରି, ସଜନାଛୁଇଁ ଓ ସାରୁର ଗୋଟିଏ ଡାଳ ଦେଇ ମୁଦୁକ ନେଲା, ହେଲେ ସେଥିରେ ପାହୁଲାକର ବି ଉପକାର ହେଲା ନାହିଁ । ବଇଦ ଆହୁରି କଡ଼ା କଡ଼ା ଔଷଧ ଦେଲା । ହେଲେ ସେ ବି ନଙ୍ଗସୁଅରେ କୁଆଡ଼େ ଭାସିଗଲେ । ଗଦେଇ ବଇଦକୁ ଛାଡ଼ି ହୋମିଓପ୍ୟାଥି ଡାକ୍ତର ପାଖକୁ ଗଲା । ସେ ବହୁ ଲକ୍ଷଣ ଭିତରୁ ସାର ସାର ଲକ୍ଷଣ ଚିପିଲେ । ଏକରେ

ଅଳସୁଆମି, ଦୁଇରେ ଗାଉଁଲି ଲୋକଙ୍କ ପ୍ରତି ଘୃଣା, ତିନିରେ ଗାଉଁଲି ଖାଦ୍ୟ ପ୍ରତି ଘୃଣା, ଗାଁ ଲୋକଙ୍କ ସଙ୍ଗେ ମିଳାମିଶା କରିବାରେ ଅନିଚ୍ଛା, ଗାଉଁଲି ବେଶଭୂଷା ପ୍ରତି ମଧ୍ୟ ଘୃଣାଭାବ ଇତ୍ୟାଦି ଇତ୍ୟାଦି ଟିପି ବନ୍ଦ ଲେଖାଇଲେ । ଶେଷରେ ଔଷଧ ଦେଲେ । ରୋଗୀ ମାସେଯାଏ ହୋମିଓପ୍ୟାଥି ଔଷଧ ଖାଇଲା । ହେଲେ ରୋଗ ଟିକିଏ କାହିଁକି ଶୁଣିଲା ! ଗଦେଇ ବଡ଼ ଚିନ୍ତିତ ହୋଇ ପଡ଼ିଲା ।

ଏହି ସମୟରେ ଗଦେଇ ପୁଅର ଜଣେ ସହରିଆ ଲମ୍ବାକଲିଆ ସାଙ୍ଗ ଆସି ପହଞ୍ଚିଲା । ଗଦେଇ ତାକୁ ଡାକି ନେଇ ପୁଅର ସାଲିହିକତ ସବୁ କହିଲା । ଏଠା ବଇଦ ଡାକ୍ତର ସବୁ ଥକି ଗଲେଣି । ଜଣେ ସହରି ବଡ଼ ଡାକ୍ତରଙ୍କୁ କେମିତି ଦେଖାନ୍ତା ସେ ବିଷୟରେ ସାହାଯ୍ୟ କରିବାକୁ ତାକୁ ଅନୁରୋଧ ଜଣାଇଲା ।

ଲମ୍ବାକଲିଆ ରୋଗର ଲକ୍ଷଣ ସବୁ ଶୁଣି ମନେ ମନେ ଖୁବ୍ ହସିଲା ଆଉ ଭାବିଲା ବଡ଼ ଅଜବ ଏ ମଫସଲିଆମାନେ । ନିଜଠାରୁ ଆଉ ଜଣେ ଫରକ୍ ହେଲେ ଚଟାପଟ୍ ଧରି ନେଉଛନ୍ତି ଯେ ତାକୁ କିଛି ଗୋଟାଏ ରୋଗ ଗ୍ରାସିଲାଣି । ଅବଶ୍ୟ ଏଇଟା ଗୋଟାଏ ମାନସିକ ରୋଗ କହିଲେ ଚଳେ । ଏଥିପାଇଁ ଦେହକୁ ଔଷଧ ଦେଲେ କଅଣ ହେବ ? ମନଟାକୁ ଓଳେଇ ଦେଲେ କାମ ସରିଲା ।

ତା' ପରେ ପ୍ରକାଶ୍ୟରେ ସେ ଗଦେଇକୁ କହିଲା—"ହଁ ମଉସା, ରୋଗ ଯାହା ହୋଇଛି ମୁଁ ଜାଣିଗଲିଣି । ତା' ଔଷଧ ମୋତେ ଜଣା । ମୁଁ ନର୍ଭର ଜବାବ ଦେଉଛି ଭଲ ହୋଇଯିବ । ଔଷଧ ସାଙ୍ଗକୁ ଗୋଟାଏ ପାଣିପାଗ ବି ଦରକାର । ସେ ପାଗ ଆଉ ଦୁଇ ମାସ ପରେ ଆସିଯିବ ! ତୁମେ ତରତର ହେଲେ ଚଳିବନି । ଦୁଇମାସ ପରେ ଦେଖିବ ପୁଅ ଠିକ୍ ଓଲଟିଯାଇଛି । କିଛିହେଲେ ଏବର ଲକ୍ଷଣ ତା'ଠି ଦେଖା ଯିବନି ।"

× × ×

ଗଦେଇ ପୁଅକୁ ତା' ଲମ୍ବାକଲିଆ ସାଙ୍ଗ ଏକାନ୍ତକୁ ଡାକି ନେଇ କହିଲା—"ଦେଖ ସାଙ୍ଗ, ଯଙ୍ଗିନ ବେଳ ଆସିଗଲା । ଖବରକାଗଜ

ତ ପଡ଼ୁଥିବୁ । ଏ ସରକାର ଆଉ ତିଷ୍ଠିବ ନାହିଁ । ଦିନେ ଦ'ଦିନ ଭିତରେ ଭାଙ୍ଗିବ । ନୂଆ ନିର୍ବାଚନ ଫେରି ହେବ । ଯିଏ ଯେଉଁଠୁ ସବୁ ଠିଆହେବେ ସେମାନେ ଇଆଡ଼ୁ କାମ ଆରମ୍ଭ କରିଦେବେ । ଯୋଉ ନୂଆ ପାର୍ଟି ଗଢ଼ାଯାଉଛି ମୁଁ ସେଥିରେ ଜଣେ କାର୍ଯ୍ୟନିର୍ବାହ୍ଦାର । ତୁ ଏଠି ଠିଆହେବୁ ବୋଲି ମୁଁ ପାର୍ଟିରେ କହୁଛି । ସେମାନେ ଅବଶ୍ୟ ଏଠି ଲୋକଙ୍କୁ ପଗ୍ଚାରି ବୁଝିବେ ତୋତେ ଠିଆ କରେଇଲେ ଚଳିବ କି ନାହିଁ । ତେଣୁ ତୁ ଆଜିଠାରୁ କାମରେ ଲାଗିଯା । ଲୋକଙ୍କ ସାଙ୍ଗରେ ମିଳାମିଶା କର । ସେମାନଙ୍କର ହାନି ଲାଭ ବୁଝ । ଆଉ ଦେଖ, ତୁମର ଏଠି ହରିଜନ ବହୁତ ଅଛନ୍ତି । ସେମାନଙ୍କୁ ହାତରେ ରଖିନେ ।"

ଗଦେଇ ପୁଅ ଟିକିଏ ଚଙ୍ଗା ହୋଇଯାଇ କହିଲା—"ଓଃ ମୋତେ ସେଗୁଡ଼ା ମାଲୁମ୍ ଅଛି । ଅସଲ କଥା ହେଲା—ମୋତେ ସତରେ ଟିକଟ ଦେବେ ତ ? ସେତକ ଜାଣିପାରିଲେ ମୁଁ କାମରେ ଲାଗିଯାଆନ୍ତି ।"

"ଆରେ ମୁଁ ପରା କହିଲି—ମୁଁ ତୋ ନାଆଁଟା ପ୍ରସ୍ତାବ କରିଛି । ସେମାନେ ତାକୁ ଟିପି ରଖିଛନ୍ତି । କିନ୍ତୁ ଏଠା ଲୋକ ଯଦି ତୋତେ ନାପସନ୍ଦ କରିଦେବେ ତେବେ କଥା ଶେଷ ! ତେଣୁ ତୁ ଇଆଡ଼ୁ କାମରେ ଲାଗିଯା ।"

ସେଦିନ ରାତିରେ ଗଦେଇ ପୁଅକୁ ଆଉ ନିଦ ହୁଏ । କେତେ-ଥର ସହରରେ ସେ ଭୋଟ କାମ କରିଛି । ଗାଡ଼ିରେ ବସି ବୁଲେଇଛି । ବଡ଼ବଡ଼ଲୋକଙ୍କୁ ଦେଖିଛି । ଲିଡ଼ରମାନେ କେମିତି ଭୋଟରମାନଙ୍କ ପାଖରେ କାକୁତି ମିନତି ହୁଅନ୍ତି ସେଇଟା ଖୁବ୍ ଦେଖିଛି । ସେ କିଛି ଅପାଠୁଆ ନୁହେଁ, ମାଟ୍ରିକ୍ ପାଏ ପଢ଼ିଛି । ଆଗେ ତ କେତେ ମାଇନର୍-ବାଲା ଏମ୍. ଏଲ୍. ଏ. ଓ ମନ୍ତ୍ରୀ ହୋଇଥିଲେ । ଏବେ ବି କେତେଜଣ ଅଛନ୍ତି । ସେ ଅଲବତ୍ ଏମ୍. ଏଲ୍. ଏ. ହେବ । ମନ୍ତ୍ରୀଟାଏ ଯେ ନହେବ ତାହା କିଏ କହିବ ? ଏଣୁ କାଲି ସକାଳୁ କାମ ଆରମ୍ଭ କରିଦେବ । ଶୁଭ ଦିନଟା ବି ଅଛି ।

× × ×

ଗାଆଁରେ ସମସ୍ତେ ଅବାକ୍ । ଗଦେଇ ପୁଅ ଚଟଳ ମାଛ ପରି ଏମିତି କପରି ଲେଉଟି ପଡ଼ିଲା । ବଡ଼ଭୋରରୁ ଉଠି ନିତ୍ୟକର୍ମ ସାରିଦେଇ ଗାଆଁ ଟାପାକ ଖେଳିଯାଉଛି । କାହାକୁ ମଉସା, କାହାକୁ ଅଜା, କାହାକୁ ଭାଇନା ବୋଲି କହି ନମସ୍କାର ଉପରେ ନମସ୍କାର ଅଜାଡ଼ି ପକାଉଛି । ସାନ ସାନ ପିଲାଙ୍କ ପିଠିରେ, ମୁଣ୍ଡରେ ହାତ ମାରି ବାବୁରେ, ଧନରେ କହି ମୁହଁ କାହିଁକି ଶୁଖିଛି, ଖାଇନାହୁଁ କିରେ, ଇସ୍କୁଲକୁ ନିତି ଯାଉଛୁ କି ନା ଇତ୍ୟାଦି ପଚାରି ବହୁତ ଉତ୍ସାହ ଦେଉଛି । ସମବୟସ୍କ ଟୋକାମାନଙ୍କୁ ଧରି ଗୋଟାଏ ଦଙ୍ଗଲ କରି ସାରିଲଣି । ବେଳେ ବେଳେ ସେମାନେ ଗପ୍ପାଘାଟରୁ ଅଳଆ ଆଡ଼େଇ ଦେଉଛନ୍ତି । ଯେଉଁ ଗଦେଇ ପୁଅ ନମିତା କଲେ ବି ଘରକୁ ଆସୁନଥିଲା ଓ ବୁଢ଼ା, ଉଖୁଡ଼ାକୁ ନାକ ଟେକୁଥିଲା, ସେ ପୁଣି ମଉସା-ମାଉସୀ ଡାକ ଦେଇ ପଣି ମାଗି ମାଗି ପଖାଳ ଓ ସଜନାଶାଗ ଖାଉଛି । କାହା ପିଣ୍ଡାରେ ନ ବସୁଛି ବୋଲି ନାହିଁ । ଅତି ଆଶ୍ଚର୍ଯ୍ୟର କଥା ସେ ଅଧିକ ସମୟ ହାଡ଼ି ପାଣ୍ଡ ଓ ପାଣ ସାହିରେ କଟାଉଛି । ସେମାନଙ୍କ ପିଣ୍ଡାରେ ଲଥ୍‌କରି ଯାଇ ବସିପଡ଼ୁଛି । ଆହୁରି ଅଜବ କଥା ତାଙ୍କଠାରୁ ବଡ଼ ମାଗି ଖାଉଛି । 'ମୋ ଚଷା ଭାଇରେ, ମୋ ଚଷା ଭାଇରେ' ଡାକ ଦେଇ ଆଖି ଛଳଛଳ କରି ପକାଉଛି । ଖାଲି ସେତିକି ନୁହେଁ—"କୃଷୀମାନେ ହେଲେ ଏ ଦେଶର ମେରୁଦଣ୍ଡ । ହରିଜନମାନଙ୍କ ଉନ୍ନତି ବିନା ଦେଶର ଉନ୍ନତି ହୋଇପାରିବନି" ବୋଲି ଚାରିଆଡ଼େ କହି ବୁଲୁଛି । ବାଟରେ ଘାଟରେ ଯାହାକୁ ଦେଖୁଛି ତାକୁ ଆଗଭୁଗ ନମସ୍କାରଟାଏ ପକେଇ ଦେଇ ପଚାରୁଛି—"ଭାଇ ସବୁ ଭଲ ? ବାପା ଭଲରେ ଅଛନ୍ତି ତ ? ପିଲାଛିଲା ସମସ୍ତେ ଭଲ ତ ? ତୁମ ଦିହ ସାମାନ୍ୟ ଝଡ଼ିଗଲା ପରି ଦିଶୁଛି । ଦିହ ପ୍ରତି ନଜର ଦିଅ । ଦିହର ଅବହେଳା କରିବା ଉଚିତ୍ ନୁହେଁ । ଗୋଟାଏ ଟନିକ୍ ଖାଇନିଅ । କିଛି ଅସୁବିଧା ହେଲେ ତୁରନ୍ତ ମୋତେ ଖବର ଦେବ । ଦରକାର ପଡ଼ିଲେ ମୁଁ ଥାନା ଅଫିସର, ପୁଲିସ ସାହାବ, ହାକିମ ହୁକୁମା, ମନ୍ତ୍ରୀ, ମୁଖ୍ୟମନ୍ତ୍ରୀଙ୍କ ପାଖକୁ ଯାଇ ସବୁ ଠିକ୍ କରିଦେବି ।"

ଆଜ ଗୋଟିଏ ଘଟଣାରେ ତା'ର ନାଆଁ ଖବରକାଗଜରେ ବାହାରି ପଡ଼ିଲା । ହାଡ଼ କନ୍ତି ହେଉଥିବାବେଳେ ଦୁଇଦଳ କୃଷୀଙ୍କ

ଭିତରେ ବାଡ଼ଆପିଟା ହୋଇଗଲା । ଦୁଇ ଦଳରେ ବାଉରି, କଣ୍ଡରା, ବ୍ରାହ୍ମଣ, ଖଣ୍ଡାଇତ ସବୁ ବର୍ଣ୍ଣର ଲୋକ ଥିଲେ । ସେଥିରେ ସମସ୍ତେ ଖଣ୍ଡିଆ ମାଣ୍ଡିଆ ହେଲେ । ଗଦେଇ ପୁଅକୁ ଗୋଟାଏ ଖାଦ୍ୟ ମିଳିଗଲା । "ହରିଜନମାନଙ୍କ ଉପରେ ବର୍ବର ଆକ୍ରମଣ" ଶୀର୍ଷକ ଏକ ଲେଖା ଖବର-କାଗଜକୁ ପଠେଇଦେଲା । ହରିଜନମାନଙ୍କ ଉପରେ ସବର୍ଣ୍ଣମାନେ ଅକଥନୀୟ ଅତ୍ୟାଚାର ଚଳାଇ ସେମାନଙ୍କ ଘରଦ୍ୱାର ପୋଡ଼ି ଦେଇଛନ୍ତି ବୋଲି ଖବର ଚଟାପଟ୍ କାଗଜରେ ବାହାରି ପଡ଼ିଲା । ଗଦେଇ ପୁଅ ହରି କେଇଟାରେ ନେତା ହୋଇଗଲା ।

ହନେ ଗଦେଇ ତା' ପୁଅର ସାଙ୍ଗକୁ ପଚାରିଲା—"ହଇରେ, କ ଔଷଧଟାଏ ଦେଲୁରେ ? ଭାରି ବଡ଼ିଆ କାମ ଦେଖେଇଲାଣି ।"

ଲମ୍ବାକଲିଆ କହିଲା—"ସେଇଟା ଭାରି ଦାମିକା ଔଷଧ । ତା' ନାଆଁ 'ଭୋଟଲିନ୍ ବଟିକା' ।"



## ॥ ଭକୁଆ ପ୍ରଚାରକ ଦଳ ॥

ନିର୍ବାଚନ ଦପ୍ତରରୁ ଘୋଷଣା ପ୍ରକାଶ ପାଇଲା ଯେ, ଆସନ୍ତା ସାଧାରଣ ନିର୍ବାଚନ ଫେବୃଆରୀ ୨୩ ତାରିଖରେ ହେବ । ଯଥାସମୟରେ ପ୍ରାର୍ଥୀପତ୍ର ଯାଞ୍ଚ, ପ୍ରାର୍ଥୀପତ୍ର ପ୍ରତ୍ୟାହାର ଇତ୍ୟାଦିର ତାରିଖ ବି ବାହାରି ପଡ଼ିଲା । ବାସ୍ ସେତିକି ଘୋଷଣାଟି ଯଥେଷ୍ଟ । ମ୍ୟାଲେରିଆ ଜରରେ ଯେମିତି ଦିହଟା ପ୍ରଥମେ ଉଷୁମ୍, ତାପରେ କମ୍ପ, ତାପରେ ପ୍ରଖର ତାତି ଘୋଟି-ଯାଏ, ଘୋଷଣା ପରେ ରାଜ୍ୟର ଅବସ୍ଥା ଠିକ୍ ସେମିତି ହୋଇଗଲା । ଚିନି ଦାନାରୁ ପୁଳାଏ ତଳେ ପଡ଼ିଗଲେ କୋଉ ଅନ୍ଧସନ୍ଧି, ଗାତ ଓ ଫାଟରୁ ଭୋକିଲା ପିମ୍ପୁଡ଼ିମାନେ ଯେମିତି ଚିନିଦାନା ପାଖରେ ସାଲୁସାଲୁ ହୁଅନ୍ତି, ନିର୍ବାଚନ ଖବରଟା ରାଜ୍ୟରେ ଖେଳିଯିବାରୁ କୋଉ ଅନ୍ଧସନ୍ଧିରେ ମୁହଁମାଡ଼ି ଧକଉଥିବା ଭୋକିଲା ଟାଉଟର୍‌ମାନେ ସାଜ ସାଜ ରଡ଼ିଦେଇ ମନ୍ଦା ମନ୍ଦା ହୋଇ ବାହାରେ ଆସି ବୁଲିଲେ । ମନର ବିରସତା, ଗ୍ଲାନି ଓ ଭୋକର ପୀଡ଼ା ମୁହୂର୍ତ୍ତକ ମଧ୍ୟରେ ସମସ୍ତଙ୍କୁ ଛାଡ଼ି କୁଆଡ଼େ ଉଭେଇଗଲା । ବହୁଦିନଯାଏ ପାଟି ବନ୍ଦ ହୋଇଯାଇଥିବାରୁ ମୁହଁ ଭିତରେ ଏକ ପ୍ରକାର ବୋଳ ବସିଯାଇଥିଲା । ସମସ୍ତେ ମୁହଁକୁ ସଫାସୁତୁରା କରି ଦେଇ ପଜେଇ ନେଲେ, ଠିକଣା ବେଳକୁ ଯେମିତି ଥକା ନ ପଡ଼ିବ । କେଉଁ ପ୍ରାର୍ଥୀଙ୍କ ପାଇଁ କାମ କଲେ ପକେଟ୍ କେତେ ଫୁଲିବ ସେସବୁ ଖିନ୍‌ଭିନ୍ ଆଲୋଚନାରେ ସମସ୍ତେ ଲାଗି ପଡ଼ିଲେ । ପଣ୍ଡାମାନେ ଯାତ୍ରୀ ପାଇବା ଆଶାରେ ଗାଡ଼ିକୁ ଅପେକ୍ଷା କଲାପରି ଟାଉଟରମାନେ ନିର୍ବାଚନ ଅଫିସ୍ ଆଡ଼େ ପ୍ରାର୍ଥୀମାନଙ୍କ ଆବିର୍ଭାବକୁ ଚାହିଁରହିଲେ ।

ଯାତ୍ରୀଗାଡ଼ିକୁ ଅପେକ୍ଷା କରିବା ପଣ୍ଡାମାନଙ୍କ ପକ୍ଷରେ ଯେପରି ଉଦ୍‌ବେଗଜନକ, ପ୍ରାର୍ଥୀମାନଙ୍କ ଆବିର୍ଭାବକୁ ଅପେକ୍ଷା କରି ରହିବା

ପ୍ରଚାରକାରୀ ଟାଉଟରମାନଙ୍କ ପକ୍ଷରେ ସେହିପରି ଉଦ୍‌ବେଗଜନକ ହୋଇ ଉଠିଥିଲା । ପଣ୍ଡାମାନେ ଯାତ୍ରୀ ସଂଗ୍ରହ ପାଇଁ ବେଳେବେଳେ ଯେପରି ଆଗ ଷ୍ଟେସନକୁ ଖେଦି ଯାଆନ୍ତି, ଏ ପ୍ରଚାରକମାନେ ଠିକ୍ ସେମିତିସମ୍ଭାଳ ନ ପାରି ପ୍ରାର୍ଥୀପତ୍ର ଦାଖଲ ହେବା ପୂର୍ବରୁ ସମ୍ଭାବ୍ୟ ପ୍ରାର୍ଥୀମାନଙ୍କର ଘରକଡ଼େ ଗୁଞ୍ଜନ ଆରମ୍ଭ କରିଦେଲେ; ଠିକ୍ ଯେପରି ମହୁଭରା ଫୁଲ ନିକଟରେ ଲୋଭୀ ମହୁମାଛିଗୁଡ଼ାକ ଗୁଣୁଗୁଣୁ କରିଥାଆନ୍ତି । ଯାହା ପାଖରେ ପ୍ରଚୁର ମହୁ ନଥାଏ ସେ ଆଜିକାଲିକା ନିର୍ବାଚନ ଫୁଲକାର ଫାଇଦା ମାଡ଼ିବ କାହିଁକି ? ପ୍ରଚାରକ ଭଅଁରମାନେ ମଧ୍ୟ ଏପରି ନିର୍ଗନ୍ଧା ମହୁହୀନ ଫୁଲର ପାଖ ମାଡ଼ିବେ କାହିଁକି ?

ଠିକଣା ଠିକଣା ଭବିଷ୍ୟତର ଫୁଲ-ପାକଟିଆ ପ୍ରାର୍ଥୀମାନଙ୍କ ପାଖରେ ପ୍ରଚାରକମାନେ କାମ ଆରମ୍ଭ କରିଦେଲେ । ଚେମେଇ ପାଣିକୁ ବେଡ଼ିଥିବା ପ୍ରଚାରକମାନେ ଯୋଜନାର ଫର୍ଦ୍ଦ ମେଲିଦେଲେ । ତାଙ୍କ ସର୍ଦ୍ଦାର କହିଲେ—ଆଜ୍ଞା, ଆମେ ଏଥର ଭଲଭାବରେ ବୁଝିଗଲୁଣି ଯେ, ଆପଣ ଏ ନିର୍ବାଚନରେ ଠିଆ ନହେଲେ ଆମ ମୁଲକଟାର କିଛି ହେଲେ ଉନ୍ନତି ହେବନି । ପ୍ରତିକ୍ରିୟାଶୀଳ ଲୋକଙ୍କ ହାତରେ ପଡ଼ି ସାରା ମୁଲକଟା ଧ୍ୱଂସ ପାଇଯିବ । ପ୍ରଗତି ପରିପନ୍ଥୀ, ନ୍ୟସ୍ତସ୍ୱାର୍ଥ ଲୋକେ ଏ ଅଞ୍ଚଳକୁ ଶୋଷି କରିଦେଲେଣି । ମୁନଫାଖୋର, ସାମନ୍ତବାଦୀ ଓ ଜନସ୍ୱାର୍ଥବିରୋଧୀ ଲୋକେ ମୁଲକର ଶ୍ରୀ ନଷ୍ଟ କରିଦେଲେଣି । ମାମଲାବାଜ, ସମ୍ବିଧାନର ବିରୁଦ୍ଧାଚରଣ କରୁଥିବା ଲୋକେ ଜନତାକୁ ଧୋକାଦେଇ ବିଭ୍ରାନ୍ତ କରି ସାରିଲେଣି । ଗଣତନ୍ତ୍ର ଏ ଅଞ୍ଚଳରେ ବିପନ୍ନ ହୋଇପଡ଼ିଲାଣି । ଏ ଅଞ୍ଚଳ ସାମ୍ରାଜ୍ୟବାଦୀମାନଙ୍କର ଖେଳ ପଡ଼ିଆ ହୋଇଗଲାଣି । ଏକଛତ୍ରବାଦ ଧୀରେ ଧୀରେ ମୁଣ୍ଡ ଟେକୁଛି । ପୁଞ୍ଜିବାଦୀର ଦଲାଲମାନେ ସର୍ବହରାଙ୍କୁ ଶୋଷି ଶୋଷି ଶେତା ପକାଇ ଦେଲେଣି । ଏ ଦେଶଦ୍ରୋହୀଗୁଡ଼ାକ ସମାଜବାଦ ଉପରେ ପଥର ମଡ଼େଇ ଦେଲେଣି । ଏପରି ବ୍ୟଭିଚାର ଓ ବିକଳ ଅବସ୍ଥା ଦେଖିବାରୁ ଆମର ଦେଶସେବା କରିବାକୁ ପ୍ରବଳ ଇଚ୍ଛା ହେଲା । ଭାବିଲୁ ଏ ଅଞ୍ଚଳପାଇଁ ଜଣେ ସମାଜବାଦୀ, ପ୍ରଗତିଶୀଳ ନିଃସ୍ୱାର୍ଥପର ଲୋକ ନିହାତି ଦରକାର । କିନ୍ତୁ ଭାବିଚିନ୍ତି ସ୍ଥିର କଲୁ ଏ କ୍ଷେତ୍ରମଣ୍ଡଳରେ ଆପଣ ହିଁ ଏକମାତ୍ର ଯୋଗ୍ୟ ବ୍ୟକ୍ତି । ଆପଣଙ୍କୁ ହିଁ ଆମେ ଏ ନିର୍ବାଚନରେ ଠିଆ

କରାଇବୁ । ଆପଣ ଖାଲି ଠିଆହୋଇ ଯାଆନ୍ତୁ । ତା'ପର କାମ ସବୁ କରିବାକୁ ପଡ଼ିବନି, ଆପଣଙ୍କ ପକ୍ଷରେ ତ ଲୋକସମର୍ଥନ ରହିଛି, ଆପଣଙ୍କର ଆଉ ଚିନ୍ତା ନାହିଁ ।"

ଟେମେଇ ପାଣି ଉତ୍‌ଫୁଲ୍ଲିତ ହୋଇ ଉଠି ପ୍ରଚାରକ ଦଳକୁ ଗୁହାଳ ଜଳଖିଆରେ ଆପ୍ୟାୟିତ କରି ବିଦାୟ ଦେଲେ । ବିଦାୟ ନେଇ ଆସୁ ଆସୁ ପ୍ରଚାରକ ସର୍ଦ୍ଦାର ଦୁଆର ମୁହଁରୁ ପୁଣି ଫେରିଆସି କହିଲେ—"ଆଜ୍ଞା ଆମ ନିର୍ବାଚନମଣ୍ଡଳୀ ପାଇଁ ଆମେ ସମସ୍ତେ ତ ପ୍ରଚାରରେ ଲାଗି ପଡ଼ିବୁ । ଆଉ ବହୁ ବହୁ କୋଡ଼ିଏଟି ଟୋକାଙ୍କୁ ଏଇଆଡ଼୍ ରଖି ନେବାକୁ ହେବ । ଓଃ ! ପଟ୍‌କେଇବା ପଣରେ ସେମାନେ ଧୁରନ୍ଧର । ଆମେ ସେମାନଙ୍କୁ ଆଗରୁ ଅକ୍ତିଆର କରି ନ ନେଲେ ଅନ୍ୟମାନେ ସେମାନଙ୍କୁ ନେଇଯିବେ । ସେମାନେ ଆମ ବିରୁଦ୍ଧରେ ଲୋକଙ୍କୁ ମତେଇଲେ ଆମେ ବଡ଼ ହଇରାଣ ହେବା, ତାଙ୍କୁ ରୋକିବାଲାଗି ଯେତେବେଳେ ବହୁତ ଟଙ୍କା ଖର୍ଚ୍ଚ କରିବାକୁ ପଡ଼ିବ । ସେଇ କୋଡ଼ିଏ ଜଣଙ୍କୁ ପାଞ୍ଚ ପାଞ୍ଚଟଙ୍କା ଦାଦନ ଦେଇ ଆମର କରି ରଖିନେବା ।"

ଟେମେଇ ପାଣି ଚଟାପଟ୍ ଅଙ୍କ କଷିନେଲେ—କୋଡ଼ିଏ ପଞ୍ଚା ଶହେ ଟଙ୍କା । କିଛି କୁଆଡ଼୍ ନ ହଉଣୁ ଠୋପଠାପ୍ ଶହେ ଟଙ୍କା । ଅପରେ କିଂ ଭବିଷ୍ୟତି ।

ତାଙ୍କର ଉମା ଉମା ଆଖି, ଜଳକୁ ଆକର୍ଷିତ ହେଉଥିବା ଛେଳି ପରି ଆଚରଣ ଦେଖି ପ୍ରଚାରକ ସର୍ଦ୍ଦାର କଥାଟା ଠଉରେଇ ନେଲେ । ସଙ୍ଗେ ସଙ୍ଗେ ଯୋଖିଦେଲେ—"ହଉ ଏବେ ଟଙ୍କା ନାହିଁ ତ ଥାଉ । ଶହେ ଟଙ୍କା ନ ହେଲା ନାହିଁ । କୋଡ଼ିଏ ଟଙ୍କା ଆଣନ୍ତୁ, ଟଙ୍କାଏ ଟଙ୍କାଏ ଦେଇ ମୁଁ ସେମାନଙ୍କୁ ଇଆଡ଼୍ ଆମ କାମପାଇଁ ମହଜୁଦ୍ କରିନେବି ।"

ତଥାପି ଟେମେଇ ପାଣି ପୂର୍ବପରି ଜଳକୁ ଆକର୍ଷିତ ଛେଳିବତ୍ ବ୍ୟବହାର ଦେଖାନ୍ତେ ସର୍ଦ୍ଦାର ଟେମେଇ ପାଣିକୁ ଅସଦ୍ ବଂଶଜ ବୋଲି ଭାବି ମନେ ମନେ ଗାଳିଦେବାକୁ ଲାଗିଲା—"ଶଳା କାର୍ପଣ୍ୟ, ଶ୍ୱେଠା କୋଉଠିକାର ! ଶଳା ପାଞ୍ଚଟି ଟଙ୍କା କାଢ଼ିବାକୁ ଜୀବନ ଛୁଟିଯାଉଛି, ଶଳାର କେତେ ସାହସ, ନିର୍ବାଚନରେ ଲଢ଼ିବାକୁ ବାହାରିଛି । ଭିନ୍ନ

ଶଳା ତୁ ଯେତକ ଜାକଜମକ ହବୁ ତୋତେ ସେତକ ଖର୍ଚ୍ଚାନ୍ତ ଯଦି ମୁଁ ନ କରିଛି ତେବେ ମୋ ନାଆଁରେ କୁକୁରଟାଏ ପାଳିବୁ । ଶଳା କାମ୍ପି ଲକ୍ଷଲକ୍ଷ ଟଙ୍କା ସିନ୍ଦୁକରେ ଭରି ରଖିଛି, ଶଳାଟା ଯେମିତି ମୁଣ୍ଡେଇ ସ୍ୱର୍ଗକୁ ନବ । ରହ ଶଳା ନିର୍ବାଚନ ସରଗରମ ହୋଇ ଆସିଲେ ତୋ ସାଙ୍ଗେ କଥାବାର୍ତ୍ତା ।”

ହେଲେ ପାଟି ଖୋଲି କହିଲା—“ଆଜ୍ଞା ଆପଣ ଭାବନ୍ତୁ ନାହିଁ ଯେ ଆମେ ଏ ଟଙ୍କା ଖାଇଯିବୁ । ବରଂ ଆମେ ଆପଣଙ୍କ ପାଇଁ ସମସ୍ତ ଶ୍ରମ ଓ ଧନ ଖର୍ଚ୍ଚ କରିବୁ । କାରଣ ଆମ ଯୁବକସଂଘ ଆପଣଙ୍କୁ ଠିଆ କରେଇବାକୁ ଠିକ୍ କରି ସାରିଛୁ । ଆପଣ ଦେଖିବେ ଅନ୍ୟମାନଙ୍କର ଲକ୍ଷେ ବୋହିଗଲେ ଆପଣଙ୍କର ଶହେ ବି ବୁହାଇ ଦେବୁନି । ମୋ ପାଖରେ ଟଙ୍କା ଥିଲେ ମୁଁ ଆପଣଙ୍କୁ କହିପାଇନଥାନ୍ତି । ମୋ ପାଖରେ ଟଙ୍କା ନଥିଲା ବେଳକୁ ତେଣେ ବସ୍ତା ବସ୍ତା ଟୋକାଗୁଡ଼ାଙ୍କୁ ଅନ୍ୟମାନେ ଅକ୍ତିଆର କରିନେବାକୁ ବାହାରି ପଡ଼ିଲେଣି । ଠିକଣା ସମୟରେ ଟଙ୍କାଟିଏ ଖର୍ଚ୍ଚ କଲେ ଯେଉଁ ଫଳ ମିଳେ ଅନ୍ୟ ସମୟରେ ହଜାରେ ଟଙ୍କା ଖର୍ଚ୍ଚ କଲେ ବି ସେ ଫଳ ମିଳେନି । ପାଞ୍ଚଟା ଟଙ୍କା ଶୀଘ୍ର ଦିଅନ୍ତୁ । ମୋ ପାଖରେ ଟଙ୍କା ହେଲେ ମୁଁ ପଛେ ଫେରାଇ ଦେଇଯିବି ।”

ତେମେଇ ପାଣି ପହେ ପହେ ବୁଲିବା ଲୋକ । ଆଗରୁ ସେ ଦୁ’ଥରଟା ନିର୍ବାଚନ ଭୋଗ କରି ଟାଉଟରମାନଙ୍କ ବିଷୟରେ କିଛି କିଛି ଅଭିଜ୍ଞତା ଅର୍ଜନ କରି ସାରିଥିଲେ । ଟାଉଟର୍‌ଗୁଡ଼ାଙ୍କୁ କୌଣସି ପ୍ରକାରରେ ସନ୍ତୁଷ୍ଟ ନ ରଖିଲେ ସେମାନେ ଯେ ଭୁଚ୍ଛାଟାରେ ଦୁର୍ନାମ କରି ବୁଲିବେ ସେ ବିଷୟରେ ସେ ବେଶ୍ ସଚେତନ ଥିଲେ ।

ବଡ଼ ବିବ୍ରତ ହେଲାପରି ଦେଖାଇ ହୋଇ କହିଲେ—“ଓଃ ! କଅଣ କରିବି, ବଡ଼ ଅସୁବିଧା ହୋଇଗଲା । ଟଙ୍କାତକ ଗୋଟାଏ ଆଡ଼େ ମାଡ଼ ହୋଇଯାଇଛି । ମିନ୍ତ୍ରି ମିନ୍ତ୍ରି ଆଜି ଦଶବାର ଦିନ ଯାଏ । ପାଖରେ ଗୋଟିଏ ହେଲେ ପଇସା ନାହିଁ । ଆଜି ଦଶଟା ଦିନ ସମ୍ଭାଳ ଯାଅ । ମୁଁ ଡାକି ଦେଇଦେବି ।”

ସର୍ଦ୍ଦାର ପଥର ଚାପି ପାଣି କାଢ଼ିବା ଲୋକ । ସେ କ ସହଜେ ଛାଡ଼େ ! ଲୋକ ପଛ ଲଗି ରହିଲା, କହିଲା—"ସେଇଟା କଅଣ ମୁଁ ଜାଣିନ । ସତ କଥା, ସେତେବଡ଼ ପଇସାବାଲା ହେଲେ ବି ବେଳେବେଳେ ପକେଟ୍ ଶୁଖି ଖଡ଼ ଖଡ଼ ହୋଇଯାଏ । ବାକ୍ସ ବାଡ଼େଇଲେ ପଇସାଟିଏ ବି ବାହାରେ ନାହିଁ । ଆପଣ କିଛି ମିଛ କଥା କହୁନାହାନ୍ତି । ଯୋଗ ଏମିତି ଦେଖନ୍ତୁ ମୋ ପକେଟ ବି ଝାଡ଼ୁଝୁଡ଼ୁ, ନ ହେଲେ ମୁଁ କହନ୍ତି କାଆଁ, ମୁଁ ପିଆଡ଼େ ପିଆଡ଼େ ସବୁ କାମ ଭୁଲେଇ ନେଇଥାଆନ୍ତି, ପରେ ଆପଣଙ୍କଠାରୁ ମାଗି ନେଇଥାଆନ୍ତି । ହଉ ସାହା ହେବାର ହେଲାଣି, ଟଙ୍କାଟିଏ କେଉଁଠୁ ହେଲେ ଯୋଗାଡ଼ କରି ଆଣନ୍ତୁ । ଆମ ଯୁବକ ଦଳର ମେଣ୍ଢାଠାକୁ ଦାଦନ ଦେଇ ହାତରୁ ପାଞ୍ଚ କରନେଏ । ଆଣନ୍ତୁ ଶୀଘ୍ର ଆଣନ୍ତୁ । ତେଣେ ବହୁତ କାମ କରିବାକୁ ବାକି ପଡ଼ିଛି ।"

ଚେମେଇ ପାଣି ଦେଖିଲେ ଜୋକ ମୁହଁରେ ଲୁଣ ଦେଲା ପରି ଏ ଢଗୋଡ଼ିଆ ଜୋକ ମୁହଁରେ ଟଙ୍କାଟିଏ ନ ମାଡ଼ିଲେ ଢହରୁ ନ ଛାଡ଼େ । ଶେଷରେ ସେ ଘର ଭିତରକୁ ଯାଇ ଟଙ୍କାଟିଏ ଦେବାମାତ୍ରେ ସର୍ଦ୍ଦାର ସେ ଥାନ ଛାଡ଼ିଲା ।

ବାଟରେ ଫେରିଲାବେଳେ ସାଙ୍ଗ ପଚାରିଲା -"ହଇରେ ତୁ ସ୍ୱା ଭିତରେ ଏତେଗୁଡ଼ାଏ ପଲିଟିକ୍ସ ଶବ୍ଦ ହାସଲ କରିନେଲୁ କେବେଠୁ ? ନ୍ୟସ୍ତସ୍ୱାର୍ଥ, ପୁଞ୍ଜିବାଦୀର ଦଲାଲ, ସାମ୍ରାଜ୍ୟବାଦୀ, ପ୍ରଗତି, ପ୍ରତିକ୍ରିୟାଶୀଳ, ଏ ଶବ୍ଦଗୁଡ଼ାକ ଆୟତ୍ତ କଲୁ କେମିତିରେ ? ମୋ କାନ ତ ଏଗୁଡ଼ାକ ଶୁଣି ଭାଁ ଭାଁ ଡାକିଲା ।"

ହସି ହସି ସର୍ଦ୍ଦାର କହିଲା—"ଆରେ ପଲିଟିକ୍ସ୍ କଲେ ଏ ଶବ୍ଦଗୁଡ଼ାକ ଘୋଷି ମୁଖସ୍ଥ କରିବାକୁ ପଡ଼େ । ନେତାମାନଙ୍କ ପାଖରେ ଚାଲବୁଲ କରି ଏହି ଶବ୍ଦ ସବୁ ଟିପାଖାତାରେ ଟିପି ରଖିଛି । ଘୋଷି ମୁଖସ୍ଥ କରିବାକୁ ଅବଶ୍ୟ କିଛି ସମୟ ଲାଗିଗଲା । ଲୋକଙ୍କ ପାଖରେ ଏ ଶବ୍ଦଗୁଡ଼ାକ ଗଡ଼ଗଡ଼ କହି ଚାଲିଗଲେ ସେମାନେ କିଛି ବୁଝି-ପାରନ୍ତିନି ସତ, ହେଲେ ମନେ ମନେ ଭାବନ୍ତିଅନ୍ତି—ଅଃ! ଟାଣୁଆ ପଲିଟିକ୍ସ୍ବାଲାଟାଏ ଏକା ! କେତେ କଅଣ ନ ଜାଣିଛି । ଚେମେଇ

ପାଣି ଭଲଆ ସୁଣ୍ଣାଠାରୁ ଟଙ୍କାଟାଏ ବପି ଆଦାୟ କରନେଲ ନା ? ଯେତକ ହେଲ ସେତକ ସଇ । ଓଳକର ଜଳଖିଆ, ପାନ-ବଡ଼ ତ ହୋଇଯିବ ।"

ପ୍ରାର୍ଥୀପତ୍ର ଦାଖଲ ପରେ ନାଁ ସବୁ ଘୋଷିତ ହୋଇଗଲ । ତେମେଇ ପାଣିକୁ ହରେଇବା ଲଗି ବରୁଦ୍ଧଦଳଆଏ ଗୋଟାଏ ମେଣ୍ଟ କର ଜଣେ ପ୍ରାର୍ଥୀ ଠିଆ କରାଇଥିଲେ । ବେଶିଗୁଡ଼ାଏ ଲୋକ ଠିଆ ହେଲେ ଭୋଟଗୁଡ଼ାକ ବାଣ୍ଟି ହୋଇଯିବ ଏହା ଉପରେ ବରୁଦ୍ଧଦଳଆଏ ମେଣ୍ଟ ବାନ୍ଧ ଏପର ବ୍ୟବସ୍ଥା କଲେ । ଦୁଇଜଣଙ୍କ ଭିତରେ ସିଧାସଳଖ ଲଢ଼େଇ । ଠିଆ ହେବାର କାମ ଛୁଣ୍ଡିଗଲ ।.ପ୍ରାର୍ଥୀପତ୍ର ପ୍ରତ୍ୟାହାରର ଦନ ସାହା ବାକ ଥାଏ । ଏଠି କନ୍ତୁ କେବଳ ଦୁଇଜଣ ଲଢ଼ୁଆ ଥିବାରୁ ପ୍ରତ୍ୟାହାରର ପ୍ରଶ୍ନ ନଥାଏ ।

ମାତ୍ର ଦୁଇ ଜଣ ଲଢ଼ୁଆ । ସିଧାସଳଖ ଲଢ଼େଇ । ତେମେଇ ପାଣି ଟିକଏ ଘାବରେଇ ଗଲ । ସବୁଥର ପର ୫/୭ ଜଣ ତା' ବରୁଦ୍ଧରେ ଠିଆ ହେଉଥିଲେ ସେ ଫୁଟୁକ ମାର ସବୁ ଉଡ଼େଇ ଦେଉଥାନ୍ତା । ୫/୭ ଜଣଙ୍କ ଭୋଟ୍ ଜଣେ ମାତ୍ର ପାଇଯିବ । ହାରବାଟା ସୁନଶ୍ଚିତ କହିଲେ ଚଳେ । ଏଣେ ପୁଣି ପ୍ରଚାରକ ସର୍ଦ୍ଦାର ତାକୁ ଘେର ସେଉଁ ଯୋଜନାଫର୍ଦ୍ଦ ଧରାଇ ଦେଲଣି, ସେଥିରେ ତା'ର ପିଳେହିପାଣି ହୋଇଗଲଣି । ଖର୍ଚ୍ଚ ଖୁବ୍ କମ୍‌ରେ ଋରଲକ୍ଷର ସେ ପାଖାରେ । ପ୍ରଚାରକମାନେ ଯେମିତ ହୋକଲ ଅଛନ୍ତି ତାଙ୍କର ପେଟରେ ତ ଦୁଇଲକ୍ଷ ମାଡ଼ ହୋଇଯିବ । କାମ ଆରମ୍ଭ ହେଉ ନହେଉଣୁ ପ୍ରଚାରକମାନଙ୍କର 'ଆଣ ଟଙ୍କା, ଆଣ ଟଙ୍କା' ରଡ଼ିରେ କାନ ତାବଦା ପଡ଼ିଚାଲଣି । ଏମାନଙ୍କ ପାଟିରେ ନୋଟ୍‌ବଡ଼ା ନ ଗୁଞ୍ଜିଲେ ଶଳେ ବରୁଦ୍ଧ ପଟରେ ଆଉଜ ଯାଇ ଡଫାଉଫା କରଦେବେ । ଏଣେ ପୁଅ ମୁଣ୍ଡ ତେଣେ ତେଲ ଘଡ଼ । ତେମେଇ ପାଣି ଛଟପଟ ହୋଇଗଲ । ମନେ ମନେ ଇଷ୍ଟଦେବଙ୍କୁ ସୁମରଣା କରୁଥାଏ ।

ଏଣେ ପ୍ରଚାରକ ସର୍ଦ୍ଦାର ଟଙ୍କାକଡ଼େଇ ଓଷଦେଉ ପାନେ ପାନେ ଦେବାରେ ଲଗିଛି । ପ୍ରଚାରକମାନେ ଏଥର ବଡ଼ ଆଣ୍ଠ ବାନ୍ଧିଛନ୍ତି । ଏତେ ଦନେ ସୁଣ୍ଣା ତେମେଇ ପାଣିକୁ ଖାଳେଇ ଭିତରେ ପାଇଛନ୍ତି । ସବୁଥର

ଦଶ, ବାର ଠିଆ ହୋଇଯାଆନ୍ତି ସେ ଟେମେଇ ନଣରେ ହାତ ମାର ଶ୍ରେଷ୍ଠକ ମାରନ୍ତି । ଏଥରକ ବସ୍ତ ଯିବ କୁଆଡ଼େ ? ପୋଡା ଲୁହା ସିନ୍ଦୁକର ବାର ଅଣା ଯଦି ଖାଙ୍କ୍ ନ ହୋଇଯାଏ ତେବେ ସେମାନେ କି ପ୍ରସ୍ତାବକ !

'ହଁ କରିବା, ହଁ ଦେଖିବା' କହି ଟେମେଇ ଅଥୟ ହୋଇ-ପଡ଼ୁଥିବା ପ୍ରସ୍ତାବକମାନଙ୍କ ପିଠି ଥାପୁଡ଼ାଉ ଥାଏ । ତଥାପି ତା'ର ଟଙ୍କା ପାଞ୍ଚଶହରୁ ଅଧିକ ବୋହିଗଲାଣି । ପ୍ରସ୍ତାବକ ସର୍ଦ୍ଦାର ମନେ ମନେ ଠିକ୍ କରିନେଲା—ଟଙ୍କା ମିଳିବଇ ମିଳିବ ତେବେ ଟିକିଏ ଡେରି ହେବ । ଭାରି ଇଚ୍ଛାଥିଲା ଗୋଟାଏ ସ୍କୁଟର୍ ଚଢ଼ିବାକୁ । ଘରବନ୍ଧା ଦେଇ ଦୁଇହଜାର ଟଙ୍କା ନେଇ ଆସିଲା । ହାତାହତି ସ୍କୁଟର୍ଟାଏ କିଣି ନର୍ବାଚନମଣ୍ଡଳୀଯାକ ଖେଦ ପକେଇଲା । ଟେମେଇ ପାଣିକୁ କହିଲା—"ଦେଖ୍ ଏସବୁ କାମରେ ଡେରି କଲେ ଚଳେନା । ବିରୁଦ୍ଧ ଦଳ ତା'ର ସୁବିଧା ନଏ । ମୁଁ ଦେଖିଲି ସ୍କୁଟର୍ଟାଏ ନ ହେଲେ ନର୍ବାଚନମଣ୍ଡଳୀରେ ସମସ୍ତଙ୍କ ସଙ୍ଗରେ ସମ୍ପର୍କ ସ୍ଥାପନ କରିବା କାଠିକର ପାଠ । ହାତରୁ ଟଙ୍କା ଖର୍ଚ୍ଚ କରି ସ୍କୁଟରଟା କିଣି ପକେଇଲି । ଏଇ ହ'ଦିନ ଭିତରେ ଯେତେ କାମ ଆଗେଇଗଲାଣି, ମାସକରେ ତାହା ହେଇଥାଆନ୍ତା କି ନାହିଁ ସନ୍ଦେହ । ଆପଣ ଆଜି ନଦେଇ କାଲି ଦେବେ । ସ୍କୁଟର୍ ଯେ ନିହାତି ଦରକାର ତାହା ଆପଣ ଭଲଭାବେ ଜାଣନ୍ତି । କାମ କରିବା ଆଗ ହୋଇଯାଉ, ପଇସା କଥା ପଛ । ଦେଖନ୍ତୁ ଆମ ତରଫରୁ ଆମେ ଠିକ୍ ଅଛୁ । ଏତେବେଳେ ଆପଣ ଏମିତି ପଛେଇଲେ ସବୁକଥା ଭଣ୍ଡୁର ହୋଇଯିବ । ମେଣ୍ଟିଆଙ୍କ ପ୍ରାର୍ଥୀ ବାଜି ମାରିନେବା ଥୟ ସାର ହେବ ।"

ଯେତେ ହଲେଇଲେ ବି ଟେମେଇ ପାଣି ନ ହଲେ । ସେ ସେ ଅଟେଳ ମହାମେରୁ । ସେ ଦେଖିଲା କାମ ଆରମ୍ଭ ନ ହେଉଣୁ ଜଣେ ତ ଦୁଇହଜାର ଟଙ୍କାର ଥୋପ ପକାଇ ସାରିଲାଣି । ଏ ଦୁଇହଜାର ଉପରେ ଅନ୍ୟାନ୍ୟ ଖର୍ଚ୍ଚ ପ୍ରାୟ ୮।୧୦ ଗୁଣ । ଜଣକ ପିଛା ଏତେଟଙ୍କା ଖର୍ଚ୍ଚ । ଖୁବ୍ କମ୍‌ରେ ୫୦।୬୦ ପ୍ରସ୍ତାବକ ଦରକାର । ଏମାନଙ୍କ ପିଛା ଲକ୍ଷାବଧି ଟଙ୍କା ଖର୍ଚ୍ଚ । ତା' ଉପରେ ପୁଣି ଛପାଛପି କାମ ରହିଛି । ଟେମେଇ ପାଣି

ଝଟସ ଆତଙ୍କଗ୍ରସ୍ତ ହୋଇ ଦିନରାତି ସାଙ୍ଗ ମଧୁସୂଦନ, ସାଙ୍ଗ ମଧୁସୂଦନ ଡାକ ଛୁଡ଼ିଲା । ଗୋଟାଏ ହାଙ୍ଗର କୁମ୍ଭୀର ଧରିଥିବାରୁ ହାଙ୍ଗର ଡାକରେ ମଧୁସୂଦନ ଚକ୍ର ପେଶି କୁମ୍ଭୀରକୁ କଚ୍‌କାଚ୍ କାଟି ଦେଲେ । ତେମେଇ ପାଣି ମଣିଷ, ତା' ଡାକ ଶୁଣିବେନି । ନିଶାର ଅତଳ ସମୁଦ୍ରରେ ଭାସୁଭାସୁ ହଠାତ୍ ତା' ଗୋଡ଼ ଟାପୁରେ ଲାଗିଗଲା । ଅନ୍ଧାର ଭିତରେ ଗୋଟାଏ ସନ୍ଧାନୀ ଆଲୁଅ ତାକୁ ଦେଖାଗଲା । ୩୦ ଲକ୍ଷ ଟଙ୍କା ଥାନରେ ଗୋଟାଏ ଲକ୍ଷେ ଟଙ୍କିଆ ନିଶ୍ଚିତ ବାଟ ଦେଖାଗଲା । ସେ ବାଟରେ ପହଞ୍ଚିବା ପର୍ଯ୍ୟନ୍ତ ସେ ପ୍ରଚାରକ ଦଳଙ୍କୁ ଥା-ଥା, ମା-ମା କରିବାକୁ ଲାଗିଲା ।

ପ୍ରଚାରକ ଦଳଙ୍କର ଧୈର୍ଯ୍ୟ ଭାଙ୍ଗିଗଲା । ସେମାନେ ଟିକିଏ ଉଞ୍ଚା ଗଳାରେ କଥାବାର୍ତ୍ତା କରିବାକୁ ଆରମ୍ଭ କଲେ । ଧମକ ବି ଦିଆଗଲା । ତେମେଇ ପାଣି କିନ୍ତୁ ସନ୍ଧାନ ପାଇଥିବା ଆଲୁଅ ପାଖକୁ ପ୍ରତିଦିନ ରାତି ବାରଟାରେ ଯିବାକୁ ଲାଗିଲେ । କ୍ରୋଧାନ୍ଧ ପ୍ରଚାରକମାନେ ତେମେଇ ପାଣିଙ୍କୁ ଚରମପତ୍ର ଦେଇ ମେଣ୍ଟ ପ୍ରାର୍ଥୀଙ୍କ ପାଖରେ ଯାଇ ପହଞ୍ଚିଲେ । ମେଣ୍ଟିଆ ପ୍ରାର୍ଥୀ ସାଫ୍ ସାଫ୍ ଶୁଣାଇଦେଲେ—"ବୃଥାରେ ମୋ ପାଖକୁ ଆସୁଛନ୍ତି କାହିଁ ? ପ୍ରାର୍ଥୀପତ୍ର ପ୍ରତ୍ୟାହାର କରିନେବା ପାଇଁ ଆଜି ଥିଲା ଶେଷ ଦିନ । ମୁଁ ଶେଷ ମୁହୂର୍ତ୍ତରେ ମୋ ପ୍ରାର୍ଥୀପତ୍ର ପ୍ରତ୍ୟାହାର କରିନେଇଛି । ମୋ ପାଖ ମାଡ଼ିବା ଅନାବଶ୍ୟକ ।"

ବଛୁଆତି ଗୁଛରେ ମାଡ଼ ଖାଇଲା ପରି ଗୁଟିପିଟି ହୋଇ ସମସ୍ତେ ପଳାଇ ଆସୁ ଆସୁ ମେଣ୍ଟିଆ ପ୍ରାର୍ଥୀର ଶଳା ସଙ୍ଗେ ବାଟରେ ଦେଖାହେଲା । ତାକୁ ବେଢ଼ିଯାଇ ତାଙ୍କ ପ୍ରାର୍ଥୀପତ୍ର ପ୍ରତ୍ୟାହାର କରି ନେବାର କାରଣ ପଚାରିଲେ । ସେ କହିଲା—"ତେମେଇ ପାଣି ଆଜକୁ ୩୪ ଦିନ ହେଲା ରାତି ୧୨ଟାରେ ଆସି ତାଙ୍କୁ ବହୁ ପ୍ରକାର ବୁଝାସୁଝା କରି ଶେଷରେ ନଗଦ ଲକ୍ଷେ ଟଙ୍କା ଧରେଇ ଦେବାରୁ ସେ ପ୍ରତ୍ୟାହାର କରିନେଲେ । ସେ ପରିଷ୍କାର ଭଣୋଇକୁ ବୁଝାଇଦେଲେ, 'ଦେଖ ତୁମେ ଲକ୍ଷେ କି ଦି ଲକ୍ଷ ଟଙ୍କା ଖର୍ଚ୍ଚ କରିବ । ହାରିପାର, ଜିତିପାର । ହାରିଲେ ଟଙ୍କାତକ ପାଣିରେ ପଡ଼ିଲା । ଜିତିଲେ ବି ଲକ୍ଷେ ଟଙ୍କା ଉଠେଇବା କାଠିକର ପାଠ ହେବ । ଆଜିକାଲି ମମସ୍ତେ ଯେପରି ଛକାଛକ ହେଲେଣି ସେଥିରେ

ଗୋଟାଏ କଳାଟଙ୍କାରେ ହାତ ମାରୁ ମାରୁ କଏରେ କଏରେ ରଙ୍ଗ ଷ୍ଟରଆଡ଼ କମାଇ ଦେଉଛୁ । ମୁଁ ପ୍ରଚାର କାମରେ ଲକ୍ଷେ ଟଙ୍କା ଖର୍ଚ୍ଚ କରିବି, କେତେ ହନ୍ତସନ୍ତ ହେବି । ସେଇ ଲକ୍ଷେ ଟଙ୍କା ତୁମକୁ ଦେଉଛୁ । ତୁମେ ଓଟହାରି ପାଅ । ତୁମେ ପରିଶ୍ରମ ନକରି ଲକ୍ଷେ ଟଙ୍କା ପାଇଲ । ମୁଁ ବି ପରିଶ୍ରମ ନ କରି, ଟାଉଟରମାନଙ୍କ ଖପରରେ ନ ପଡ଼ି ନିର୍ବାଚିତ ହୋଇଯିବି । ଏଥିରେ ଉଭୟଙ୍କର ମଙ୍ଗଳ ହେବ । କଥାଟା ବି ସତ । ଭଣ୍ଡୋଇଙ୍କ ମନକୁ ପାଇଗଲା । ଲକ୍ଷେ ଟଙ୍କା ପାଇ ସେ ପ୍ରାର୍ଥୀପତ୍ର ପ୍ରତ୍ୟାହାର କରିନେଲେ । କଥାଟା ଖୁବ୍ ଗୋପନରେ ହୋଇଥିବାରୁ କେହି ତାର ସୁରାକ୍ ପାଇଲେ ନାହିଁ କି ଭଣ୍ଡୋଇଙ୍କ ଉପରେ ଗୃପ ପକାଇ ପାରିଲେ ନାହିଁ ।"

କଥାଗୁଡ଼ାକ ପ୍ରଚାରକମାନଙ୍କ ଏ କାନରେ ପଶି ସେ କାନରେ ବାହାରି ଯାଉଥିଲା । ମୁଣ୍ଡଗୁଡ଼ାକ ଭେଁ ଭେଁ କରୁଥିଲା ।



## ॥ କାପୁଅର୍ଫିଙ୍ଗା ଦରବାର ॥

ଚଳନ୍ତ ଶ୍ରମିକଦଳର କର୍ମୀମାନେ ଫାଙ୍ଗାଳ ପଡ଼ିଗଲେ । ପଣ୍ଡାମାନଙ୍କ ମୁହଁରୁ କଥା ବାହାରିଲା ନାହିଁ । ଧକ୍କାର ଜୁଆର-ଭଙ୍ଗାରେ ପରିଣତ ହେବା ପରେ ସମସ୍ତେ ମୁଣ୍ଡ ଟେକ ମୁହଁ ଗୁହାଁଚୁହିଁ ହେଲେ । ପଣ୍ଡାମାନେ ଏକାଠି ବସି ବିଗ୍ଭର କଲେ ସେମାନଙ୍କ ନିର୍ବାଚନ ଇସ୍ତାହାର ଏତେ ପ୍ରଗତିମୂଳକ ହୋଇଥିଲେ ସୁଦ୍ଧା ଲୋକେ ରକ୍ଷଣଶୀଳ ଜାଠଗୁଡ଼ାଙ୍କୁ ପସନ୍ଦ କଲେ । ଜାଠ ଦଳର ନିର୍ବାଚନ ଇସ୍ତାହାର ସେମାନଙ୍କ ତୁଳନାରେ ଯେ କେଡ଼େ ତୁଚ୍ଛ ତାହା ଯେ କୌଣସି ଭୋଟର୍ ଆଖି ବୁଲେଇ ଦେଲେ ଜାଣିପାରିବ । ତଥାପି ଲୋକେ ଜାଠମାନଙ୍କ ହାତରେ କ୍ଷମତା ଦେଲେ । ଲୋକେ ଯେ ନିପଟ ବୋକା, ସେ କଥା କହିହେବନି । ତାହା କହିବା ଅର୍ଥ ଗୋଟାଏ ଭେଜାଲ୍ ଆତ୍ମସନ୍ତୋଷ ଜୋରଜବରଦସ୍ତ ମନ ଭିତରେ ପୂରେଇବା । ଭୋଟରମାନେ ସମସ୍ତେ ଶିକ୍ଷିତ ଓ ସଚେତନ । ସେମାନଙ୍କୁ ଭଣ୍ଡେଇ ଭୋଟ୍ ମାରିନେବା ସହଜ କଥା ନୁହେଁ । ନିର୍ବାଚନର ଯଥେଷ୍ଟ ପୂର୍ବରୁ ସବୁ କ୍ଷମତା ତ ରାଣୀଙ୍କ ହାତକୁ ଗଲା । ଏଣୁ ସରକାରୀ କଳର ସାହାଯ୍ୟ ନେବା କାହାରି ପକ୍ଷରେ ସମ୍ଭବ ନୁହେଁ । ତଥାପି ଶ୍ରମିକ ଦଳର ଏ ବିପର୍ଯ୍ୟୟ ଘଟିଲା କିଆଁ ? ଲୋକେ ସେମାନଙ୍କ ଉପରେ ବିଗିଡ଼ିଲେ କାହିଁକି ? ଜାଠ ଦଳର ଇସ୍ତାହାରରେ ତଳପଡ଼ିବା ଭଳି କିଛି ତ ନଥିଲା । ନିଶ୍ଚୟ କିଛି ଗୁରୁତ୍ୱପୂର୍ଣ୍ଣ ନିର୍ବାଚନ ବେଳେ ପ୍ରୟୋଗ କରାଯାଇଛି । ତା ନ ହୋଇଥିଲେ ଜାଠଦଳ କେବେହେଲେ ଛିଟାପଟ ମାରିନେଇ ପାରି ନ ଥାନ୍ତେ । ବର୍ତ୍ତମାନର କାମ ହେଉଛି ସେ ଗୁରୁତ୍ୱ-ପୂର୍ଣ୍ଣର ସ୍ୱରୂପ ଓ ତାହା କପରି ପ୍ରୟୋଗ କରାଯାଏ ତାହା ଖୋଜ ବାହାର କରିବାକୁ ହେବ ।

ଭାରତରୁ ନିକଟରେ ଫେରିଥିବା ଜଣେ ସାହାବ କହିଲେ ଯେ, ସୋ ଭାରତରେ ଥିଲାବେଳେ ଦେଖିଥିଲେ ଯେ 'ନୋଟ୍ ନିଅ ଭୋଟ୍ ଦିଅ' ପଦ୍ଧତି

ମନୋନୟନ ଦେଖାଏ ନାହିଁ । ଲୋକେ ବି ଦି' ଦି' ଟଙ୍କାରେ ନିଜ ଭୋଟ୍ ବିକନ୍ତି । ଜାପମାନେ ବୋଧହୁଏ ସେହି ଶ୍ରେଷ୍ଠତାକୁ ଏଇଠି ଲଗେଇଦେଲେ ।

ଭୋଟ୍ ବିକା କଥା ଶୁଣି ସମସ୍ତେ ହୋ-ହୋ ହୋଇ ହସିଉଠିଲେ । ଜଣେ କହିଲେ—ଏ କାମଟା ଠିକ୍ ତଣ୍ଟିକଟାକୁ ଛୁରି ବିକି କରିବା ସଙ୍ଗେ ସମାନ । ଭୋଟ୍ ବିକାକିଣା ସିନା ଭାରତରେ ହେବ, ବିଲାତରେ ସମ୍ଭବ ନୁହେଁ । ଜାପାନିଆ ଏପରି କରିଥିଲେ ଓଲଟି ମାଙ୍କଡ଼ଚାଳ୍ ମାରିଥାନ୍ତେ ।

ଆଜି ଜଣେ କହିଲେ ଯେ, ଜାପ ବଡ଼ମନ୍ତ୍ରୀଙ୍କ ସଙ୍ଗେ ନିର୍ବାଚନ ପୂର୍ବରୁ ବିଜୟବାବୁଙ୍କର ଦେଖା ହୋଇଥିଲା । ସେ ଗୋଟାଏ କଅଣ 'ଅମୋଘ ଅସ୍ତ୍ର' ଚଳେଇ ଜାଣନ୍ତି । ବୋଧହୁଏ ସେ ସେହି ଅସ୍ତ୍ରଟା ଜାପ ବଡ଼ମନ୍ତ୍ରୀଙ୍କୁ ଧରେଇ ଦେଲେ ।

ଆଲୋଚନାରେ ଏସବୁ କଚ୍‌କାଚ୍ କଟିଗଲା । ଅମୋଘ ଅସ୍ତ୍ର ଓ ଟଙ୍କାର ଅଭିନ୍ନତା ଜଣେ ପ୍ରାଞ୍ଜଳ ଭାବରେ ବୁଝାଇଦେଲେ । ଭାରତ ପ୍ରତି ସହାନୁଭୂତିଶୀଳ ଜଣେ ଶ୍ରମିକନେତା କହିଲେ ଯେ, ସେମାନେ ଭାରତକୁ ଯେଉଁ ଗଣତନ୍ତ୍ର ଦେଇ ଚାଲିଆସିଲେ ସେ ଗଣତନ୍ତ୍ରରେ ନୋଟ୍ ଓ ଭୋଟ୍‌ର ଅଭେଦପ୍ରୀତି ଅବଶ୍ୟମ୍ଭାବୀ । ଲୋକେ ଶିକ୍ଷିତ ହୋଇଗଲେ ଏହି ପ୍ରୀତି ବିବାଦରେ ପରିଣତ ହେବ । ଅର୍ଥାତ୍ ନୋଟ୍ ଦେଲେ ଭୋଟ୍ ନ ଆସି ପଳେଇବ । ଅନ୍ୟ କଥାରେ କହିବାକୁ ଗଲେ ଜଣେ ଯାହାଠୁଁ ନୋଟ୍ ପାଇବ ତାକୁ ଠକାଇ ଅନ୍ୟକୁ ଭୋଟ୍ ଦେଇ ଦେବ । ଏଇଟା ଗୋଟାଏ ମାମୁଲି କଥା । ଭାରତୀୟ ଗଣତନ୍ତ୍ରରେ ଏହା ଏକ ଅବଶ୍ୟ ଦେଖିବା ବିଷୟ ।

ଜଣେ ପଣ୍ଡା ମୁଖ ବିକୃତ କରି କହିଲେ ଯେ, ଗଣତନ୍ତ୍ରକୁ ଶ୍ରେଷ୍ଠ କରିଦେବା ଉଚିତ ନୁହେଁ । ଆଗ୍‌ମାର୍କ ଗଣତନ୍ତ୍ର କେବଳ ତାଙ୍କର ପାଖରେ । ସେମାନେ ତାକୁ ଖାଇ ଜୀର୍ଣ୍ଣ କରୁଛନ୍ତି । ଭାରତବର୍ଷରେ ତାକୁ ହଗିଦେଇ ଚାଲି ଆସିଛନ୍ତି । ଭାରତର କଂଗ୍ରେସୀ ବଡ଼ମନ୍ତ୍ରୀମାନେ ସେହି ଗୁହକୁ ଖେଳାଉଛନ୍ତି । ତେଣିକି ଗୁହ ଖେଳାଇଲେ ଯାହାହୁଏ ।

ହମହମ ହୋଇ ଗଣତନ୍ତ୍ରର ଗୃହକୁ ଆବୋର ବସିଲେ । ଏବେ ଗନ୍ଧ ଶୁଙ୍ଘୁଥାଆନ୍ତୁ । ସ୍ଥୁଳ ସେମାନେ କଅଣ କଲେ ନକଲେ ସେ ବିଷୟରେ ମୁଣ୍ଡ ଖେଳାଇବା ଠିକ୍ ନୁହେଁ । ଯାହାକୁ ପରିତ୍ୟାଗ କରାଯାଇଛି ତାକୁ ଆଉ ଫେର ଗୁହାରିବା ଉଚିତ ନୁହେଁ । ବିରାଡ଼ି ଓ କୃପଣ ଛଡ଼ା ଅନ୍ୟ କେହି ହଗିସାର ଗୃହକୁ ଗୁହେଁ ନାହିଁ । ନିଜ କଥା ନିଜକୁ ବଳଉଛି । ପରକଥା ପଗ୍ଭରେ କିଏ ? ଆସନ୍ତା ନିର୍ବାଚନରେ ଜାଠମାନଙ୍କ ହାତରୁ କ୍ଷମତା କେମିତି ହେଲେ ଛଡ଼ାଇ ଆଣିବାକୁ ହେବ । ସେତକ ବିଷୟରେ ଯାହ କରୁ ମୁଣ୍ଡ ଖେଳେଇବାକୁ ହେବ, ଅନ୍ୟ କୌଣସି ବିଷୟରେ ନୁହେଁ ।

ବହୁ ଘାଣ୍ଟାଘାଣ୍ଟି, ତର୍କ-ବିତର୍କ ପରେ ସ୍ଥିର ହେଲା ଯେ, ଯେହେତୁ ଭାରତବର୍ଷ ନିର୍ବାଚନରେ ହଟଚମଟ ଦେଖାଇବାରେ ସର୍ବଶ୍ରେଷ୍ଠ, ଯେ କୌଣସି ରାଜନୈତିକ ସମ୍ଭାବନାକୁ ଓଲଟପାଲଟ କରିଦେବାରେ ସିଦ୍ଧହସ୍ତ, ଯେହେତୁ ଭାରତର ଓଡ଼ିଶାରେ ହେବାକୁଯାଉଥିବା ନିର୍ବାଚନକୁ ଜଣେ ସୁଦକ୍ଷ ପର୍ଯ୍ୟବେକ୍ଷକଙ୍କୁ ପଠାଯିବ । ବ୍ରିଟେନ୍ ଭାରତକୁ ବହୁତ କିଛି ଶିଖେଇଛି ସତ; କିନ୍ତୁ ନିର୍ବାଚନ ବିଷୟରେ ଭାରତଠାରୁ ବହୁତ କିଛି ଶିଖିବାର ଅଛି । ବ୍ରିଟେନ୍ ଭାରତ ଛାଡ଼ିବାର ମାତ୍ର ୨୫ଟା ବର୍ଷରେ ଭାରତ ଏ ଦିଗରେ କେତେ ପ୍ରଗତି ନ କରିଛି !

ଜଣେ ଭଲ ଓଡ଼ିଆ ଜାଣିଥିବା ଦକ୍ଷ ପର୍ଯ୍ୟବେକ୍ଷକ ଶେଷରେ ମିଳିଲେ । କଥାଟାର ଗୁରୁତ୍ୱ ତାଙ୍କୁ ବୁଝାଇ ଦିଆଗଲା । ନିର୍ବାଚନ ଇସ୍ତାହାରଠାରୁ ଆରମ୍ଭ କରି ସଭାସମିତି, ଭ୍ରାମ୍ୟମାଣ ପ୍ରଚାର, ପ୍ରାଚୀର-ପତ୍ର, ପ୍ରଦର୍ଶନୀ, ରେଡ଼ିଓ ପ୍ରଚାର, ଶେଷରେ ଭୋଟ୍ ପ୍ରଦାନ ପର୍ଯ୍ୟନ୍ତ ସମସ୍ତ ବିଷୟ ତନ୍ନତନ୍ନ ପର୍ଯ୍ୟବେକ୍ଷଣ କରି ଅଭିଜ୍ଞତାର ବୋଝ ମୁଣ୍ଡେଇ ସେ ଅବଶ୍ୟ ଫେରିବେ ବୋଲି ଅଙ୍ଗୀକାର କଲେ । ଓଡ଼ିଶାରେ ହେବାକୁ ଯାଉଥିବା ନିର୍ବାଚନର ଠିକ୍ ମାସକ ପୂର୍ବରୁ ପର୍ଯ୍ୟବେକ୍ଷକ ଗେବ୍ରିଏଲ ପେଡ଼ି ପୁଟୁଳା ଧରି କଟକ ଷ୍ଟେସନରେ ଓହ୍ଲାଇଲେ । ଭୁବନେଶ୍ୱରରେ ଓହ୍ଲାଇଥିଲେ ରହିବା ସୁବିଧାଟା ଭଲ ହୋଇଥାନ୍ତା; କିନ୍ତୁ ଓଡ଼ିଶାର ପ୍ରଥମ ନଗର କଟକରେ ଲୋକଙ୍କ ଭିତରେ ରହିଲେ ଅଭିଜ୍ଞତାଟା ଚମତ୍କାର ହେବ ବୋଲି ସେ ସେଇଠି ଓହ୍ଲାଇଲେ ।

କଟକର ନିର୍ବାଚନ ଜ୍ୱର ସେତେବେଳକୁ ୧୧୦ ଡିଗ୍ରୀ ହୋଇ ଯାଇଥାଏ । ଦୁଇ ମୁଖ୍ୟପ୍ରାର୍ଥୀଙ୍କ ବଡ଼ପାଟିଆ (ମାଇକ୍) ରଡ଼ିରେ କାନ ଫାଟେ କି ନଫାଟେ । ସମୟ ଅସମୟ ନାହିଁ । ପାଟି ଘୋଳେଇ ହୋଇଯାଇଥିବା ପ୍ରସ୍ତାବକ ବା ପ୍ରଚାରକମାନେ ହାଲିଆ ହୋଇ ଶୋଇ ପଡ଼ିବା ସମୟକୁ ଛାଡ଼ି ଅନ୍ୟ ସମସ୍ତ ସମୟ କୋଳାହଳ, ଘୋର ଗର୍ଜନ ବିଶେଷ କରି ଦୁଇପକ୍ଷର ବଡ଼ପାଟିଆ (ମାଇକ୍) ଯେତେବେଳେ ମୁହାଁମୁହିଁ ହୋଇଯାଉଥିଲେ ସେତେବେଳେ କଥାବାର୍ତ୍ତା କରିବା ଅସମ୍ଭବ ହୋଇଉଠେ । ଗେବ୍ରିଏଲ ହୋଟେଲ ବାରଣ୍ଡାରୁ ସବୁ କିଛି ଦେଖି-ଶୁଣିପାରୁଥିଲେ । ବଡ଼ପାଟିଆଗୁଡ଼ିକର କଥା ବୁଝିବା ତାଙ୍କ ପକ୍ଷରେ ସମ୍ଭବ ନଥିଲା ।

ସେ ଜଣେ ହୋଟେଲ୍ ସଙ୍ଗୀ ମଙ୍ଗୁର ସାହାଯ୍ୟ ନେଲେ । ମଙ୍ଗୁ ସାଫ୍ ସାଫ୍ ବୁଝେଇ ଦେଲେ, "ଏ ଯେଉଁ ବୋକା ଲୋକଗୁଡ଼ାକ ବଡ଼ପାଟିଆରେ ରଡ଼ି ଛାଡ଼ୁଛନ୍ତି, ସେମାନେ ବିଲ୍‌କୁଲ୍ ଭୁଲିଯାଉଛନ୍ତି ଯେ ସେମାନେ ବଡ଼ପାଟିଆରେ କହୁଛନ୍ତି । ବଡ଼ପାଟିଆର କାନ ଭିତରେ ମୁହଁକୁ ମାଡ଼ି ରଡ଼ି ଛାଡ଼ୁଛନ୍ତି । ସେଥିରେ ପରିଷ୍କାର ଶୁଭିବ କୁଆଡ଼ୁ ? ଘାଉଁ ଘାଉଁ ଶବ୍ଦ ବାହାରିବା ସ୍ୱାଭାବିକ । ସେହି ଘାଉଁ ଘାଉଁ ଶବ୍ଦରୁ ଗୋଟାଏ ଦି'ଟା କଥା ଧରିପାରିଲେ ରଡ଼ି ଛାଡ଼ିଲାବାଲା କଅଣ କହୁଛି ଠଉରେଇ ହୁଏ । ଆମର ଆଡ଼କା ନିର୍ବାଚନରେ ବେଶି ଭାଗ ଗୀତ ବୋଲାଯାଏ ।"

ଗେବ୍ରିଏଲ୍ ପଚାରିଲେ, "ଏହି ଗୀତମାନଙ୍କରେ କଅଣ ଦଳର କାର୍ଯ୍ୟକ୍ରମ ବା ନିର୍ବାଚନ ଇସ୍ତାହାର ବର୍ଣ୍ଣିତ ହୋଇଥାଏ ?"

"ଏ-ହେଃ, ସେଗୁଡ଼ାକ କଅଣ ଗୀତରେ କହିବା କଥା ! ଗୀତରେ ବିରୁଦ୍ଧ ପ୍ରାର୍ଥୀକୁ ଆଣ୍ଠେଇ ମଟକେଇବାକୁ ତା'ର ଦୋଷସବୁ ଖୋଲା ହୋଇଥାଏ । ତାକୁ ଛିଗୁଲା, ଠାପର କରାଯାଇଥାଏ । ଟିକିଏ ଆଗରୁ ଯେଉଁ ଜପ୍‌ନା ଗଲା ସେଥିରେ ବୋଲା ହେଉଥିଲା—"

'ଦିଲ୍ଲୀ ଫେରିଯାଆରେ ନାଗୀ ଦିଲ୍ଲୀ ଫେରିଯା, ଇଢଗ ଘରେ ଆମ୍ଭା ବନ ହେଙ୍ଗ୍ ଶୁଙ୍ଘୁଥା ।' ତା ପଛକୁ ପଛକୁ ଯେଉଁ କପ୍ଟି ଟିକିକା

ଆଗରୁ ଶୁଣାଗଲା ସେଥିରେ ବୋଲା ହେଉଥିଲା—'ଡାଲି ଯିବ ନାହିଁରେ ଭାଇ ଡାଲି ଯିବନାହିଁ, ଏଇଠି ତମକୁ ଚଟା କାଟିବ ସଭିଏଁ ଥିବ ଗୁହିଁ ।' ଦୁଇ ଜଣ୍ ଯେତେବେଳେ ମୁହାଁମୁହିଁ ହୋଇଯାଆନ୍ତି ସେତେବେଳେ ମାରୁଆଡ଼ୀପଟି-ଷଣ୍ଢ ଲଢ଼େଇ ଏକ ରକମର ଲାଗିଯାଏ । ମାରୁଆଡ଼ୀପଟିରେ ଦୁଇଷଣ୍ଢ ମୁହାଁମୁହିଁ ହୋଇଗଲେ ଲାଗିଯାଏ ଶିଙ୍ଗରେ ଶିଙ୍ଗ ଠେଲାଠେଲି, ପେଲାପେଲି । ରାସ୍ତାଘାଟ ବନ୍ଦ । ଲୋକେ ବାଡ଼ିଆପିଟା କରି ନ ଛଡ଼େଇଲେ କେହି କାହାକୁ ନ ଛାଡ଼ନ୍ତି । ଠିକ୍ ସେମିତି ପୁଲିସ୍ ଆସି ଦୁଇ ଜଣ୍‌କୁ ଟଣାଟଣ୍ ଅଲଗା ନକଲେ ଶୋଧାଶୋଧିଟା ତେଲ ଫୋପଡ଼ା, ପିଟାପିଟି, ଛୁରି ଭୁଷାଭୁଷିରେ ପରିଣତ ହୁଏ ।"

ମୁରୁକିହସା ଦେଇ ଗେବ୍ରିଏଲ୍ କହିଲେ—"ଏଥିରେ ତ ମାରପିଟ୍ ଶୋଧାଶୋଧି ଚାଲେ । ତେବେ ନିର୍ବାଚନ ଇସ୍ତାହାର ପ୍ରକାଶ କରାଯାଏ କେଉଁଠି ? କେଉଁ ଦଳ କି କି କାମ କରିବ ତା' ତ ପୁଣି ଭୋଟରମାନଙ୍କୁ ଜଣାଉଥିବେ । ଏ ଜଣେଇବା କାମ କେଉଁଠି ହୁଏ ?"

ହତୋତ୍ସାହ ହୋଇ ମଙ୍ଗୁ କହିଲେ—"ହେଲେ ହେଉଥିବ ସଭାରେ । ମୋ ହେତୁ ହେଲା ଦିନଠୁଁ ମୁଁ ଏମିତିଆ ଜଣାଣ ଶୁଣିବା ଭଳି ମନେହଉନି । ଏଠି କାହାର ତ କିଛି ପଚାରିବାର ନାହିଁ । ସ୍ୱାଧୀନତା ସଂଗ୍ରାମରେ ଜେଲ ଯାଇଥିଲେ ବୋଲି ଏବେ ସେ, ତାଙ୍କ ପୁଅ, ନାତିମାନେ ତାକୁଇ ଆଳକରି ଲାଭ ଉଠେଇବା କାମରେ ଲାଗିଛନ୍ତି । କେଜାଣି ଯଦି କିଏ ଦେଶର କଅଣ କେଞ୍ଚି ପକେଇବା ପାଇଁ କଅଣ କରି ପକେଇବାକୁ ଇସ୍ତାହାର ଦେଇଥିବ ତେବେ ତାହା ସଭାରେ ବଣ୍ଟା ହେଉଥିବ, ସେଠିକି ଗଲେ ମିଳିବ ।"

ଗେବ୍ରିଏଲ୍ ଓ ମଙ୍ଗୁ ରିକ୍ସାରେ ବସି ଗୋପବନ୍ଧୁ ପାର୍କରେ ହେଉଥିବା ସଭାକୁ ଗଲେ । ବାଟରେ ଗେବ୍ରିଏଲ୍ କହିଲେ—"ସେଇ ସଭାରେ ଦୁଇଦଳର ନେତାଙ୍କ ବକ୍ତବ୍ୟ ଅବଶ୍ୟ ଶୁଣିବାକୁ ମିଳିବ ।"

ପାଟିଟା ମେଲା କରିଦେଇ ଓ ଆଖି ଦୁଇଟା ଡିମା ଡିମା କରି ମଙ୍ଗୁ କହିଲେ, "ଏ କି କଥା କହୁଛ କହୋ ! ତମର ସେଠି କେମିତିଆ ନିର୍ବାଚନ ହୁଏ କି ?"

"ଆମର ସେଠି ଗୋଟିଏ ପାର୍କରେ ଦୁଇଦଳର ଦୁଇ ନେତା ଏକାଠି ବସନ୍ତି । ଜଣକର ବକ୍ତୃତା ସରିଲେ ଆଉ ଜଣେ ବକ୍ତୃତା ଦିଏ । ଦୁହିଁଙ୍କ ବକ୍ତୃତା ଦୁହେଁ ଶୁଣନ୍ତି । କେଉଁଠି ଟିକିଏ ହେଲେ ପାଟି ଶୁଭେ ନାହିଁ । ଲୋକେ ବି ଧୀରସ୍ଥିର ହୋଇ ଶୁଣନ୍ତି । ସଭା ଶେଷରେ ଦୁଇ ନେତା କରମର୍ଦ୍ଦନ କରି ବିଦାୟ ନିଅନ୍ତି ।"

ମଙ୍ଗୁ ତାଙ୍କ କଥାଟିକୁ ନାପସନ୍ଦ କରି କହିଲେ—"ହେଃ ! ସେ ସବୁ ଭଣ୍ଡ ଭଣ୍ଡି କାମ ଏଠି ଚଳି ପାରିବନି । କହୋ ଲଢ଼େଇ ହବ ତ ମୁହଁରେ, ହାତରେ ମନରେ ସବୁଥିରେ ହବ । ମନ ଭିତରେ ରହୁଥିବ ପ୍ରତିଦ୍ୱନ୍ଦ୍ୱୀ କେମିତି ମାଙ୍କଡଚଢ଼ି ମାରୁ ବା ମରୁ, କଅଁଳିଆ କଥା ମୁହଁରେ କହି ହସଖୁସି ହେଉଥିବ । ଏଗୁଡ଼ାକ ଭଣ୍ଡେଇବା କଥା ନୁହେଁ ତ ଆଉ କ'ଣ ? ଆମ ଭାରତୀୟ ସଂସ୍କୃତିରେ ଏସବୁ ଚଳିବନି । ଆମର ଭିତରେ ଯାହା ବାହାରେ ଠିକ୍ ସେଇଆ ।"

ଦୂରରୁ ବଡପାଟିଆର ଗର୍ଜନ ଶୁଭିଲା । ସଭା ଆରମ୍ଭ ହେଇଯାଇଛି ଜାଣି ଦୁହେଁ ଖୁସି ହେଲେ । ବକ୍‌ସିବଜାର ଛକଠାରୁ ଶକ୍‌ସାକୁ ବିଦାୟ ଦେଇ ଦୁହେଁ ଭିଡ଼ ଭିତରେ ଠେଲି ପେଲି ଆଗେଇଲେ । ଜଣେ ମୋଟା ମୋଟା ନେତା ବିରୁଦ୍ଧ ଦଳ ଉପରେ ଖୁବ୍ ମୌଖିକ ଆକ୍ରମଣ ଚଳାଇଥାନ୍ତି । ବେଳେ ବେଳେ ଜନତା ମଧ୍ୟରୁ ଜଣେ ଜଣେ ଟିପ୍ପଣୀ ଦେବା ମାତ୍ରେ ପାଟିତୁଣ୍ଡ ଦଶଗୁଣ ବଢ଼ି ଯାଉଥାଏ । ବକ୍ତୃତା ଦେଉଥିବା ନେତା ଜଣକ ଉତ୍କ୍ଷିପ୍ତ ହୋଇ ଉଠୁଥାନ୍ତି । ହଠାତ୍ ଜନତା ଭିତରୁ ଗୋଟାଏ ଟେଳା ଯାଇ ନେତାଙ୍କ ନାକଦଣ୍ଡିରେ ବସିଗଲା । ନେତାଙ୍କ ନାକରୁ ଝରଝର ହୋଇ ରକତ ବୋହିଲା ।

ଗେବ୍ରିଏଲ୍ ହତବାକ୍ ହୋଇ ଭାବିବାକୁ ଲାଗିଲେ—ନିର୍ବାଚନ ସଭାରେ ଏ କି କାଣ୍ଡ ! ନେତାଙ୍କର ଲୋକପ୍ରିୟତାର ଏହା ଏକ ଉତ୍କୃଷ୍ଟ ନିଦର୍ଶନ । ହଠାତ୍ ଟେଙ୍ଗାବାଡ଼ି ଓ ଟେଳା ବୋଲୁଅର ଅବାଧ ପ୍ରୟୋଗରେ ସ୍ଥାନଟି ଗରମାଗରମ ହୋଇ ଉଠିଲା । ଗେବ୍ରିଏଲ୍ ଓ ମଙ୍ଗୁ ଏକ ନିରାପଦ ସ୍ଥାନକୁ ଯିବାକୁ ଚେଷ୍ଟା କରୁଛନ୍ତି, ଠିକ୍ ଏତିକି-

ବେଳେ ଗୋଟିଏ ସୈନିକର ବୋଲୁଅ ଗେବ୍ରିଏଲ୍‌ଙ୍କ ମୁଣ୍ଡରେ ଦାଲୁକର ପଡ଼ିଲା । ସେ ଅଧା ବେହୋସ ହୋଇ ତଳେ ପଡ଼ିଗଲେ । ପୋଲିସ୍ ଧାଇଁ ଆସିଲେ । ମୃଦୁ ଲାଠିଚାଳନା ଆରମ୍ଭ ହୋଇଗଲା । ଶ୍ରୋତା, ବକ୍ତା ଛିନ୍ନଛତର ହୋଇ ପଳେଇଲେ । ମଙ୍ଗୁ ବହୁ କଷ୍ଟରେ ଗେବ୍ରିଏଲ୍‌ଙ୍କୁ ପୋଲିସ୍ ସାହାଯ୍ୟରେ ରିକ୍‌ସାରେ ବସେଇ ଡାକ୍ତରଖାନାକୁ ନେଇ ଗଲେ । ଘା'ଟା ବଡ଼ ଥିବାରୁ ସେ ସେଠାରେ ରହିବାକୁ ବାଧ୍ୟ ହେଲେ । ଏକ ନୂଆଧରଣ ନିର୍ବାଚନସଭାର ପ୍ରତ୍ୟକ୍ଷ ଅଭିଜ୍ଞତା ତାଙ୍କୁ ଅଭିଭୂତ କରି ପକେଇଲା । ମଙ୍ଗୁଙ୍କୁ ସେ ଅନୁରୋଧକରି କହିଲେ—"ଦେଖ ବନ୍ଧୁ, ମୁଁ ନିର୍ବାଚନ ଇସ୍ତାହାର ସବୁ ଦେଖିବାଲାଗି ସଭାକୁ ଯାଇଥିଲି । ଦୁର୍ଭାଗ୍ୟ, ଦେଖିପାରିଲି ନାହିଁ । ଯଦି କୌଣସି ପ୍ରକାରରେ ଦୁଇଦଳର ଦୁଇ ଇସ୍ତାହାର ସଂଗ୍ରହ କରିଦିଅନ୍ତ ତେବେ ମୁଁ ବଡ଼ ଉପକୃତ ହୁଅନ୍ତି । ଏତକ ବିନା ମୋର ଉଦ୍ଦେଶ୍ୟ ଅପୂର୍ଣ୍ଣ ରହିଯିବ । ଅପୂର୍ଣ୍ଣ ଅଭିଜ୍ଞତା ନେଇ ମୋ ଦେଶକୁ ଫେରିଗଲେ ମୋ ଶ୍ରମିକଦଳକୁ କଅଣ କହିବି ।"

ମଙ୍ଗୁ ପ୍ରବୋଧ ଦେଇ କହିଲେ, "ଏଇକଥା ତ ? ଏଥିରେ ଏତେ ଚିନ୍ତାର ପ୍ରୟୋଜନ ନାହିଁ । ମୁଁ କାଲି ଦୁଇ ପାର୍ଟିର ସବୁ ନୋଟିସ୍, ଇସ୍ତାହାର, ପ୍ରାଚୀରପତ୍ର ଆଣି ତମକୁ ଯୋଗାଇ ଦେବ ।

ପରଦିନ ମଙ୍ଗୁ ଦୁଇ ତାଡ଼ା କାଗଜ ଗେବ୍ରିଏଲ୍‌ଙ୍କୁ ଧରାଇଦେଇ କହିଲେ—ଏ ଦୁଇ ତାଡ଼ା କାଗଜ ଦୁଇ ପାର୍ଟିର । ଏଥିରେ ଦୁଇ ଦଳର ନିର୍ବାଚନ ଇସ୍ତାହାର ଅଛି ।

ଗେବ୍ରିଏଲ୍ ଅତି ଆଗ୍ରହରେ ସତ୍ବର ଇସ୍ତାହାର ଦୁଇଟି କାଢ଼ି ପଢ଼ିଲେ । ଗୋଟିକରେ ଲେଖାଥିଲା—ଭାଇମାନେ, ଆମ୍ଭମାନଙ୍କ ଲୋକ-ପ୍ରିୟତାରେ ଆତଙ୍କିତ ହୋଇ ନେଙ୍ଗ ଦଳ ଅଜ ବାଟ ଅବାଟ ନମାନି ଆମ ସଙ୍ଗେ ଲଢ଼ିବାକୁ ଉଆତ ହୋଇ ଆସିଛନ୍ତି । ଏ ଶଳା ବଦମାସ ହାରମ ଦଳଙ୍କ ମୁଖା ଆମେ ଦଫାଓ୍ବାରି ଖୋଲି ଦେଉଛୁ । (୧) ଏ ଡାକୁ ଦଳ ଦେଶର ଧନ, ଗରିବଙ୍କର ଝାଳବୁହା ଧନକୁ ଦିନଗତ ଦ' ହାତଆ ଲୁଟି ଆସିଛନ୍ତି । ମୋଟା ଶଳା କାଲି ମଞ୍ଚରେ ନେଗ; ଗୁଲୁଗୁଲୁ ବକୁଥିଲା

ସେ ଶଳା ଆଜି କୋଟିପତି, ଦୁଇ ଦୁଇଟା ମିଲ୍‌ର ମାଲିକ । (୨) ଏଇ ଶଳେ ଆମର ସରଳମତି ଛାତ୍ରମାନଙ୍କୁ ନିଜର ଅୟୁଧ ରୂପେ ବ୍ୟବହାର କରି ସେମାନଙ୍କୁ ନଷ୍ଟ ଭ୍ରଷ୍ଟ କରିଦେଲେ । (୩) ଆମ ଦେଶରେ ଆଗରୁ କଳାପୋତେଇର ନାମସୁଦ୍ଧା କେହି ଶୁଣି ନଥିଲେ । ଏଇ ଶଳା ହାରାମଙ୍କ ଯୋଗୁଁ ଆମ ଦେଶରେ କଳାପୋତେଇ ଶହଟା ସର୍ବଜନବିଦିତ ହୋଇ-ଅଛି । ଗୋଟିଏ ଛୁଆ ବି ତାହା ବୁଝିପାରୁଛି । (୪) ଏହି ଶଳା ବେଇମାନଙ୍କ ଯୋଗୁଁ ସରକାରୀ କର୍ମଚାରୀମାନେ ଠିକସେ ଭଲ ଭୂଟ୍ ଆଦାୟ କରୁଛନ୍ତି । ସେହି ଦୋଗୋଲାଗୁଡ଼ାଙ୍କ ଯୋଗୁ ସରକାରୀ କଳ ଆଜି ଭୁଷୁଡ଼ି ପଡ଼ୁଛି । (୫) ଏହି ଘୋଡ଼ାମୁହାଁ ଠାଉଟର୍‌ମାନେ ଆମ ରାଜ୍ୟର ସମ୍ପଦକୁ ଶାଗ ମୂଲ୍ୟରେ ବିଦେଶୀମାନଙ୍କୁ ବିକି ଦେଇ ନିଜ ହାତ ଚିକଣେଇ ନେଇଛନ୍ତି । ଖଣିଠିକା ଦେଇ କୋଟି କୋଟି ଟଙ୍କା ଲୁଟିଛନ୍ତି । (୬) ଏହି ଛତର ବାରବୁଲା ଦଳ ସରକାରୀ ଚାକିରିରେ ଦକ୍ଷ ଲୋକମାନଙ୍କୁ ବାଦ୍‌ଦେଇ ନିଜ ନିଜର ପୁଅ, ପୁତୁରା ଓ ଭଣଜାମାନଙ୍କୁ ପୂରେଇଛନ୍ତି, ଫଳରେ ସରକାରୀ କଳର କାର୍ଯ୍ୟଦକ୍ଷତା ଭାଙ୍ଗିଗଲାଣି । ଏଣୁ ଭାଇମାନେ ସାବଧାନ, ଏ ଶଳା କାଙ୍ଗାଳିଆ ଛତର ଠାଉଟରଗୁଡ଼ାଙ୍କୁ ବିଲକୁଲ ଭୋଟ ଦିଅନ୍ତୁ ନାହିଁ । ଦେଲେ ପଛରେ ପସ୍ତେଇବାହିଁ ସାରହେବ ।

ଗେବ୍ରୁ ଏଲ୍ ପଢ଼ିଲେ ଭାବିଲେ ଏଇଟା ଇସ୍ତାହାର ନୁହେଁ କି ଆଉ ! ଉପରେ କିନ୍ତୁ ଲେଖା ହୋଇଛି ବେଙ୍ଗ ଦଳର ନିର୍ବାଚନ ଇସ୍ତାହାର । ୨୫ ବର୍ଷ ହେଲା ନିର୍ବାଚନ ଲଢ଼ିଲେ ବି ଏମାନେ ନିର୍ବାଚନ ଇସ୍ତାହାର କ'ଣ ଜାଣିଲେନି । ଗେବ୍ରୁ ଏଲ୍ ତା' ପରେ ଚେଙ୍ଗ ଦଳର ଇସ୍ତାହାର ଖୋଲି ପଢ଼ିଲେ । ସେଥିରେ ଲେଖାଥିଲା—ଭାଇମାନେ, ଆମକୁ ଯଦି ଭୋଟ୍ ଦେଇ କ୍ଷମତାକୁ ଆଣିବ ତେବେ ଆମେ ଗୋଟି ଗୋଟି କରି ବେଙ୍ଗଦଳଆଙ୍କ ଶଙ୍କି ଚିପିଦେବୁ । ଶଳାଙ୍କୁ ସିଧାସଳଖ ଜେଲ୍ ଭିତରେ ପୂରେଇଦେବୁ, ତାଙ୍କର ଯେଉଁ ପିଲପିଚିକାମାନେ ସରକାରୀ ଚାକିରି ଭିତରେ ପଶିଯାଇଛନ୍ତି ସେମାନଙ୍କୁ ଘିଡ଼ିଘାଡ଼ିଆ ଘୋଷାଡ଼ି ଆଣି ଡିସ୍‌ମିସ୍ କରିଦେବୁ । ଯେଉଁ କଂଟ୍ରାକ୍ଟରମାନଙ୍କଠାରୁ ପଇସା ଖାଇ ସେମାନେ ହେଣ୍ଡି ମାରୁଛନ୍ତି ସେମାନଙ୍କର କଂଟ୍ରାକ୍ଟ ରଦ୍ଦ କରିଦେବୁ । ସେମାନେ ନିଜ ନିଜ ଗାଆଁରେ ଯେଉଁସବୁ ସ୍କୁଲ କଲେଜ ବସେଇ ଠାଉଟରେ ତିଆରି

କରୁଛନ୍ତି ସେ ସ୍କୁଲ କଲେଜଗୁଡ଼ାକୁ ଛାଡ଼ଦେବୁ । ମୋତେ ଉପରେ ବେଙ୍ଗ ଦଳଆଙ୍କୁ ନିଷ୍କ୍ରିୟ କରଦେବୁ । ଆମକୁ ଭୋଟ୍ ଦେଇ ଥରେ ଦେଖନ୍ତୁ ।

ହତାଶ ହୋଇ ଗେବ୍ରିଏଲ୍ ଅନ୍ୟ କାଗଜଗୁଡ଼ିକ ଓଲଟେଇଲେ । ପ୍ରତ୍ୟେକଟିରେ ପ୍ରତିଦ୍ୱନ୍ଦ୍ୱୀର ବ୍ୟକ୍ତିଗତ କୁତ୍ସା । କିଏ ଗ୍ରେଫକଲା, କିଏ ନାଶ କଲା, କିଏ କେଉଁ ଯୁବତୀର ସତୀତ୍ୱ ହରଣ କଲା, କାହାର ଗୁଣ୍ଡା ଭରଣା, କିଏ ଗଣିକା ଲଗେଇ ବଡ଼ ବଡ଼ କର୍ମଚାରୀଙ୍କୁ କାବୁ କରୁଛି ତା'ର ଫର୍ଦ୍ଦ ସହ ବର୍ଣ୍ଣନା । ଗେବ୍ରିଏଲ୍ ବାଲିଡରେ ନିଜଦଳକୁ ଏସବୁ ଖରାପ ନିର୍ବାଚନ ଇସ୍ତାହାରଗୁଡ଼ିକ ଦେଖାଇବା ଲାଗି ସେଗୁଡ଼ିକ ଯତ୍ନର ସହିତ ସୁଟ୍‌କେଶରେ ରଖିଲେ । ମନେ ମନେ ଭାବି ଲାଗିଲେ—ଏଗୁଡ଼ାକ ନିର୍ବାଚନ ଇସ୍ତାହାର ନା କାଦୁଅ ଫିଙ୍ଗା ଦରବାର ।



# ॥ ଉଠକେଇଛି ॥

ପଧାନ ଘରର ପୂରିଉଠୁଥିବା ଶିଷ୍ଟ ଦେଖି ଆଖପାଖର ଲୋକମାନେ ଅଥୟ ହୋଇପଡ଼ିଲେ । ସମସ୍ତଙ୍କ ମୁହଁରେ ଖାଲି ହାଇ ହାଇ । କାହାର ଛୁଣ୍ଡ କରନ୍ତି ନ ହେଉଛି, ଏମିତି ଜଣେ ପାଇବନି । ଖାଲି ପାଞ୍ଚଜଣ ଏକାଠି ହେଲେ ଉଠିଲା ତା'ର କଥା । ଧନେ କହୁ କହୁ ଶଙ୍କର କହିଲା, "ଲକ୍ଷ୍ମୀ ପଶିଲାବେଳେ ଏମିତି ପେଲି ପଶନ୍ତି । କୋଉ ଶିଷ୍ଟ ଦେଇ ନଡ଼ଆରେ ପାଣି ପଶୁଛି କିଏ ଜାଣେ ? ସେମିତି ପଧାନ ଘରେ କୋଉବାଟେ ଲକ୍ଷ୍ମୀ ପଶୁଛନ୍ତି କିଏ କହିବ ?" ଏହା ଶୁଣି ବନା କହିଲା, ମୁଁ କହିବି, ଗୋଟିଏ ବାଟ ନୁହେଁ, ଯେତେ ବାଟ ଅଛି ସବୁ କହିବି । କାଲ୍ଗଟି, କେନ୍ଦୁପତ୍ର ଠିକାଦାରି, କଳା ବେପାର, ମହାଜନି ଆଦି ଏତେ ବାଟ । ସବୁ ବାଟରେ ଲକ୍ଷ୍ମୀ ଧଇଁସଇଁ ହୋଇ ପଶୁଛନ୍ତି । ବେଲୁନ ପରି ତା'ଘରଟା ଫୁଲିବାରେ ଲାଗିଛି ।" ଜଣେ କହିଲା "ବେଶି ଫୁଲିଲେ ଠୋଃ ହୋଇ-ଯିବ ।" ବନା କହିଲା,"ଗମ୍ବୋଲ — ଫାଟିବାର କିଛି ଲକ୍ଷଣ ଦିଶୁନାହିଁ । ଆମ ପିଲାଏ ଅବା ତା ଠୋଃକୁ ଦେଖିବେ । ଏକ୍ଷଣି ତାର ଫୁଲିବାର ସମୟ ।"ଆଉ ଜଣେ କହିଲା,"ସେ ବ୍ରହ୍ମଶୋଷା ପଧାନ ଗଇଣ୍ଠା ପାଉଁଶ ପରି ଖରଆଉର ସମସ୍ତଙ୍କୁ ଶୋଷି ପିଠା କରିଦେଲାଣି ।" ଶଙ୍କର କହିଲା, "ସେ କଅଣ ଖାଲି ଗଇଁଠା ପାଉଁଶ, ସେ ଗୋଟାଏ ଲକ୍ଷ୍ମୀ ଯନ୍ତା । ଲକ୍ଷ୍ମୀ ତା' ଘରକୁ ପଶିଯାଆନ୍ତି କିନ୍ତୁ ବାହାରି ପାରନ୍ତି ନାହିଁ । ଆଚ୍ଛା, କାହାକୁ ହାତ ଟେକି ପଇସାଟାଏ ଦେବାର କିଏ ଦେଖିଛ ?" ସମସ୍ତେ ଏକାବେଳକେ କହି ଉଠିଲେ,"ଆରେ ଯା ଯା କାଣିକଉଡ଼ିଟାଏ ତ ବାହାରିବ ନାହିଁ । ପଇସା ତ ଦୂରର କଥା । ଆଉ ବି ତା ପଇସା ହଉଛି ଗୋହିରି ଲେଣ୍ଡା; ଅକସ୍ମାତ ଯେଉଁଠି ପଡ଼ିବ, ସେଠୁ ମାଟି ନେଇ ଉଠିବ ।"

କେତେଜଣ ଅତି ଅପଦାର୍ଥ ଟୋକା କହିଲେ, "ଶଳାର ଘରେ ଡାକେଇତ ପୂରେଇ ଦେବା।" ଡାକେଇତଙ୍କୁ ଖୋଜି ପାଇବା ବଡ଼ କଷ୍ଟକର ବୋଲି ମତ ପ୍ରକାଶ ପାଇବାରୁ ଜଣେ ମୁରୁବିହସା ଦେଇ କହିଲା—"ଡାକେଇତଙ୍କୁ ପାଇବା ସିନା ପୁଲିସ ପକ୍ଷରେ କଷ୍ଟ। ଟିକିଏ ଇସାରା ଦେଲୁମାନେ ଦଶ, ପଚାଶ ଯେତେ ଚାହିଁବ ସେତେ ଆମି ହାଜର ହେବେ।" ସମସ୍ତେ ଠିକ୍ କଲେ ପଧାନ ଘରେ ଡାକେଇତ ପୂରାଇବେ। ଖୋଜିବସିଲେ ସବୁ କଥାକୁ ଯୁକ୍ତି ମିଳିଯାଏ। ଏମାନଙ୍କର ଯୁକ୍ତି ହେଲା, ଯେହେତୁ ପଧାନ ସମସ୍ତଙ୍କୁ ଶୋଷି ନଜର ତୋଳି ବଢ଼େଇଛି ସମସ୍ତେ ତା' ଘରେ ଡାକେଇତ ପୂରେଇ ତାକୁ ଶୋଷିବେ। ଯେସାକୁ ତେସା ନ ହେଲେ ଏ ଦୁନିଆରୁ ନପାରିଲା ଲୋକେ ପୋଛି ହୋଇଯିବେ। କଥାଟା ପକ୍କା ହୋଇଗଲା। ଡାକେଇତଙ୍କୁ ନମିତା କରିବାର ଭାର ଜଣକୁ ଦିଆଗଲା।

ବନା ଯେତେବେଳେ ଜାଣିଲା ଘରକୁ ସତ ଡାକେଇତି ବ୍ୟବସ୍ଥା ହେଉଛି ସେ କାନରେ ହାତ ଦେଲା। ସମସ୍ତଙ୍କୁ ଡାକି କହିଲା, "ଆରେ ଏ କି କଥା, ସମସ୍ତଙ୍କ ମୁଣ୍ଡ ବିଗିଡ଼ି ଗଲାଣି ନା କଅଣ ମ? ଏମିତିଆ ମୂର୍ଖାମି ତ ମୁଁ କେଉଁଠି ଦେଖିନ। କଅଣ ତୁମ ମୁଣ୍ଡରେ ପଶିଛି ମୁଁ ବୁଝି ପାରୁନ।" ଜଣେ କହିଲା, "ଫେର୍ ବୁଝେଇବାକୁ ପଡ଼ିବ? ସବୁ ବାଟରେ ଆମକୁ ଶୋଷି ସେ ଗଣ୍ଡି ବଢ଼େଇଛି। ଆମେ ତାକୁ ଯଦି କୌଣସି ବାଟରେ ଶୋଷି ପାରିଲୁ ତେବେ କି ମୁସ୍କିଲ ହୋଇଗଲା—"

"ସେ ଯେମିତି ଗୁଳାଖିରେ ଶୋଷୁଛି ତମେ ସେମିତି ଗୁଳଖି କରି ଶୋଷୁନ—"

"ଶଳାଠୁ ତ ପଇସାଟାଏ ବି ନେଇ ହେଲୁନାହିଁ। ସବୁ ଉପାୟରେ ବିଫଳ ହେବାରୁ ସିନା ଏ ବାଟ ଧରିଲୁ।"

"ଖବରଦାର୍ ଏ ବାଟ ଠିକ୍ ନୁହେଁ। ଠିକ୍ ବାଟ ମୋତେ ଜଣା। ତମର ଖାଲି ଶୋଷିବା ଯଦି ଲୋଡ଼ା ତେବେ ମୋ ବାଟରେ ଚାଲ। ଟିକିଏ ଖାଲି ସମୟ ଦରକାର। ଦେଖିବ ସେ ଗୁଏଁ ଗୁଏଁ ଆସି ତୁମମାନଙ୍କୁ ତା' ଦେହରେ ଥଣ୍ଟ ଲଗାଇ ଶୋଷିବା ଲାଗି କାକୁତି ମିନତି ହେବ। ଏଇଟା ସୁବିଧା ହେବ ନା ଡକାଏତି ସୁବିଧା ହେବ? ସେଥିରେ ପୁଲିସ୍

ବନ୍ଧୁକ, ଘୋଷରା, ମକଦ୍ଦମା, ତା' ଉପରକୁ ଓଲଟି ଓକିଲ ଶୋଷା । ଶୋଷିବାକୁ ଯାଇ ଓଲଟି ଶୋଷିତ ହେବ ।

ସମସ୍ତେ ଗୁଣୁଗୁଣେଇ ଉଠିଲେ—ଏଗୁଡ଼ାକ ଖାଲି ମନଗଢ଼ା କଥା । ବରଜୁ ପଧାନ ଏଡ଼େ ଓଲୁ ନୁହେଁ ।

ଜାଣିଥାଅ ବନା ବି ଓଲୁ ନୁହେଁ । ପଧାନକୁ ସତର ଘଣାରେ ପାଣି ପିଆଇଦବାଲା ମୁଁ । ମୋତେ ଦୁଇଟି ମାସ ସମୟ ଦିଅ । ଯଦି କିଛି ଫଳ ନ ହୁଏ ତେବେ ତୁମ ଦେଖିଲା କାମ ତୁମେ କରିବ । ଆଉ ଦେଖ, ମୋ କଥା ଅନୁସାରେ ସମସ୍ତେ ଚଳିବ । ମୋତେ ସର୍ଦ୍ଦାର ବୋଲି ଡାକିବ । ବେଶି ନାହିଁ ମୋଟେ ଦୁଇଟା ମାସ; ସାଉକୁ ପଚାରିଲେ ପଚାରିବ, ନ ପଚାରିଲେ ନାହିଁ ।

ଏମିତିଆ କଥାରେ କିଏ ବା ରାଜି ନହେବ । ପୁଲିସ, ବନ୍ଧୁକ, ଓକିଲ କଥା ଶୁଣି କେତେଜଣ ଘାବରେଇ ଯାଇଥିଲେ । ସେମାନେ ବି ଟିକଏ ନିଃଶ୍ୱାସ ମାରିଲେ । ସର୍ବସମ୍ମତିକ୍ରମେ ପ୍ରସ୍ତାବଟି ଗୃହୀତ ହୋଇଗଲା । ବନମାଳୀ ବରଜୁ ପଧାନଙ୍କର କାନକୁହା ସାଜିଲେ ।

ମନ୍ତ୍ରୀ ହେବାରେ ଯେ ଏତେ ଲାଭ ତାହା ପଧାନେ ଭାବିପାରି ନ ଥିଲେ; ବନା ତାଙ୍କ ଆଖି ଝଲସେଇ ଦେଲା । ତା'ଦ୍ୱାରା ପ୍ରସ୍ତୁତ ଆୟବ୍ୟୟ ତାଲିକା ଦେଖି ପଧାନେ ଏକାବେଳକେ ଖୁସି । ପ୍ରଥମେ ମାତ୍ର ଚାରିଅଣା ଖର୍ଚ୍ଚ । ଗୋଟିଏ କଂଗ୍ରେସ ମେମ୍ବର ହେବାକୁ ପଡ଼ିବ । ଜିଲ୍ଲା ଓ ପ୍ରାଦେଶିକ ମେମ୍ବରଙ୍କ ମୁହଁ ଚିକଣେଇବାରେ ହଜାରେ ଦୁଇ ହଜାର ଯିବ । ଟିକଟ ପାଇବାକୁ ଗୁଞ୍ଜାଗୁଞ୍ଜିରେ ଦି' ହଜାର, ଭୋଟ ଲଢ଼େଇରେ ଅନ୍ତ କମ୍‌ରେ ଦଶହଜାର, ସବୁମୋଟ ଚଉଦ ବା ପନ୍ଦର ହଜାର ଖର୍ଚ୍ଚ । ମନ୍ତ୍ରୀ ହେବା ପରେ ଗୋଟାଏ ଗୋଟାଏ ଥୋପରେ ୩୦।୪୦ ହଜାରରୁ କମ୍ ମିଳିବ ନାହିଁ । ତା' ଉପରେ ପୁଣି ଦରମା ୫ ବର୍ଷକୁ ସବୁମୋଟି ଦେଢ଼-ଲକ୍ଷ । ତା ଉପରକୁ ପୁଣି ଟ୍ରେଭଲଖର୍ଚ୍ଚା ଅଛି । ପଧାନଙ୍କ ଆଖି ଟାଙ୍ଗି ହୋଇଗଲା । ସେ ବନାକୁ ଜକଟି ମକଟି ଧରିଲା । ତଳିଆ ଅଣ୍ଡ ଦାନ୍ତ ଜଲମି ଉଠିଲା । ଅତି ବିଶ୍ୱାସରେ ବନାକୁ ପଚାରିଲେ—"ଅଚ୍ଛା ମୁଁ ତ ପାଠଶାଠ ସେମିତି କିଛି ପଢ଼ିନି ।" ବନା ଖେଁ ଖେଁ ହୋଇ ବଡ଼େ ହସିସାରିବା ପରେ

କହିଲା, "ସେଥିପାଇଁ ତ ପାଠ ଶାଲ୍‌କୁଲ୍ ଦରକାର ନାହିଁ । ସବୁ କାମ ସେକ୍ରେଟେରୀ, କର୍ମଚାରୀମାନେ କରିଦେବେ । ତୁମେ ଖାଲି ମଞ୍ଜୁର କରି ଲେଖି ଦସ୍ତଖତ୍ ମାରିପାରିବନି ?"

"ହଁ ହଁ, ତା' ପାରିବ । ଇଂରେଜୀରେ ବି ଦସ୍ତଖତ୍ କରିଦେଇ ପାରିବ ।"

"ଏଁ ତମେ ଯା' ଭିତରେ ଇଂରେଜୀରେ ଦସ୍ତଖତ୍ କରି ଶିଖିଗଲଣି ?"

"ହଁ ହଁ, ଚେକ୍‌ଫେକ୍‌ରେ ବହୁତ ଦସ୍ତଖତ୍ ଦେବାକୁ ପଡ଼ିଲା । ବହୁତ ପରିଶ୍ରମ କରି ସେଇଟା ଶିଖିନେଲି । ସେତିକି ନୁହେଁ, ସ୍କୁରଣିଆ ଓଆର୍ଡ୍-ବୁକ୍‌ଟା ଘୋଷି ମୁଖସ୍ଥ କରିଦେଇଛି ।"

"ତେବେ ତ କିସ୍ତିମାତ୍ । ଆଉ ଚିନ୍ତା ନାହିଁ ! ସେଠି ଖାଲି ଟଙ୍କା କାରବାର । ହିସାବ କିତାବରେ ତୁମକୁ କେହି ବଳିପିବେ ନାହିଁ ।"

"ସେଥିରେ ପୁଣି ମୋତେ କିଏ ପାରିବ ? କେତେ ଇନ୍‌କମ୍ ଟିକସ ଅଫିସର, କେତେ ସେଲ୍‌ଟିକସ ଅଫିସରଙ୍କୁ ଭୂଆଁ ବୁଲେଇ ଦେଇଛି । ପୁଅମାନେ ସମସ୍ତେ କାନମୁଣ୍ଡା ଆଉଁସି ଫେରିଯାଇଛନ୍ତି ।"

"ବାସ୍ ବାସ୍, ଆଉ କିଛି ଚିନ୍ତା ନାହିଁ । ଆଜି ଦେଖ ମୁଁ କାମରେ ଲାଗିଲି । ତୁମେ ତ ଜାଣ ବେପାରରେ କେମିତି ଟଙ୍କା ଲଗେଇବାକୁ ହୁଏ । ବଖତ ବେଳକୁ ଗାଞ୍ଜିଆ ଚିପିଲେ ଚଳିବ ନାହିଁ । ଚାଲିଲି ମୁଁ କଂଗ୍ରେସ ଅଫିସ ।" ତାଡ଼ାଏ ବାଣ୍ଡୁଆ ନୋଟ୍ ତା' ହାତରେ ଗୁଞ୍ଜିଦେଇ ପ୍ରଧାନ ତାକୁ ବିଦାୟ ଦେଲା ।

× × ×

ବନାକୁ ସଦଳବଳ ଅଫିସରେ ଦେଖିବାମାତ୍ରେ ସମ୍ପାଦକ ତଥା ସଭାପତି ଏକାବେଳେକେ ଆନନ୍ଦରେ ଅଥୟ । ପ୍ରଶ୍ନ ଉପରେ ପ୍ରଶ୍ନ— ଆଜ୍ଞା କେମିତି ଅଛନ୍ତି, ପିଲାପିଲି ଭଲ ତ । ଆମମାନଙ୍କୁ ଭୁଲିଗଲେ କି,

ଆପଣଙ୍କ ଥାନାର ହାଲଚାଲ କ'ଣ—ଅନୁରୋଧ ଉପରେ ଅନୁରୋଧ—ଏଠି କିଛିଦିନ ରହନ୍ତୁ । କିଛି ଜଳଯୋଗ ନକରାଇ ଛାଡ଼ିବୁ ନାହିଁ । ଏଇଟା ଆପଣଙ୍କ ଘର, ଏଇଠି ରହନ୍ତୁ, କାହିଁକି ଆଉ କାହା ଘରକୁ ଯିବେ, ଖିଆପିଆ ବନ୍ଦୋବସ୍ତଟା ଏଇଠି ହେଉ ଇତ୍ୟାଦି । ଛଡ଼ାଦାରସହ ପଣ୍ଡା'ଏ ପାର୍ଟୀଙ୍କୁ ପାକଳେଇବାଠାରୁ ଏମାନଙ୍କର ପାକଳାପାକଳି ଢେର୍ ଢେର୍ ବଳିଗଲା । ବନା ଓ ତା' ସଙ୍ଗୀମାନେ ମନେମନେ ଭାବୁଥାନ୍ତି ଆ-ହା-ହା-ହା କେତେ ଦରଦ, ଅଲାଜୁକଙ୍କ ଦରଦ ମୁଣ୍ଡି ଫାଟି-ଯାଉଛି । ବର୍ଷେ ଦି' ବର୍ଷ ତଳେ ଘ୍ୟାଙ୍କଟି ତେଲ ଲଗେଇ ଲଗେଇ ହାତ ବାଙ୍କିଲା ପରେ ଛି ଦୃଷ୍ଟି ଟିକିଏ ପଡ଼ୁ ନଥିଲା । ବେଶ୍ୱଆ, ଥୋବରା ଭାବଛନ୍ତି ନିର୍ବାଚନ ଦୁଇମାସ ବୋଲି ଆମେ ଜାଣିନୁ । ସୀମା ଆନ୍ଦୋଳନ ବେଳର ପୁଲିସ୍ ଠେଙ୍ଗୁଣି ଆମେ ଭୁଲିଯାଇଛୁ । ବସ୍ତୁ, ତୁମେ ଡାକେ ଡାକେ ଗଲେ ଆମେ ପଛେ ପଛେ ଯିବୁ । ପାଞ୍ଚବର୍ଷ ଅତ୍ୟାଚାରର ବଦଳା ଏଇ ଦୁଇ ମାସରେ ନେବୁ । ମନକଥା ମନରେ କିନ୍ତୁ ବାହାର କଥାଟା ଠିକ୍ ଓଲଟା ।

× × ×

ବହୁ ବୁଝାବୁଝି ପରେ ଭୁଷା ସଭାପତି ଟିକିଏ କୁଛୁକୁଛୁ ହେବାରୁ ବନା ତାଙ୍କୁ କଡ଼ ଘରକୁ ଡାକିନେଇ ସାଫ୍ ସାଫ୍ କହିଦେଲା—ଦେଖ ପ୍ରଧାନଙ୍କୁ ଟିକଟ ନ ଦେଲେ ସେ ସ୍ୱାଧୀନ ଭାବରେ ଠିଆ ହେବ । ଟଙ୍କା ଦେଇ ଭୋଟ୍ କିଣିବା ପାଇଁ ତା'ର ଅକଳନ୍ତି ଟଙ୍କା ଅଛି । ତୁମେ ଖୁବ୍ ଦେଲେ ଦୁଇ' ହଜାର ଦେବ । ତୁମେ କିଛି ନଦେଲେ ବି ସେ ଦୁଇ'ର ଦଶ ଗୁଣ ଖର୍ଚ୍ଚ କରିପାରିବ । ତୁମେ ଟିକଟ ଦିଅ । ସେ ଦୁଇ' ହଜାର ଛାଡ଼ିଦେବ । ମୋଟେ ହଜାରେ ଦେଇ ତୁମେ ପାଞ୍ଚ ହଜାର ବାଣ୍ଟିନେବ । ଏତକ ନ କଲେ ଆମେ ସମସ୍ତେ ପ୍ରଧାନ ପାଇଁ କାମ କରିବୁ । ସଭାପତି ଏକାବେଳକେ ପାଣି ହୋଇଗଲେ । ଗଡ଼ ଜୟକରି ବନା ସଦଳବଳ ଫେରିଲା ।

ଭୋଟ୍ ଲଢ଼େଇ ସହୁଁ ସହୁଁ ଗରମ ହେଉଥାଏ, ପ୍ରଧାନ ଚହୁଁ ଚହୁଁ ବନାକୁ ଦେଖି ଢକଟି ମକଟି ଧରୁଥାଏ । ଏଇ ବନା ଲାଗି ସିନା

ତା'ର ଉନ୍ନତି । ଆଜି ମୁଚିପିଅନ୍ଠା କର୍ମୀଠାରୁ ଆରମ୍ଭ କରି ପ୍ରଧାନମନ୍ତ୍ରୀ ପର୍ଯ୍ୟନ୍ତ ତା' ଘରେ ଅତିଥି । ନିତି ତା' ଘରେ ବାହାଘର ମଉଚ୍ଛବ ।

ବନା ଏକାବେଳେକେ ଦୁଇ ଫାଳ । ଗୋଟିଏ ଫାଳ ପ୍ରଧାନଙ୍କୁ କହିଲା ଲାଗେ—ଖୋଲ ମୁଣି ଖୋଲ । ମନେରଖ ଖାଲି ଦରମା ଦେଢ଼-ଲକ୍ଷ, ପୁରା ବହୁଗୁଣ ଉପୁର । ଆଉ ଆର ଫାଳଟା ଫୁସ୍‌ଫୁସ୍ କରି ଲୋକଙ୍କ କାନରେ କହେ—ମେଘ ବରଷୁଛି ପିଇଯାଅ ପାଣି । ମେଘ ତୁମରି ପରି ହ୍ରଦ, ପୋଖରୀ, ଗଡ଼ିଆ, ଟୁବରୁ ପାଣି ଶୋଷି ଶୋଷି ନେଇଥିଲା; ମୁଁ ତାକୁ କାଲୁଆ କରିଛି । ସେ ଏବେ ବରଷୁଛି । ପାଣି ଯେଉଁଠୁ ଯାଇଥିଲା, ଠିକ୍ ସେଇଠାକୁ ଫେରି ଆସିବ । ଖୁସିଆର ହୋଇ ପିଇଯାଅ । କିନ୍ତୁ ଖବରଦାର, ପଇସା ଖାଇ ଭଞ୍ଜତ ବକନା, ବୁଝି ସମଝି ଭୋଟ ଦିଅ । ପଇସା ଲୋଭରେ ଯେମିତି ମା ଭଉଣୀଙ୍କୁ ନ ବିକ ।

ଏ ବେପାରରେ ୪୦ ହଜାର ଟଙ୍କା ଖଟେଇ ସାରିବା ପରେ ପ୍ରଧାନ ବନାମୁହଁଙ୍କୁ ଗୁହାଁରିଲା । ବନା ଆଶ୍ୱାସନା ଦେଇ କହିଲା ଭୟ ନାହିଁ ଭୋଟର ସଂଖ୍ୟା ଯେତେ ଆମର କର୍ମୀ ତା'ର ପାଖାପାଖି । ବେପାରରେ ଟଙ୍କା ଲଗାଣ ମୁଁ କଅଣ ତୁମକୁ ଶିଖେଇବି । ଲାଭକୁ ମନରେ ରଖି ଟଙ୍କା ଲଗାଅ । ଏତେବେଳେ ଟିକିଏ ପଛେଇଲେ ଏ ଚାଳିଶି ହଜାର ପାଣିରେ ପଡ଼ିବ । ଖବରଦାର ! ପ୍ରଧାନ ଉଠିଯାଇ ଟ୍ରେଜେରି ମେଲି କରିଦେଲା । ପାରିବାଡ଼ି ଖୋଲିଦେଲେ ଯେପରି ପାରିଗୁଡ଼ିକ ଫଡ଼୍‌ଫାଡ଼୍ ହୋଇ ପଦାକୁ ଉଡ଼ି ଆସନ୍ତି, ଟ୍ରେଜେରି ଖୋଲା ହୋଇଯିବାରୁ ଅବରୁଦ୍ଧ ନୋଟ୍‌ଗୁଡ଼ିକ ଫଡ଼୍‌ଫାଡ଼୍ ପଦାକୁ ଉଡ଼ି ଆସିଲେ । ବନାଦଳିଆ ଟୋକାମାନେ କୁରୁଳି ଉଠିଲେ ।

କାଳେ କେହି ବିରୁଦ୍ଧଦଳିଆ ପ୍ରଧାନ କାନରେ ଫୋଡ଼ିଦେବ ଯେ ସେ ତାକୁ ଭଣ୍ଡେଇ ପଇସା ଲୁଟିବାରେ ଲାଗିଛି, ସେଥିଲାଗି ବନା ଆଗରୁ ସତର୍କ ହୋଇ ପ୍ରଧାନଙ୍କୁ ଜଣେଇଦେଲା, "ଦେଖ ବିରୁଦ୍ଧବାଲା ଏକାବେଳେକେ ଆଣ୍ଠେଇ ପଡ଼ିଲେଣି । ତାଙ୍କର ଭୟ ହେଲାଣି ଯେ

ଓ୍ୱାପ୍‌କଟ୍ ଟଙ୍କା ବି ଉଡ଼ିଯିବ । ସିଧା ବାଟରେ ନ ପାରି ସେମାନେ ବଙ୍କା ବାଟ ଧରିବେ ବୋଲି ମୁଁ ଶୁଣିପାରୁଛି । ମୁଁ ତୁମ ଟଙ୍କାଗୁଡ଼ାକ ଅପବ୍ୟୟ କରିଦେଉଛି ବୋଲି କହି ତୁମକୁ ଖେପେଇଦେବାକୁ ବସିଲେଣି । କିଏ କେଉଁ ଉଦ୍ଦେଶ୍ୟ ରଖି କଥା କହୁଛି ସେଥିପ୍ରତି ଟିକିଏ ହୁସିଆର ରହିବ ।

ଏତିକିବେଳକୁ ଆଉ ଜଣେ ନପର୍ ଚପର୍ ହୋଇ ଧାଇଁ ଆସି କହି ପକେଇଲା—"କାଲି ଆରି ପାଖର ମୁଣ୍ଡି ଆମାନେ ମନ୍ତ୍ରଣା କରୁଥିଲେ, କେମିତି ବନାକୁ ପଧାନଠାରୁ ଛଡ଼େଇ ନେବେ । ଜଣେ କହିଲା ବନା ବିରୁଦ୍ଧରେ ଗୁଡ଼ାଏ ଲଗେଇଜୁଟେଇ କହିଲେ ତା'ର ନିଷ୍ଠାପ୍ରତି ଅବିଶ୍ୱାସ ଜାତ ହେବ । ଆଉ ବନା ଯେପରି ଖାଣ୍ଟି ଲୋକ, ସେ ପଧାନର ଟିକିଏ ଅବିଶ୍ୱାସ ଦେଖିଲେ ସଙ୍ଗେ ସଙ୍ଗେ ଅଲଗା ହୋଇ-ଯିବ । ବନା ଅଲଗା ହେଲେ କାମଫତେ ।"

ଶୁଣିଲାମାତ୍ରେ ପଧାନ ବ୍‌୍‌ନାକୁ ଜାବୁଡ଼ିଧରି, ମୁରୁକିହସା ଦେଇ କହିଲା—"ଓହୋ ! ମୋତେ କେଡ଼େ ଓଲୁ ବୋଲି ବିଚାରିଛନ୍ତି । ବନୁକୁ ପୁଣି ମୋଠାରୁ ଛଡ଼େଇ ନେବେ । ଦେଖି କାହାର ଦଉଡ଼ କେତେ ।"

ଭୋଟ୍ ହିଆହେବା ଦିନ, ପଧାନ ଗୁମୁଡ଼ିଆ ତଳେ ସବୁ ଭୋଟରଙ୍କ ହାଜର । ବିରୁଦ୍ଧଦଳଆଙ୍କ ଥାନରେ କୁଆ ଉଡ଼ୁଥାଏ । ସବୁ ଭୋଟନେଆ ଜାଗାରେ ଏକା କଥା । ବନା ସବୁ ଥାନରେ ଶେଷ ଖିଆପିଆର ଧୂମ୍ ଲଗେଇ ଦେଇଥାଏ । ବେଳେବେଳେ ଜଣ ଜଣକୁ ଆଖିଠାରି ମାରି ଫୁସ୍‌ଫୁସ୍ କରି କହି ଦେଉଥାଏ ଭଲକରି ଖାଅ, ଖୁଆଅ, ଏଇ ଶେଷଖିଆ ।

× × ×

ନିର୍ବାଚନ ଫଳ ବାହାରିଲା । ପଧାନ ଘର ଶୂନ୍‌ଶାନ ପଡ଼ିଗଲା । ପଧାନ ଖଟରି କତରି ଧରିଲା । କିନ୍ତୁ ଆଉ ଏକ ଗାଁରେ ଥିବା ଏକ ଘରେ ବନାକୁ ସମ୍ବର୍ଦ୍ଧନା କରିବାକୁ ଦଳେ ଟୋକା ଜମିଥାଆନ୍ତି । ବନା ସେମାନଙ୍କୁ କହିଲା—ତୁମେ ଯେଉଁ ଉପକେଇଣ୍ଡ କରିବ ବୋଲି ବସିଥିଲ

ସେଇଟା ଭଲ ନା ଏଇଟା ଭଲ । ପଧାନ ଡାକ୍ତରଙ୍କ ଭୁମ ସମସ୍ତଙ୍କୁ ନେଲ, ଓଟକେଇଣ୍ଡ କରିବାକୁ ଚ୍ରେଟକର ଖୋଲିଦେଲ । ଓଟକେଇଣ୍ଡ ସରିବା ପରେ ଅବଶ୍ୟ ରାଜାଘର ଖାନା ଦେଇ ବିଦା କଲ । ଏଥିରେ ପୁଲିସର ବଡ଼ବୋପା ବି କିଛି କରିପାରିବ ନାହିଁ । ସବୁଠାରୁ ବଡ ଭପ୍ସୁ ଥିଲ ଇଜ୍ଜତ୍ । ତାହା ବି ଆମ ଗାଁଆ ଲୋକେ ବଜାଏ ରଖିଛନ୍ତି । ପଇସା ଲୋଭରେ ନିଜନିଜର ମାଇପ ବିକନାହାନ୍ତି ।

ଆନନ୍ଦର କୋଳାହଳ ଭିତରେ ବିନାର କଥାଗୁଡ଼ାକ ଲୁଚିଗଲ ।



## ॥ ବରାଡ଼ିଛଙ୍କ ଭୋଟ ॥

ନେଉଳ ଦାସ ନିଜ ମୁଣ୍ଡର ଦହକୁ ଦୁଇମାସ କାଳ ମନ୍ଥିବା ପରେ ଲହୁଣି ପାଇଲେ । ନିର୍ବାଚନ ପାଇଁ ସେ ଅଲବତ୍ ପ୍ରାର୍ଥୀପତ୍ର ଦାଖଲ କରିବେ । ନିରୁତା ଟାଉଟରଗୁଡ଼ାକ, ଯେନେହେଲେ ଲୋକଙ୍କ ଫାଇଦା ନମାଡ଼ି ନିର୍ବାଚନରେ ଠିଆ ହୋଇ ଯାଉଛନ୍ତି, ଜିତି ବି ଯାଉଛନ୍ତି । କେବଳ ସେତିକ ନୁହେଁ ମନ୍ତ୍ରୀ ବି ବନିଯାଇ ତେତାଲ୍, ଚଉତାଲ୍ କୋଠା ବାଡ଼େଇ ଦେଉଛନ୍ତି । ସେ ତ ଲୋକଙ୍କ ସୁଖ ଦୁଃଖରେ ସବୁବେଳେ ଭାଗୀ ହୋଇ ଆସିଛନ୍ତି, ସେମାନଙ୍କ ପାଖରେ ସବୁବେଳେ ରହି ଆସିଛନ୍ତି । ସେ କାହିଁକି ଠିଆ ନ ହେବେ । ଦୁଡ଼ୁଗୁଡ଼ିଆ ମନଟାକୁ ଦୃଢ଼ କରିବାକୁ ସେ ବନ୍ଧୁମାନଙ୍କ ସାଙ୍ଗରେ ପରାମର୍ଶ କଲେ ।

ଜଣେ ସାଙ୍ଗ ଆବାକାବା ହୋଇଯାଇ କହିଲେ—"ହଇରେ ତୋ ମୁଣ୍ଡରେ ବି ନିର୍ବାଚନ ଭୂତ ପଶିଗଲାଣି । ଆରେ ନିଜକୁ ଆଗ ସମ୍ଭାଳ, ତାପରେ ନିର୍ବାଚନରେ ପଶିବୁ । ଆରେ ଅମାନତ ଟଙ୍କା କେଉଁଠୁ ପାଇବୁ ?"

"ଆରେ କେଉଁଠୁ ପାଇବୁ ପଚାରୁଛୁ କଅଣ ? ତୋଠୁଁ ତା'ଠୁଁ ଟଙ୍କେ ଦି'ଟଙ୍କା କରି ସଂଗ୍ରହ କରିନେବି । ପୁଞ୍ଜିପତିଙ୍କ ପାଖେ ତ ମୁଁ ମାଡ଼ିବିନି । ତୋଭଳି ସାଙ୍ଗମାନଙ୍କଠାରୁ ଆଦାୟ କରିବି ବୋଲି ଠିକ୍ କରିଛି ।"

"ସର୍ବନାଶ ! ହଇରେ ଆମେ ଟଙ୍କା ପାଇବୁ କୁଆଡ଼ୁ ? ନିର୍ବାଚନରେ କେତେ ଖର୍ଚ୍ଚ ହୁଏ ମାଲୁମ୍ ନାହିଁ କିରେ ! ଖାଲି ଅମାନତି ଟଙ୍କାଟା ଯୋଗାଡ଼ କରିଦେଲେ କଅଣ କାମ ସରିଯିବ ?

ଖୁବ୍ କମ୍‌ରେ ଦୁଇ ମାସ ପାଇଁ ଦରମାଖିଆ କର୍ମୀରୁ ୫୦/୬୦ ଜଣ, ୪/୫ ହଜାର ପୋଷ୍ଟର, ୧୦/୧୨ହଜାର ଇସ୍ତାହାରପତ୍ର, ବରୋଧୀ ପ୍ରାର୍ଥୀଙ୍କ ଗୋଇଖୋଳା ପତ୍ର ୧୦/୧୨ହଜାର, ଘେରର୍ ଟିକଟ୍ ୫୦ ହଜାର, ମଦ ୨/୩ ଡ୍ରମ୍, ତେଲ ୧୦/୧୫, ମାଇପିଟ୍ ପାଇଁ ଖୁବ୍ କମ୍‌ରେ ୨୦/୩୦ ଗୁଣ୍ଡା, ମାଞ୍ଜ କର୍ମୀ ୧୦/୧୨ ଜଣ, ପାଲବାଲା ୨ ଦଳ, ମାଣ୍ଡଛଆ ନାଚଟୋକା ୮/୧୦ ଜଣ, ଠାକୁର କହ୍ନଣା ପାଇଁ ୨/୫ ଜଣ ବ୍ରାହ୍ମଣ, ଶାଢ଼ୀ,ଧୋତି, ଗେଞ୍ଜି, ଛତାରୁ ୪୦୦/୫୦୦ ଲେଖାଏଁ, ମାଇକ୍ ଓ ଜିପ୍ ୨ଟା ଲେଖାଏଁ ନିହାତି ଦରକାର । ସବାଶେଷ ଘଡି ପାଇଁ ଅମୋଘ ଅସ୍ତ୍ର ସ୍ୱରୂପ ୧୦/୨୦ ହଜାର ଟଙ୍କା । ଏ ଟଙ୍କା ଲକ୍ଷେ ପାଖାପାଖି ଛୁଇଁପାରେ । ଆରେ ତୋର ଦଳ୍ ଅଛୁ ଏତେ ଖର୍ଚ୍ଚ କରି ପାରିବୁ ?"

ହୁଁ କହିଁ ନ ଶୁଣବାରୁ ବନ୍ଧୁ ଜଣକ ନେଉଳ ଦାସ ମୁହଁକୁ ଚାହିଁଲା । ତା' ବଡ଼ ଚହିଁକି ଉଠିଲା । ଆରେ ଏ କଅଣ ନେଉଳ ଆଖି ବୁଜି ଦେଇ କଅଣ ନିସ୍ତଳ ହୋଇଯାଇଛୁ । ଖର୍ଚ୍ଚ କଥା ଶୁଣି ହାଟ୍‌ଫେଲ୍ ହୋଇଗଲେ କି ଆଉ ! ନା-ନା ଷ୍ଟ୍ରୋକ ଖାଇଯାଇଛୁ ।

ବନ୍ଧୁଟି ଆଉ ସମ୍ଭାଳି ନ ପାରି ପାଣି ପୋଷେ ଆଣି ନେଉଳ ମୁହଁକୁ ଛାଟିଦେଲା । ନେଉଳ ଆଁ କରି ନିଃଶ୍ୱାସ ଟାଣିନେଲା ଆଉ ଅଳ୍ପ ବିରକ୍ତି ପ୍ରକାଶ କରି କହିଲା—"ହେଇତ୍, ପାଣି ଛାଟ କାହିଁକି ମାରିଲୁ, ମୁଁ କଅଣ ବେହୋସ୍ ହୋଇ ଯାଇଥିଲି ?"

"ହଁଅମ ମୁଁ ତ ସେଇଆ ଭାବିଲି । ମୁଁ ଭାବିଲି ହଜାର ହଜାର ଟଙ୍କା କଥା ଶୁଣି ତୁ ଷ୍ଟ୍ରୋକ ଖାଇଗଲୁ ।"

"ତା ନୁହେଁ ଯେ, ତୋର ତାଲିକା ଶୁଣି ମୁଁ ମନେ ମନେ ଭାବୁଥିଲି, କଅଣ କଅଣ ମୁଁ କରିପାରିବ । ପୁଞ୍ଜିପତିମାନେ ଲୋକଙ୍କଠାରୁ ଦୂରରେ ରହିଥାନ୍ତି, ସେଇଥିଲାଗି ଲୋକଙ୍କୁ ଭଣ୍ଡିବା ପାଇଁ ଏମିତି ବିହାତିଆ ପଇସା ଖର୍ଚ୍ଚ କରନ୍ତି । ନ କରିବେ ବା କାହିଁକି ? ଆମେରିକା ଗୋଇନ୍ଦା ବିଭାଗ ସେମାନଙ୍କୁ କୋଟି କୋଟି ଟଙ୍କା ସେମାନଙ୍କ ମୁଣ୍ଡ

ଉପରେ ଅଜାଡ଼ୁଛି । ମୋ କଥା କାଲୁ ନଆସ । ମୁଁ ସବୁବେଳେ ଲୋକଙ୍କ ପାଖରେ ଥାଏ । ମୋତେ ସମସ୍ତେ ଚହ୍ନନ୍ତି । ମୁଁ ସେମାନଙ୍କ ସୁଖ ଓ ଦୁଃଖରେ ଭାଗୀ ହୋଇଥାଏ ।"

"ହଁ ହଁ ଲୋକଙ୍କ ସୁଖ ଦୁଃଖରେ ତୋର ଭାଗୀ ହେବା କଥା ଆମକୁ ଜଣା । ଲୋକଙ୍କର ବାହାଘର, ବ୍ରତଘର, ଏକୋଇଶା ଆଦି ଶୁଭ କାମରେ, ଭୋଜଭାତରେ ତୋତେ ସମସ୍ତେ ଦେଖନ୍ତି । ଆଉ ମଲାଗଲା ବେଳର ଶୁଦ୍ଧି କିସ୍ସାରେ ଯେଉଁ ପଚର ପାଣି ପଡ଼େ ସେଥିରେ ବି ଦେଖନ୍ତି । ଏମିତିଆ ସୁଖ ଦୁଃଖରେ ସାଥି ହେବା ଛଡ଼ା ଆଉ କିଛି ତୋର ନାହିଁ । ନିର୍ବାଚନବେଳେ ଏଇଟା କି କାମ ଦେଖେଇବ ।"

"ମୁଁ ଭଲ କରି ଜାଣେ ଆମେରିକା ଗୋଇନ୍ଦା ବିଭାଗ ମୋ ବିରୁଦ୍ଧରେ ଖୁବଆଡ଼ ପ୍ରଚାର କରିଦେଇଛି । ସମସ୍ତଙ୍କ ଆଖିରେ ମୋତେ ନ୍ୟୁନ କରାଇ ପ୍ରଚାର କରି ଦେଇଛି । ସେଇଥି ଲାଗି ସମସ୍ତେ ମୋତେ ନପାରିଲା ବୋଲି ମନେ କରୁଛନ୍ତି । ଆମେରିକା ଗୋଇନ୍ଦା ବିଭାଗ ବଡ଼ ଚତୁର । ସେମାନଙ୍କୁ ପ୍ରଚୁର ଅର୍ଥ ଯୋଗାଇ ଦେଇଛି । ସେମାନେ ଗୁଡ଼ାଏ ଗୁଡ଼ାଏ ଖର୍ଚ୍ଚ କରିବେ, ଫଳରେ ମୁଁ ହାରିଯିବି । ମୋର ସାଙ୍ଗମାନଙ୍କୁ କର୍ମୀ କରିବି । ମୁଁ ନିଜେ ସାଇକେଲରେ ନିର୍ବାଚନମଣ୍ଡଳୀ ଗୋଟାପାକ ବୁଲିବି । ଲୋକମାନଙ୍କୁ ଜଣ ଜଣ କରି କହିବି । ମୋର ମାଇକ ଲୋଡ଼ା ନାହିଁ କି ଜିପ୍ ଲୋଡ଼ା ନାହିଁ । ଆମେରିକା ଗୋଇନ୍ଦା ବିଭାଗକୁ ମୁଁ ଭୂଆଁ ବୁଲେଇ ଦେବି । ମୋ ସାଇକେଲକୁ ସେ ନଅଣ୍ଟ । ତାକୁ ଫୁସ୍‌କରି ଉଡ଼େଇ ଦେବି । ତୁ ମୋତେ ସାହାଯ୍ୟ କରିବୁ କି ନାହିଁ କହିଲୁ ।"

"ସାହାଯ୍ୟ କରିବି ଯେ ହେଲେ ପଇସାପତ୍ର ମୁଁ ଦେଇପାରିବି ନାହିଁ । ଯେତେ ଯାହା କଲେ ବି ନିର୍ବାଚନରେ ୨।୩ ହଜାର ଟଙ୍କା ଦରକାର । ସେମାନଙ୍କୁ ଆମେରିକା ଗୋଇନ୍ଦା ବିଭାଗ ଦେଉଛି ବୋଲି କହୁଛୁ । ତୁ ଗୋଟାଏ କାମ କର । ତୁ ଯାଇ ରୁଷିଆ ଗୋଇନ୍ଦା ବିଭାଗରୁ ଏତିକି ଟଙ୍କା ଯୋଗାଡ଼ କରିନେ । ମୁଁ ପଛେ ତୋ ପାଇଁ କିଛି ପରିଶ୍ରମ କରିବି । କଅଣ କହୁଛୁ, ଯୋଗାଡ଼ କରିବୁଟି ?"

ହିଁ ହିଁ ସେଠକ କରି ପାରିବ । ରୁଷ ଗୋଇନ୍ଦା ଫଙ୍କା ବଡ଼ ପରିଷ୍କାର । ସେଥିରେ ସୂଚା ଲାଗିବନି । ସେଗୁଡ଼ିକ ପଚଳ । ପଚଳ ମନରେ ସେମାନେ ଦେଇଥାନ୍ତି ।

"ହଉ ତେବେ ତୁ ଯାଆ, ମନୋନୟନ ପତ୍ର ଦାଖଲ କରିବାକୁ ଆଉ ଦୁ' ଦିନ ମାତ୍ର ରହିଲା । ତୋ ଦୁ' ଚକିଆ ଜପ୍‌ଟାକୁ ମରାମତି କରି ନୂଆ ଟାୟାର ଟ୍ୟୁବ୍ ପକାଇନେ । ଏବେ କାମରେ ଲାଗିଯା । ମୁଁ ତୋ ପଛେ ପଛେ ଜଣ୍ଡି ରହିଛି ।"

× × ×

ମନୋନୟନ ପତ୍ର ଦାଖଲ ଦିନ ସକାଳୁ ନେଉଳ ଦା'ସେ ନୂଆ ଟାୟାର ଟ୍ୟୁବ୍ ଲଗା ସାଇକେଲ୍‌ରେ ଚଢ଼ି, କାଗଜପତ୍ର ଧରି ଆସି ବନ୍ଧୁଙ୍କ ଘରେ ପହଞ୍ଚିଲେ । ସାଇକେଲ୍‌ଟା ପାହାଚ କଡ଼କୁ ଡେରି ଦେଇ ଆଗରୁ ପିଣ୍ଡାରେ ବସି ଅପେକ୍ଷା କରିଥିବା ବନ୍ଧୁ ପାଖରେ ବସିଲେ । ଅଧ ଘଣ୍ଟାଏ ଆଲୋଚନା ଚାଲିଛି କି ନାହିଁ, ହଠାତ୍ ତୋଃ କରି ଗୋଟାଏ ଆବାଜ୍ ହେଲା । ଦୁହେଁ ଚମକି ପଡ଼ିଲେ । ବନ୍ଧୁଟି ପ୍ରହସନ କରିବା ଉଦ୍ଦେଶ୍ୟରେ କହିଲେ—"ସ୍ଲେଟକାଟିଆ ହାତ ବୋମାଟାଏ କିଏ ପକାଇଲା ପରି !"

ନେଉଳ ସାଙ୍ଗେ ସାଙ୍ଗେ ଯୋଖିଦେଲେ—"ନିଶ୍ଚିତ ଭାବରେ ହାତବୋମା । ମୁଁ ଜାଣେ ପରା ଆମେରିକା ଗୋଇନ୍ଦା ବିଭାଗ ମୋ ପିଛା ଧରିଛି । ଭାବିଛି ଏମିତି କଲେ ମୁଁ ଡରିଯାଇ ନିର୍ବାଚନରୁ ଓହ୍ଲାଇଯିବି । ତା' ହେଇ ପାରିବନି । ନେଉଳ ଦାସ ଡରିଲାବାଲା ନୁହେଁ । କଂସାରି ଘର ପାରିକୁ ଢୁଲା ଠାଉଁ ଠାଉଁ କରି କି ଲାଭ ମିଳିବ । ମୁଁ କହୁଛି ଏମିତି ସେମିତି ଲୋକ ନୁହେଁ, ଯେ କୁନି ହାତବୋମାଟାଏ ଛୁଙ୍କି ଦେଲେ ଲୁଗାପଟା ଖରାପ କରି ପକେଇବି ।"

ଦୁହେଁ ବୋମାର ଅଂଶବିଶେଷ ଆବିଷ୍କାର କରିବାକୁ ପଦାକୁ ଚାଲି ଆସିଲେ । ଚାରିଆଡ଼େ ଆଖି ବୁଲାଇ ବୁଲାଇ ପ୍ରଥମେ ବନ୍ଧୁଙ୍କର ଦୃଷ୍ଟି ଠିକଣା ଥାନରେ ଅଟକି ଗଲା । ସେ ଚିଲେଇ ଉଠିଲେ—"ହାୟ ହାୟ

ସର୍ବନାଶ ! ଅଚ୍ଛା ତୁ ସାଇକେଲରେ ନୂଆ ଟାୟାରଟାଏ ପକେଇଲୁ ନା ? ଯା ହେଲା କେମିତି ?"

ସେତେବେଳକୁ ନେଉଳ ଦାସେ ସାଇକେଲର ଅଗଚକକୁ ଶୁଙ୍ଘି ବିସ୍ଫୋରଣର କାରଣ ଜାଣିସାରିଥିଲେ । ନିଜ ବାଁ ପାପୁଲିରେ ଡାହାଣ ମୁଠା ବାଡ଼େଇଦେଇ ବିଡ଼୍‌ବିଡ଼େଇଲେ—"ମୁଁ ଜାଣେ ସବୁ, ଆମେରିକା ଗୋଇନ୍ଦା ବିଭାଗ ମୋ ପିଛା ଧରିଛି । କସ୍ କନ୍ଦରରେ ସେ ଜାଣିପାରିଛି ମୁଁ ରେଳକାର ମଲ୍ଲ ଦୋକାନରୁ ଟାୟାର କିଣିବି । ଆଗରୁ ଯାଇ ତାକୁ ଶିଖେଇ ଦେଇଛି—ମୋତେ ଏମିତିଆ ସଡ଼ା ଟାୟାର ବିକ୍ରି କରିବ, ଯାହାକି ଟାଣ ପବନ ଦେଲେ ଫୋ ହୋଇଯିବ । ମୁଁ କୁଆଡ଼େ ଯାଇଆସି ପାରିବନି କି ମନୋନୟନପତ୍ର ଠିକ୍ ସମୟରେ ଦାଖଲ କରି-ପାରିବନି ।"

ବନ୍ଧୁ ଜଣକ ହସି ହସି କହିଲେ—"ଏତେ ବଡ଼ ବଡ଼ କମ୍ୟୁନିଷ୍ଟ ନେତାଙ୍କ ପଛରେ ନ ଲାଗି ଆମେରିକା ଗୋଇନ୍ଦା ବିଭାଗ ତୋ ପଛରେ ଏମିତି ଲାଗିଛନ୍ତି କାହିଁକି ? ତୋତେ ତ ଖୁବ୍ ଡରୁଛନ୍ତି ଦେଖୁଛି ! କାରଣ କଅଣ ?"

"ଡରିବେନି ? ସେମାନେ ଭଲକରି ଜାଣନ୍ତି ଯେ, ସମସ୍ତଙ୍କୁ ସେମାନେ ପଟକେଇ ଦେଇ ପାରିବେ; କିନ୍ତୁ ମୋତେ ପାରିବେ ନାହିଁ । ତାଙ୍କ ଡଲାର ମୋତେ କୋଚଆ କରି ପାରିବନି । ମୁଁ ଯଦି ନିର୍ବାଚିତ ହୋଇ ଚାଲିଆସେ ତେବେ ତାଙ୍କ ପିଲେନ୍ନ ପାଣି ହୋଇଯିବ । ସେ ଯାହାହେଉ ଆଗ କେମିତି ସାଇକେଲଟା ସଜାଡ଼ିବି ।"

ପାଖରେ ଥିବା ଗୋଟାଏ ସାଇକେଲ ମରାମତି ଦୋକାନରେ ସାଇକେଲଟା ଦେଇ ନେଉଳ ଦାସେ କହିଲେ—"ଦେଖ, ସାଇକେଲଟା ମୋର ସାଙ୍ଗେ ସାଙ୍ଗେ ଦରକାର । ଶୀଘ୍ର ମରାମତି କରିଦିଅ ।"

ଦରଦାମ କଷାକଷି ଶେଷରେ ମିସ୍ତ୍ରୀ ଘଣ୍ଟାକ ପରେ ମରାମତି କରି ସାଇକେଲଟି ଦେବେବୋଲି କହିଲା । ଘଣ୍ଟାକ ପରେ ନେଉଳ ଦାସ ଆସି ଦେଖିଲେ, ମିସ୍ତ୍ରୀ ସାଇକେଲରେ ହାତ ଦେଇନି । ଆଜି ତାଙ୍କୁ ସମ୍ଭାଳେ କିଏ ? ବିଡ଼୍‌ବିଡ଼େଇଲେ—

"ତୁମେ ଭାବନ ଏହାର ରହସ୍ୟ ମୁଁ ଜାଣେନା। ଆମେରିକା ଗୋଇନ୍ଦା ବିଭାଗ ତୁମକୁ ବି ହାତ କରିନେଇଛି। ତୁମେ ଜାଣି ଜାଣି ମୋ ସାଇକେଲଟାକୁ ସଜାଡ଼ି ନାହଁ।"

"ବାବୁ ସେଇଟା କିଏ? ତା' ନାଁ ବି ମୁଁ ଆଜିଯାଏ ଶୁଣିନି। ସେ ଏଠିକି ଆସିବ କାହିଁକି, ମୋତେ ବା ହାତ କରିବ କାହିଁକି? ଦଶଟା କାମ ଧରିଛି। ଗୋଟାଏ ଅଧେ ନିଶ୍ଚୟ ଡେରି ହୋଇଯିବ।"

"ବାରୁ ବାରୁ ମୋର କାମଟା ଡେରି ହୋଇଯିବ। ଆମେରିକା ଗୋଇନ୍ଦା ବିଭାଗ ବଟେଇ ନ ଦେଇଥିଲେ ତୁମେ ମୋର ସାଇକେଲକୁ ପଛକୁ ରଖିଥାଆନ୍ତ କାହିଁକି?"

"ବାବୁ, ଈଶ୍ୱରଙ୍କୁ ହାତ ବଢ଼େଇ କହୁଛି, ମୁଁ ସେ ଲୋକକୁ କେବେ ଦେଖିନି କି ଚିହ୍ନିନି। ସେ କେଉଁ ସାହିର ଲୋକ ତା' ବି ଜାଣେନି। ଆପଣ ଅଧଘଣ୍ଟାଏ ବସନ୍ତୁ ମୁଁ ସାଙ୍ଗେ ସାଙ୍ଗେ କରି ଦେଉଛି।"

"ଆଉ ବେଳ ନାହିଁ। ତୁମେ କରୁଥାଅ ମୁଁ କଚେରୀରୁ ଫେରି ନେଇଯିବି। ମୁଁ ରିକ୍ସାରେ କଚେରୀକୁ ଯାଉଛି।"

ବନ୍ଧୁକୁ ସାଙ୍ଗରେ ନେଇ ନେଉଳ ଦାସ ରିକ୍ସାରେ କଚେରୀକୁ ଗଲେ। ବାଟରେ ଦୁର୍ଭାଗ୍ୟକୁ ଆଉ ଗୋଟିଏ ରିକ୍ସା ସହ ଧକ୍କା ଲାଗିଗଲା। ନେଉଳ ରିକ୍ସାରୁ ଗଡ଼ି ପଡ଼ୁ ପଡ଼ୁ ରକ୍ଷା ପାଇଗଲେ। ଅନ୍ୟ ରିକ୍ସାଚାଳକ ଉପରେ ରାଗିଯାଇ କହିଲେ—"ହଇରେ ବଦମାସ୍, ଆମେରିକା ଗୋଇନ୍ଦା ବିଭାଗରୁ ପଇସା ଖାଇ ମୋତେ ଜଖମ୍ କରିଦେବୁ ବୋଲି ଭାବିଛୁ। ବୃଥା ଚେଷ୍ଟା। କହିଦେବୁ ଆମେରିକା ଗୋଇନ୍ଦାବାଲାଙ୍କୁ—ନେଉଳ ଦାସକୁ ସେମାନେ ପାରିବେନି। ସତର ଘାଟରେ ପାଣି ପିଇଲା-ବାଲା ସେ।"

ତେଲେଙ୍ଗା ରିକ୍ସାବାଲାଟା ଖଣ୍ଡିଆ ଓଡ଼ିଆରେ କହିଲା—"ଆମେର ଗେଦା ଲେଦୁ ବାବୁ ଲେଦୁ। ସେ ସେ ଏକଡ଼୍କେ ଅଚ, ମୁଁ ଝାଣିଲ ନାହିଁ।"—ଏତିକି କହି ସେ ରିକ୍ସାବାଲା ଚାଲିଗଲା।

ବନ୍ଧୁ ଜଣକ କହିଲେ—"ଆଚ୍ଛା ନେଲସନ୍, ଆମେରିକା ଗୋଇନ୍ଦା ବିଭାଗ ତୋତେ ତ ମଟରକାର୍‌ରେ ଧକ୍କାଟାଏ ଖୁଆଇ ପାରିଥାଆନ୍ତା, ସେ ରିକ୍ସା ଧକ୍କାଟାଏ ଖୁଆଇଲା କାହିଁକି ?"

"ଏତିକି ତୁ ବୁଝି ପାରୁନୁ ! ଆରେ ରିକ୍ସା ଧକ୍କା ହେଲେ କେହି ସନ୍ଦେହ କରିବେନି, ମଟରକାର୍ ଧକ୍କା ହେଲେ ଲୋକେ ଜାଣି ପକେଇବେ । ଆମେରିକା ଗୋଇନ୍ଦାବିଭାଗ ମହା ଚତୁର ।"

ଦୁହେଁ କଚେରୀରେ ପହଞ୍ଚିଲେ । ଯେଉଁ ସମର୍ଥକମାନଙ୍କୁ ଠିକ୍ ସମୟରେ କଚେରୀରେ ପହଞ୍ଚି ମନୋନୟନପତ୍ରରେ ଦସ୍ତଖତ କରିବାକୁ କୁହାଯାଇଥିଲା, ସେମାନଙ୍କର ଦେଖାନାହିଁ । ନେଲସନ ଦାସ ବିବ୍ରତ ହୋଇ-ଉଠି ପୁଣି ବକ୍‌ବକେଇଲା—"ଏ ସବୁ ଆମେରିକା ଗୋଇନ୍ଦା ବିଭାଗର କାମ । ମୋ ସମର୍ଥକମାନଙ୍କୁ ଲାଞ୍ଚ ଦେଇ ହାତକରି ନେଇଛି । ମୁଁ ଯେମିତି ମନୋନୟନପତ୍ର ଦାଖଲ କରି ନ ପାରିବି ତା'ର ଏକ ଷଡ଼ଯନ୍ତ୍ର ।"

"ଆରେ ତୁ ଏତିକିବେଳୁ ଛନଆଁ ହେଉଛୁ କାହିଁକି ? ବାରଟା ବେଳ ଯାଏ ସମୟ ଅଛି । ସେମାନେ କେହି ନ ଆସିଲେ ବି ଏଇଠୁ କାହାକୁ ଧରି ନେଇ କାମ ଚଳେଇନେବା । ତୁ ଆଉ ଆମେରିକା ଗୋଇନ୍ଦା ବିଭାଗ ପଛରେ ଗୋଡ଼ାନା ।"

"ତୁ ଆମେରିକା ଗୋଇନ୍ଦା ବିଭାଗର ଜାଲ ଭେଦ କରି-ପାରିବୁନି । ସମର୍ଥକ ଯିନା ମିଳିବ, ହେଲେ ଶୁଭ ମୁହୂର୍ତ୍ତଟି ଗଡ଼ିଗଲେ ଆଉ ମିଳିବ ? ମୁଁ କୋହିନୁର ପାଞ୍ଜି ଦେଖି ଶୁଭ ମୁହୂର୍ତ୍ତ ଠିକଣା କରିଥିବା କଥା ଆମେରିକା ଗୋଇନ୍ଦା ବିଭାଗ କସ୍‌କଦରରେ ଜାଣି ଯେଇଛି । କୋହିନୁର ପାଞ୍ଜିଟାଏ ତାକୁ କ'ଣ ଅପ୍ରାପ୍ତ । ସେଥିରୁ ସେ ସମୟଟା ଜାଣି ନେଇଛି । ସେହି ସମୟଟାକୁ ଗଡ଼େଇ ଦେବାକୁ ସମର୍ଥକ-ମାନଙ୍କୁ ଅନ୍ୟ କେଉଁଆଡ଼କୁ ହଟେଇ ଦେଇଛି । ଆମେରିକା ଗୋଇନ୍ଦା ବିଭାଗ କେତେ ଯେଣାରେ ପାଣି ଜଠେଇଦେବ ।"

ଶୁଭ ମୁହୂର୍ତ୍ତ ଗଡ଼ିଯିବା ପୂର୍ବରୁ ସମର୍ଥକ ହେବାକୁ ଜଣେ ମିଳିଗଲେ । ଅଳ୍ପ ସମୟ ବାକି । ହାକିମଙ୍କ ଦେଖା ନାହିଁ । ନେଲସନ

ଦାସେ ପଟ୍ କରି ଆମେରିକା ଗୋଇନ୍ଦା ବିଭାଗର କାର୍‌ସାଦ ଯେଠି ଦ ଦେଖି ପକାଇଲେ । ଠିକଣା ସମୟକୁ ଗୋଇନ୍ଦାମାନେ ହାକିମଙ୍କୁ ଯେ ଅନ୍ୟତ୍ର ଅଟକାଇ ଦେବେ ତାହା ସେ ଆଗରୁ ସନ୍ଦେହ କରିଥିଲେ ବୋଲି ବନ୍ଧୁଙ୍କୁ ଜଣାଇଲେ । ବନ୍ଧୁ ଜଣକ, ହାକିମ କୁଆଡ଼େ ଯାଇଛନ୍ତି ବୋଲି ପିଅନକୁ ପଚାରିବାରୁ ସେ ଜାଣିନି ବୋଲି କହିଲା । ନେଉଳ ଦାସେ ସଙ୍ଗେ ସଙ୍ଗେ ବିଳ୍‌ବିଳେଇ ଉଠିଲେ—"ଯେଉଁ ଆମେରିକା ଗୋଇନ୍ଦା ବିଭାଗ ହାକିମଙ୍କୁ ଅକ୍ତିଆର କରିନେଲା ସେ କି ପିଅନ୍‌କୁ ବାଦ୍‌ଦେବ ।"

ବନ୍ଧୁ ଜଣକ ନେଉଳ ଦାସଙ୍କୁ ବୁଝେଇଦେଲେ—"ଦେଖ, ଆମେରିକା ଗୋଇନ୍ଦା ବିଭାଗ ଚୁପ୍ ଛୁପ୍ ସବୁ କାମ କରି ଯାଉଛନ୍ତି । ତୁ ସେମିତି ଚୁପ୍ ଚୁପ୍ ସବୁ କାମ କରିଯା । ପାଟିତୁଣ୍ଡ କରୁଛୁ କାହିଁ ? ସେମାନେ ଡାଳେ ଡାଳେ ଗଲେ ତୁ ପତରେ ପତରେ ଯା ।"

"ତୁ କଅଣ ଭାବୁଛୁ ମୁଁ ବହୁତ ଜାଗାରେ ଚୁପ୍ ରହିନି । ଘରୁ ବାହାରିଲାବେଳେ ଦାଣ୍ଡ ପିଣ୍ଡାରେ ଗୋଟାଏ ବିରାଡ଼ି ଛିଙ୍କିଦେଲା । ମୁଁ ଭଲକରି ଦେଖିଛି ସେ ବିରାଡ଼ିଟା ଆମ ପାଖର ବିରାଡ଼ି ନୁହେଁ । ଆଉ ବିରାଡ଼ି ନାକ ଆଗରେ କଳା କଳା ହୋଇ ଚୂନା ଲାଗିଥିଲା । ଏ ନିଶ୍ଚୟ ଆମେରିକା ଗୋଇନ୍ଦା ବିଭାଗର କାମ । ଗୋଟାଏ ବିରାଡ଼ି ନାକରେ ନାଶ ମାରିଦେଇ ଯେଇଠି ଛାଡ଼ି ଦେଇ ଖସି ପାର୍ । ତା'ର କାଠ ପାଣି ମଧ୍ୟ ଜଣା । କିନ୍ତୁ କାହାକୁ ନ କହି ପଛକୁ ଫେରିଗଲି । ଖଟ ଉପରେ ଟିକିଏ ବସିପଡ଼ି ପୁଣି 'ଦୁର୍ଗା ଦୁର୍ଗା' କହି ଚାଲି ଆସିଲି । ସେମାନେ ଡାଳେ ଡାଳେ ଗଲେ, ମୁଁ ପତରେ ପତରେ ଚାଲି ଆସିଲିନା !"

"ହିଁ ହିଁ ତୁ ଆଡ଼କୁ ସେମିତି କର । ଆମେରିକା ଗୋଇନ୍ଦା ବିଭାଗ ପେଡ଼ି ପୁଟୁଳା ଧରି ଏ ଦେଶ ଛାଡ଼ି ପଳେଇବ ।"

× × ×

ଆଡ଼କୁ ଛପାଛପି କାମ ଆରମ୍ଭ । କାଗଜ ଦୋକାନ ପାଖରେ ନେଉଳ ଦାସର ତୁଣ୍ଡ ସଂଯମ ବନ୍ଧଟା ଭୁସ୍ କରି ଭାଙ୍ଗିଗଲା । ସେ ଚିଲେଇ ଉଠିଲେ—"କଅଣ ହେଲା, ଆମେରିକା ଗୋଇନ୍ଦା ବିଭାଗ

କଥାରେ ପଡ଼ି ତୁମେ ଏକାବେଳେକେ ଆମ ମୁଣ୍ଡ କାଟିଦେବ ? ଟିମେ କାଗଜ କାହିଁ ୩୦।୩୫କୁ ଏକାବେଳେକେ ୧୧୦ । ୧୧୫ । ଆମେରିକା ଗୋଇନ୍ଦା ବିଭାଗ କଥାରେ ତୁମେ କାହିଁ ଗିଳିଯାଉଛ ?''

ଦୋକାନୀଟି ଆବାକାବା ହୋଇଯାଇ କହିଲା—''ଆପଣ ଆମେରିକା ଗୋଇନ୍ଦା ବିଭାଗ କଥା କହୁଛନ୍ତି ନା ଆମ ଗୋଇନ୍ଦା ବିଭାଗ କଥା କହୁଛନ୍ତି ମୁଁ ବୁଝିପାରୁନି । ଆମେ ବିକାଳିବାଲା । ମିଲ୍‌ବାଲାମାନେ କୋଟି କୋଟି ଟଙ୍କା ନିର୍ବାଚନ ପାଇଁ ଦେଇଛନ୍ତି । କାଗଜ ଉପରେ ସେ ଟଙ୍କାକୁ କଷି କାଗଜ ଦାମ୍ ବସେଇଛନ୍ତି । ଫଳରେ ଦାମ୍ ବଢ଼ିଛି । ଆମେ ମଝିରେ ଦି'ପଇସା ପାଇବା ଲୋକ । ଆପଣ ମିଲ୍‌ବାଲାଙ୍କୁ ପଚାରୁ ନାହାନ୍ତି ?''

''ମୁଁ ଜାଣେ, ଆମେରିକା ଗୋଇନ୍ଦା ବିଭାଗ ଏମିତି କହିବାକୁ ଶିଖେଇଛି । କେମିତି ମୁଁ କାଗଜ ନ ପାଏ କି ନିର୍ବାଚନ ଇସ୍ତାହାର ନ ଛାପେ । ଆମେରିକା ଗୋଇନ୍ଦା ବିଭାଗକୁ ମୁଁ ବାଟ ଛାଡ଼ି ଦେବିନି । ଯିଏ ରିମ୍ କାଗଜ ନେଇଥାଆନ୍ତି । ନ ହେଲି, ରିମ୍‌ଟାଏ ନେବି । ମୋର ଖଣ୍ଡିଏ ଇସ୍ତାହାର ଯାହା କାମ ଦେଖେଇବ ଆମେରିକା ଗୋଇନ୍ଦା ବିଭାଗର ଦଲାଲ୍‌ମାନଙ୍କର ହଜାର ଖଣ୍ଡ ଇସ୍ତାହାର ପଝ ସେ କାମ ଦେଖେଇ ପାରିବ ନାହିଁ । ହଉ ପଛେ ୧୧୦ ମୋତେ ରିମେ କାଗଜ ଦିଅ ।''

× × ×

ପ୍ରେସ୍‌ରେ ଛାପିବାକୁ ଗଲାବେଳକୁ ସେଠି .ବି ଆମେରିକା ଗୋଇନ୍ଦା ବିଭାଗର ବାସନା ପାଇ ନେଉଳ ଦାସ ନାକ ଟେକିଲେ । ଛାପାରେ ବିଳମ୍ବ କରିବା କାମ କୌଣସି ଛାପାଖାନାକୁ ମାଲୁମ୍ ନାହିଁ । ଏ ପ୍ରେସ୍ ଯେତେବେଳେ ଏତେ ବଡ଼ ଅପସନ୍ଦିଆ କଥାଟା କରୁଛି ତେବେ ଏହା ଆମେରିକା ଗୋଇନ୍ଦା ବିଭାଗଙ୍କ କାମ ଛଡ଼ା ଆଉ କ'ଣ ହୋଇପାରେ । ଅନ୍ୟାନ୍ୟ ସ୍ଥାନ ପରି ଏଠି ମଧ୍ୟ ତାକୁ ହରେଇବାକୁ ନେଉଳ ଦାସ ଦୃଢ଼ସଂକଳ୍ପ । ଢେର ହେଉଥାଉ ଏଇଠି ଛାପି ନେବେ, ନେବେ, ନେବେ ।

ଛାପାଖାନାବାଲାଟି ନେଉଳ ଦାସ ଓ ତାଙ୍କଦ୍ୱାରା ଛାପାଖାନା ଭିତରକୁ ନିକ୍ଷିପ୍ତ ଅଦୃଶ୍ୟ ଆମେରିକା ଗୋଇନ୍ଦା ବିଭାଗ ଦ୍ୱାରା ବ୍ୟସ୍ତ-ବ୍ୟସ୍ତ ହୋଇ ପଡ଼ିଲା । ସେମାନେ ଯେ ଯଥାଶୀଘ୍ର ଛାପିଦେବେ ତା'ର ପ୍ରମାଣ ସ୍ୱରୂପ ପ୍ରଥମ ବା ଗେଲି ପ୍ରୁଫ୍ ଟି କାଢ଼ି ଧରାଇଦେଲେ । ନେଉଳ ଦାସ ଢ' ଲୁନ ଧାଡ଼ି ପଢ଼ି ଚିହ୍ନି କି ନାହିଁ ଚିତ୍କାରି ଉଠିଲେ । "ଏ କଅଣ ! ଏହାକୁ ପିଏ ଖଞ୍ଜିଛି ସେ ନିଶ୍ଚୟ ଆମେରିକା ଗୋଇନ୍ଦା ବିଭାଗର ଲୋକ । ମୁଁ ଲେଖିଥିଲି ପୁଞ୍ଜିପତିଙ୍କ ପାଖରେ ମୁଁ ମୁଣ୍ଡ ନୁଆଁଇବି ନାହିଁ । ସେ ଝଞ୍ଜିଛି ନୁଆଁଇବି । ପାରିଥିଲା ତ ମୋତେ । ଦେଖି ଆମେରିକା ଗୋଇନ୍ଦା ବିଭାଗ ମୋତେ ପାରିବ ନାହିଁ । ତାଙ୍କୁ କହିଦେବ ନେଉଳ ଦାସ ଗମାର ନୁହେଁ ।"

ଛାପାଖାନାବାଲାଟି ବିବ୍ରତ ହୋଇପଡ଼ି ବୁଝେଇ ଦେଲା— "ଆଜ୍ଞା ସଂଶୋଧିତ ହୋଇନି । ଥରେ ନୁହେଁ ତିନି ଥର ସଂଶୋଧିତ ହେବ । ପ୍ରଥମେ ଏମିତି ଭୁଲ ରହେ । କେବଳ ଖଞ୍ଜା ହେଲାଣି ବୋଲି ଜଣେଇବାକୁ ଆପଣଙ୍କୁ ଏଇଟା ଦେଖେଇଦେଲି । ଆପଣ ବିବ୍ରତ ନ ହୋଇଥିଲେ ମୁଁ ଏଇଟା ଦେଖେଇ ନ ଥାନ୍ତି । ସଂଶୋଧିତ ଶେଷ ପ୍ରଫଟି ଦେଖି ଛପେଇ ଆଦେଶ ଦେଲେ ଆମେ ଛାପିବୁ, ତା' ଆଗରୁ ନୁହେଁ ।"

× × ×

ଆମେରିକା ଗୋଇନ୍ଦା ବିଭାଗକୁ ହଟେଇ ଦେଇ ନେଉଳ ଦାସ ଛପା ସରଞ୍ଜାମଟକ ଧରି ଘରକୁ ଫେରିଲେ ।

ଘରଟି ନେଉଳ ଦାସଙ୍କର ନିର୍ବାଚନ ଅଫିସ୍ ହୋଇଥାଏ । ତାଙ୍କ ବନ୍ଧୁଙ୍କ ଆନ୍ତରିକ ଚେଷ୍ଟା ଫଳରେ ଆଜି ଜଣେ ବନ୍ଧୁ ଆସିଲେ । ଦୁହେଁ ଅଫିସ୍ କାମ କଲେ ଆଉ ନେଉଳ ଦାସ ଢ' ଚକଆ, ଜିପ୍ ଓ ମୁଖ ମାଇକ୍‌ଦ୍ୱାରା ପ୍ରଚାର କାର୍ଯ୍ୟରେ ଲାଗି ପଡ଼ିଲେ ।

ଦୁଇ ବନ୍ଧୁଙ୍କ ପାଇଁ ଭୋଟର ଟିକେଟ୍‌ରେ ନାମ ଲେଖିବା ଛଡ଼ା ଅନ୍ୟ କିଛି କାମ ନଥାଏ । ତେଣୁ ଯେଉଁ ସବୁ ନୂଆ ନୂଆ

ଥାନରେ ନେଉଳ ଦାସ ଆମେରିକା ଗୋଇନ୍ଦା ବିଭାଗକୁ ଭେଟି ତାଙ୍କ ଆଗରେ କହୁଥିଲେ ଦୁହେଁ ତାଙ୍କୁ ଟିପି ଉଚୁଥିଲେ ।

ଭୋଟ ବକା କଣା ସରିଲା । ସରକାର ନେଉଳ ଦାସଙ୍କ ଅମାନତ ଟଙ୍କା ଫେରାଇଲେ ନାହିଁ । ନେଉଳ ଦାସ ସଫେଇ ଦେଲେ—"ମୁଁ ଯେତେ ଲୋକଙ୍କୁ କହିଥିଲି ସେମାନେ ସମସ୍ତେ ମୋତେ ନିଶ୍ଚିତ ଭାବରେ ଭୋଟ ଦେବେ ବୋଲି ଅଙ୍ଗୀକାର କରିଥିଲେ । ସମସ୍ତେ ମୋତେ ଭୋଟ ଦେଇଛନ୍ତି ମଧ୍ୟ । ଯାହା ସବୁ ଏବେ ହେଲା ତାହା ଆମେରିକା ଗୋଇନ୍ଦା ବିଭାଗର କାମ ।"

ଏଥିପାଇଁ ଦୁଇ ବନ୍ଧୁ ଓ ନେଉଳ ଦାସଙ୍କୁ ନେଇ ଗୋଟାଏ ତିନିଜଣିଆ କମିଶନ ବସିଲା । ଚିଠା କାଗଜ କଢ଼ାଗଲା । ସେଥିରୁ ଆମେରିକା ଗୋଇନ୍ଦା ବିଭାଗର ବହୁତ ଗୁରୁତର ଷଡ଼ଯନ୍ତ୍ରର ସନ୍ଧାନ ମିଳିଲା । ଯଥା—

(୧) ରାଜପଥ ଉପରେ ସ୍ଥାନେ ସ୍ଥାନେ କଣ୍ଟା ପକାଇବାରୁ ସାଇକଲ ମଟରରେ ମଟରରେ କଣା ହୋଇ ପ୍ରଚାରରେ ବାଧା ସୃଷ୍ଟି ହେଲା ।

(୨) ପ୍ରଚାରପତ୍ର ସବୁ ନ ପଢ଼ି ସେଥିରେ ଗୁଆ, ଗୁଣ୍ଡି ଆଦି ବାନ୍ଧିବା ପାଇଁ ଭୋଟର୍‌ମାନଙ୍କୁ ପ୍ରବର୍ତ୍ତାଇଲା ।

(୩) ତା'ର ପ୍ରରୋଚନାରେ ଅନ୍ୟାନ୍ୟ ପ୍ରାର୍ଥୀମାନେ ବଡ଼ ବଡ଼ ବଡ଼ପାଟିଆ ସାହାଯ୍ୟରେ ଏତେ ହଲ୍ଲା କଲେ ଯେ, ଦାସଙ୍କ ସ୍ୱର ତହିଁରେ ବୁଡ଼ିଗଲା ।

(୪) ତା'ର ପ୍ରରୋଚନାରେ ଅନ୍ୟାନ୍ୟ ପ୍ରାର୍ଥୀମାନେ ବେଳେ-ବେଳେ ମାର୍‌ପିଟ୍ ଓ ତେଲ ଫୋପାଡ଼ା ଅଭିନୟ କରି ଦାସଙ୍କ ଉପରକୁ ଦୁଇ ଥର ତେଲ ଫୋପାଡ଼ିଲେ ।

(୫) ଭୋଟରମାନଙ୍କୁ ଲାଞ୍ଚୁଆ କରିଦେଲା । ଫଳରେ ସମସ୍ତେ ତାଙ୍କୁ ଟଙ୍କା ମାଗିଲେ । ଏମିତିଆ ବହୁତ ଗୁରୁତର କାରଣ ବାହାରିଲା ।

ଦାସେ ଏକ କରିବାକୁ ପଦାକୁ ଗଲେ । ଜଣେ ବନ୍ଧୁ ଅନ୍ୟକୁ କହିଲା—ରକ୍ଷା ହୋଇଛି, ଆମେରିକା ଗୋଇନ୍ଦା ବିଭାଗ ମୁଣ୍ଡରେ ସବୁ ଯାଇଛି । ତା' ନ ହୋଇଥିଲେ ଆମର ଭୋଟରମାନଙ୍କ ମୁଣ୍ଡରେ ସବୁ ଯାଇଥାନ୍ତା । ନେଉଳ ଭାଇ ଜଣ ଜଣ କରି ସମସ୍ତଙ୍କୁ ନର୍କକୁ ପଠାଇ-ଥାନ୍ତା । ଶେଷରେ ଆମେରିକା ଗୋଇନ୍ଦା ବିଭାଗ ଆମ ମୁଣ୍ଡ ବଗାଡ଼ ଦେଇଛି ବୋଲି କହୁଥାଆନ୍ତା ।



## ॥ ଭୋଟଭଟା ॥

ଟେଙ୍ଗ ଦାସ ଓ ବେଙ୍ଗ ଦାସଙ୍କ ଭିତରେ ଯେଉଁ ନିର୍ବାଚନଟା ହୋଇଗଲା ତା'ର ପଟାନ୍ତର ନାହିଁ କହିଲେ ଚଳେ । ମାସେକାଳ ହଗା-ମୂତା ପରିଶ୍ରମ ଘଣ୍ଟା ଚକଟା ପରେ ନିର୍ବାଚନଟା ସୁରୁଖୁରୁରେ ସରିଗଲା । ଦୁହେଁ ଖୁରକାତ ମେଲେଇ ପଡ଼ିଗଲେ । କଷ୍ଟସମସ୍ତ ପାଇଁ ଦୁହେଁ ଟିକିଏ ନିଃଶ୍ୱାସ ମାରିଲେ । ଗୁମାସ୍ତାମାନେ ଉଭୟଙ୍କ ଦିହରେ ଟିଙ୍କ ପରି ଲାଗି ଉତ୍ସାହବାଣୀ ନ ଶୁଣାଉଥିଲେ ଦୁହେଁ ଏକାବେଳେକେ ହାଲିଆ ହୋଇଯାଇ କତର ଧରି ଥାଆନ୍ତେ ।

ଟେଙ୍ଗ ଦାସଙ୍କ ମୁଣ୍ଡି ଗୁମାସ୍ତା ଶୁଣାଉଥାଏ, "ଆଜ୍ଞା ! ବେଙ୍ଗ ଦାସର ଅମାନତ ଟଙ୍କା ଉଡ଼ିଯିବ । ଆମ ଭାଗ୍ୟ ଭଲ, ବେଙ୍ଗ ଦାସ ଗୁଡ଼ାଏ ଜଣାଶୁଣା ଟାଉଟରଙ୍କ ହାବୁଡ଼ରେ ପଡ଼ିଗଲା । ଲୋକେ ଆଜି-କାଲି ଯେମିତି ସ୍ୱଲଖ ବନଲେଣି, ସେଥିରେ ସେମାନେ କେବେହେଲେ ଟାଉଟରଙ୍କ ପାଖ ମାଡ଼ିବେ ନାହିଁ । ମୁଁ ପରା ନିଜେ ଶୁଣିଛି, ଲୋକେ ଦଳ-ଦଳ ହୋଇ କଥାବାର୍ତ୍ତା ହେଉଥାନ୍ତି—ଏ ଟାଉଟରଗୁଡ଼ାକ ଯେ ପର୍ଯ୍ୟନ୍ତ ଆମ ଦେଶରୁ ପୋଛି ହୋଇ ନ ଯାଇଛନ୍ତି, ସେ ପର୍ଯ୍ୟନ୍ତ ଉନ୍ନତି ହେବନାହିଁ । ସବଗିନାଗୁଡ଼ାକ ସବୁ ପାଟିରେ ପକେଇଦେବେ । ଯେଉଁମାନଙ୍କର ଏପରି ଧାରଣା ସେମାନେ କେବେହେଲେ ବେଙ୍ଗ ଦାସର ଟାଉଟରମାନଙ୍କ ପାଲରେ ପଡ଼ିଥିବେନା ! ମନେ ମନେ ଗୁଡ଼ମୂଆଁ ଖାଉଥାଆନ୍ତୁ । ଆଜି ତ ଗୋଟାଏ ଦିନ ମଝିରେ । ପଅରଦିନ ଏତିକିବେଳକୁ ପୁଏ ମୁହଁ ଆମ୍ବିଳା କରି ଘରେ ଲୁଚିବେ ଯେ ।"

ମୁଣ୍ଡି ଗୁମାସ୍ତା ବକ ବକ ହାଲିଆ ହୋଇ ପଡ଼ିଲାବେଳକୁ ସହକାରୀ ମୁଣ୍ଡି ଗୁମାସ୍ତା ଯୋଡ଼ି ଦଉଥାଏ, "ସେ ଟାଉଟରଗୁଡ଼ାକ

କଅଣ କମ୍ ନେଟଣ ଖାଇଛନ୍ତି । ଖୁବ୍ କମ୍‌ରେ ମୁଁ କୋଡ଼ିଏ ଥରଗି ଜାଗାରେ ଦେଖିଛି ଲୋକେ ସେମାନଙ୍କୁ ଘେରିଯାଇ ଅଦା ନେଛଲା ପରେ ନେଉଥାଆନ୍ତି 'ଆଉ କହୁଥାଆନ୍ତି—ହଇରେ ଶଳେ ! ବେଙ୍ଗ ଦାସକୁ ଶୋଷି ଶୋଷି ତ ଦେବାଳିଆ କରିସାରିଲଣି । ତା'ର ଖାଉଛ ତା'ର ହିଁ ଦୁର୍ଗୁଣ ଗାଉଛ । ତୁମେ ଶଳେ ଚେଙ୍ଗ ଦାସଙ୍କ ନାମ ଧରିବାକୁ ଲାଏକ ? ଶଳେ ଜାଣିଛ ଚେଙ୍ଗଦାସ ବାପ-ମା ଛେଉଣ୍ଡ, ତା'ର କେହି ନାହାନ୍ତି । ହଇରେ ଶଳେ, ଭାବଥିଲ ପରା ଆମେ ସମସ୍ତେ ମରିଗଲୁଣି ! ହଇରେ ଶଳେ, କାହା ନାଆଁ ପାଟିରେ ଧରୁଛ ଜାଣିଛ ? କାହିଁ ଚେଙ୍ଗ ଦାସ, କାହିଁ ବେଙ୍ଗ ଦାସ । କାହିଁ ରାମଚନ୍ଦ୍ର ମହାରାଜା, କାହିଁ ରାମା ହରିଜନ ! ଫେରିବାର୍ ଚେଙ୍ଗ ଦାସଙ୍କ ନାଆଁରେ କିଛି କହିବ ତ ତମ ମୁହଁରେ ମଣିଷ ଗୋବର ଢୁରଇବୁ । ତମ ପିଠିରୁ ଛାଲ ଉତାରି ଦେବୁ । ତମ ବେଙ୍ଗକୁ ନେଇ ସାପ ଆଗରେ ପକାଇଦେବୁ । ଆରେ ସେ ଶଳା ବେଙ୍ଗାର ସାତ ଜନମ ଗଲେ ଆମ ଚେଙ୍ଗ ବାବୁଙ୍କ ପାଦକୁ ସରି ହେବ ନା !"

ତାକୁ ଅଟକାଇ ତା' ଦଳ ଗୁମାସ୍ତା କହିଲା —"ଶେଷ ଆଡ଼କୁ ତ ବେଙ୍ଗ ଦାସର ଆଠ ଦଶଟା ଟାଉଟରଙ୍କ ପାଟି ଚୁପ୍ ହୋଇଗଲା । ସେମାନଙ୍କର ମୁହଁ ଆଉ ଦେଖାଗଲା ନାହିଁ । ଆମର ଶହଶହ କର୍ମୀଙ୍କ ଚୋଟରେ ଶଳେ କୁଆଡେ ଛିନ୍ନଛତର ହୋଇଗଲେ । ଭୋଟରମାନେ ତ ଆମର କଥା ଶୁଣିବାକୁ ଠେଲାପେଲା ହେଲେ । ଆମର ଶବ୍ଦରେ ଦୁମ୍‌ଦାମ୍ ମୋହର କୁଟିଦେଇଗଲେ । ବେଙ୍ଗ ଦାସ ଜୀବନଭର୍ ଆଉ କେବେ ଆମ ବିରୁଦ୍ଧରେ ଠିଆ ହେବାକୁ ସାହସ କରିବ ନାହିଁ ।"

ଆଉ ଜଣେ କର୍ମୀ ଗୁମାସ୍ତା କହିଲା—"ମୁଁ ପରା ଟେକ୍ସା ବୋମ୍ବେଇରୁ ଆମ ଜିତାପଟଟା ଉଡ଼େଇ ନେଇଛି । ବେଙ୍ଗଦାସ ରିକ୍ସା ପାଖେ ପାଖେ ଆମ ରିକ୍ସା ଜଣି ରହୁଥାଏ । ସବୁଠେଇଁ ମୁଁ ଦେଖିଛି ଭୋଟରମାନେ ଯେମିତି ରିକ୍ସା ପାଖରେ ପହଞ୍ଚନ୍ତି ସେମିତି ପଚାରନ୍ତି— 'କାହା ରିକ୍ସା ?' ବେଙ୍ଗ ଦାସଙ୍କ ରିକ୍ସା ଶୁଣି ସମସ୍ତେ ମୁହଁ ମୋଡ଼ନ୍ତି । ଚେଙ୍ଗ ଦାସଙ୍କ ରିକ୍ସା ଶୁଣିବା ମାତ୍ରେ ଦେଖ କ

ଖୁସି ! ନିଜ ରିକ୍‌ସାରେ ଚଢ଼ିଲା ପରେ ଏକା ଡିଆଁକେ ଯାଇ ବସିଯାଆନ୍ତି । ଏହାପରେ ଆଉ ବୁଝିବାକୁ ବାକି ରହିବ ନା ? ମୁଁ ଗଣି ଗଣି ଶହେକେ ଦୁଇ କି ତିନି ଜଣ କାଙ୍ଗାଳିଆ, ଭିକଚଟା, ଅଲଜୁକ, ଥୋବରା ବେଙ୍ଗ ଦାସଙ୍କ ରିକ୍‌ସାରେ ବସିଛନ୍ତି । ବାକିତକ ସବୁ ଆମ ରିକ୍‌ସାରେ । ବେଂଗ ଦାସର ଅମାନତ ଟଙ୍କା ଉଡ଼ିଯିବ, ଯିବ, ଯିବ । ମୁଁ ଏମିତି କହୁଛି । ମୁଁ ଆଗତୁରା କହିଦେଉଛି, ଲେଖିନିଅ, ଅଶୀ ହଜାର ଭୋଟରୁ ବେଙ୍ଗ ଦାସ ଖୁବ୍‌ବେଶିହେଲେ ପାଞ୍ଚଶହ ପାଇବ । ଅସଲ ଘାଣ୍ଟିଥାନ ରିକ୍‌ସା ଚଢ଼ାରୁ ମୁଁ ଧରି ନେଇଛି । ଆମ ଲୋକେ ବାସ୍ତବିକ୍ ଭାରି ରେକ୍‌ଟୋକ୍ । ଯାହାକୁ ନାପସନ୍ଦ କରିବେ ତା'ର କୁକୁର ବିରାଡ଼ିଙ୍କୁ ମଧ୍ୟ ନାପସନ୍ଦ କରିବେ । ରିକ୍‌ସା ତ ଦୂରର କଥା ।"

ଶେଷରେ ବେଙ୍ଗ ଦାସେ ମୁଣ୍ଡ ଠୁଙ୍କାରି କହିଲେ—"ପ୍ରକୃତରେ ଆମ ଲୋକେ ବଡ଼ ମତିବାଦୀ, ରାଜନୈତିକ ଚେତନା ସେମାନଙ୍କର ଖୁବ୍ ଅଛି । ସେମାନଙ୍କ ଉପରେ ଭରସା ଥିଲା ବୋଲି ସିନା ମୁଁ ଠିଆ-ହୋଇଥିଲି । ଫଳାଫଳଟା ଘୋଷଣା ହୋଇଯାଉ; ଗୋପବନ୍ଧୁ ବାଗରେ ଗୋଟାଏ ବଡ଼ ସଭା କରି ଭୋଟର ଭାଇମାନଙ୍କୁ କୃତଜ୍ଞତା ଜଣାଇ ଦେବା ।"

କପି ଗୁମାସ୍ତା ଜଣଙ୍କ ବ୍ୟସ୍ତ ହୋଇପଡ଼ି କହିଲା—"ଆଉ ପୁଣି ସନ୍ଦେହ ଅଛି ନା ? ଫଳାଫଳ ଘୋଷଣାପାଏ ଅପେକ୍ଷା କରିବା ? ଘୋଷଣାରେ ଅଲବତ ଶୁଣିବ—ବେଂଗ ଦାସ ଚେଂଗ ଦାସଙ୍କୁ ୭୯ ହଜାର ଭୋଟରେ ହରେଇ ନିର୍ବାଚିତ ହେଲେ । ଆମର ଯାହା କରିବାର କଥା ଆଜିଠୁଁ କରିଯିବା । ଟଣ୍ଡରପୁରରେ ମୁଁ ଦଶଟା ଖାସି ଯୋଗାଡ଼-କରି ରଖିଛି । ବରାଦ ହେଲମାତେ ଅଡ଼େଇ ନେଇ ଆସିବ । ଭଲ କାମରେ ଡେରି ନ କରିବାକୁ ବେଦରେ ଲେଖାଅଛି ।"

ଚେଂଗ ଦାସଙ୍କୁ ପାଣିକୁ ଠେଲା ଛେଳି ହେଲା ପରି ହେଉଥିବାର ଦେଖି ମୁଣ୍ଡି ଗୁମାସ୍ତା କଥାଟାକୁ ବଙ୍କେଇ ଦେଇ କହିଲା—"ନାହିଁ ନାହିଁ ଫଳ ଘୋଷଣା ପରେ ବଡ଼ ଭୋଜଟା ପଛେ ହେବ । ସେଥିରେ ସବୁ କର୍ମୀ ଆଉ ବଛା ବଛା ଭୋଟର୍‌ଙ୍କୁ ଡକାଯିବ । ଗୋଟାଏ ଝମାଲ କାମ

ହେବ । ଏବେ ସମସ୍ତେ ଢ଼ାଲିଆ ହୋଇ ପଡ଼ିଛୁ । ସେଥିକୁ ପାରିବା ନାହିଁ । ଆଜି ଗୋଟାଏ ବୁଦ୍ଧି ଭୋଜ କରିଦେବା । ଆମେ ଯେତେଜଣ ପାଖଲୋକ ଅଛୁ ସେଇମାନଙ୍କ ଭୋଜଟାଏ କରିଦେବା । ବେଶି ନାହିଁ । ଗୋଟିଏ ଖାସି, ଦଶକିଲୋ ମଇଦା, ଛଅ କିଲୋ ମଇଁଷି ଘିଅ ହେଲେ କାମ ଫତେ । ଆମେ ତ ମୋଟ ୩୦।୩୫ ଲୋକ ଅଛୁ । ଦିଅନ୍ତୁ ଆଜ୍ଞା, ଦେଢ଼ଶହ ଟଙ୍କା ଦେବେଟି । ଏତିକିରେ ମୁଁ କାମ ତୁଲେଇ ଦେବି । ଦିଅନ୍ତୁ ଶୀଘ୍ର ଦିଅନ୍ତୁ । ସମସ୍ତଙ୍କର ଯେତେବେଳେ ଗୋଟାଏ ଝୁଙ୍କ ଉଠିଛି ସେଇଟାକୁ ରୋକିଦେବା ଭଲହେବନି । ଆଣନ୍ତୁ ଆଣନ୍ତୁ ଦେଢ଼ଶ ଟଙ୍କା ଆଣନ୍ତୁ ।"

ପ୍ରାଣ ଭୟରେ ଡକାଏତଙ୍କ ହାତରେ ଗୃହସ୍ଥ ଟଙ୍କାପଇସା ବଢ଼େଇ ଦେଲା ପରି ଚେଂଗ ଦାସେ ଲୁହା ସିନ୍ଦୁକରୁ ଦେଢ଼ଶହ ଟଙ୍କା କାଢ଼ି ମୁଣ୍ଡି ଗୁମାସ୍ତାଙ୍କ ହାତରେ ଗୁଞ୍ଜି ଦେଲେ । ମୁଣ୍ଡି ଗୁମାସ୍ତା ଆଉ ଦି' ଚାରିଜଣଙ୍କୁ ଧରି ସଉଦା କରିବାକୁ ବାହାରିଗଲେ ।

ତେଣେ ବେଂଗ ଦାସ ପାଖରେ ତା' ଗୁମାସ୍ତାମାନେ ପୁଡ଼ିଆ ଜମାଇବାରେ ଲାଗି ପଡ଼ିଥାନ୍ତି । ତାଙ୍କ ମୁଣ୍ଡି ଗୁମାସ୍ତା ହାତ ହଲାଇ କହିଲା —"ଆଜ୍ଞା ଚେଂଗ ଦାସ ତା' ଜୀବନଭରି ଆଉ କେବେ ଠିଆ ହବନି । ଏଇଥିରେ ଦେବାଳିଆ ହୋଇଗଲା । କୋଠାଟାକୁ ବନ୍ଧା ପକେଇ ଦେଇଛି । ଆଉ ପୁଅ ମୁକୁଳେଇବ ନା କୋଠା ଦେଖିବ । ସତ କହୁଛି, ଆପଣଙ୍କ ପଛରେ ଏତେ ଭୋଟର୍ ଅଛନ୍ତି ବୋଲି ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନଥିଲି । ଆଜ୍ଞା, ପନ୍ଦର ଅଣା ଭୋଟର୍ ଚେଂଗ ଠାରୁ ପଇସା ଖାଇଛନ୍ତି ଆଉ ଆମକୁ ଭୋଟ୍ ଦେଇଛନ୍ତି । ଏଥର ଭୋଟର୍‌ମାନେ ଖୁବ୍ ଚାଲାଖ ହୋଇ ଯାଇଛନ୍ତି । ଆମ ଭୋଟର୍‌ଯାକ ସମସ୍ତେ ଚେଂଗ ଶିକ୍‌ସାରେ ଯାଇଛନ୍ତି ଆଉ ମୋହର ମାରିଛନ୍ତି ଆମ ବାକ୍ସରେ । ମୁଁ ଯେତେ ଭୋଟର୍‌ଙ୍କୁ ପଚାରିଛି ସମସ୍ତେ ସେଇ ଗୋଟାଏ ଉତ୍ତର ଦେଇଛନ୍ତି—"ଆମେ ବେଂଗ ଦାସଙ୍କ ପଇସା ଖରଚ କରିବା କାହିଁ ? ସେ'ତ ଆମ ଲୋକ । ଚେଂଗକୁ ଖର୍ଚ୍ଚାନ୍ତ କରାଇବା; ତା' ସଂଗେ ସଙ୍ଗେ ଆମ ନିଜ ଲୋକକୁ ଭୋଟ୍ ଦେବା । ଏୟାକୁ କହନ୍ତି ପଲିଟିକ୍ସ୍ । ଆଉ ବି ଡାକପକାଇ ତା ସଂଗେ ଅପଡ଼ ହେବା କାହିଁ ? ବେଂଗ ଦାସଙ୍କ ଶିକ୍‌ସାରେ ଯାଇଥିଲେ ଚେଂଗ ଜାଣି ଯାଇଥାନ୍ତା

ଆମେ ବେଙ୍ଗ ଦାସଙ୍କୁ ଭୋଟ୍ ଦେଲୁ । ସେଇଠୁ ସେ ଗୋଟାଏ ଅହନ୍ତା ମନରେ ରଖିଥାଆନ୍ତା । ଏଗୁଡ଼ାକ ମୋଟଙ୍କ ପଲିଟିକ୍ସ ହୋଇଥାଆନ୍ତା । ଆମେ ଏମିତିଆ ପଲିଟିକ୍ସ ଖେଳିଛୁ ଯେ ଚେଙ୍ଗ ମନେ ମନେ ଖୁସି । ବେଙ୍ଗ ଦାସ ସହଜେ ତ ଖୁସି ହେବେଇ ହେବେ । କାରଣ ଆମେ ସମସ୍ତେ ତାଙ୍କୁଇ ଭୋଟ୍ ଦେଇଛୁ ।

"ଆମ ଭୋଟର୍‌ମାନେ କେଡ଼େ ବୁଦ୍ଧିଆ ଦେଖିଲ ! ଖାଇଲେ ଚେଙ୍ଗର, ଗାଇଲେ ବେଙ୍ଗ ବାବୁଙ୍କର । ଭୋଟ୍ ଗଣତିଟା ହେବାର କଥା ହେବ । ଶେଷରେ ସମସ୍ତେ ଶୁଣିବେ ବେଙ୍ଗ ଦାସେ ଚେଙ୍ଗ ଦାସଙ୍କୁ ଅଠସ୍ତରି ହଜାର ଭୋଟ୍‌ରେ ହରେଇ ନିର୍ବାଚିତ ହେଲେ । ଏବେ ଗୋଟାଏ ମାତବରିଆ ଭୋଜିର ଯୋଗାଡ଼ କରିବାକୁ ହେବ । ମୁଁ ହିସାବକିତାବ କରି ଠିକ୍ କରି ଦେଇଛି । ପୂସ 'ହ'ଟିଏ ଖର୍ଚ୍ଚ ହୋଇଯିବ । ସବୁ ସାହିର ମୁରବୀ ଆଉ ଭୋଟରମାନଙ୍କୁ ଡକାଯିବ, ତା' ଉପରେ ଆମ କର୍ମୀମାନେ ସହଜେ ଅଛନ୍ତି । ପଅରଦିନ ଭୋଜିଟା ଅଲବତ୍ କରିବାକୁ ହେବ । ଏଣୁ ଆଜି ଟଙ୍କା ନ ଦେଲେ ନ ଚଳେ ।"

ବେଙ୍ଗ ଦାସେ ମହା ହୁସିଆର । ଟଙ୍କା ନାଆଁ ଶୁଣିବା ମାତ୍ରେ କାଠପାଣି ଲଗେଇଲେ—"ନା ନା, ଫଳାଫଳ ନ ବାହାରିବା ଯାଏ କିଛି ବି ହୋଇପାରିବ ନାହିଁ । କଥାରେ ଅଛି—ଭୋଟ, ମରଣ, ବରଷା—କହି ନ ପାରନ୍ତି ପୁରୁଷା । କଅଣ ହେବ କିଛି ନ ଜାଣି ଆଗେଇବା ଉଚିତ୍ ନୁହେଁ । ହାଟ୍ ଦାଣ୍ଡରେ ଭଣ୍ଡିଆ ହେବା ହିଁ ସାର ହେବ । ବର୍ତ୍ତମାନ ପାଇଁ ସେ ଭୋଜି ଫୋଜିର ନାଁ ଧରନା ।"

ବେଙ୍ଗ ଦାସଙ୍କଠାରୁ ନଗଣବାଣୀ ଶୁଣି ତାଙ୍କ ଗୁମାସ୍ତାମାନେ ସେଠାରୁ ଚାଲିଯାଇ ଚେଙ୍ଗଦାସଙ୍କ ଗୁମାସ୍ତାମାନଙ୍କୁ ଭେଟିଲେ । ଦୁ' ଦଳଙ୍କର ଗୋଟାଏ ଗୁପ୍ତ ମିଳିତ ବୈଠକ ହେଲା । ସମସ୍ତେ ପ୍ରାୟ ଏକମତ ହୋଇଗଲେ ଯେ, ପୂର୍ଣ୍ଣ ଶୁକ୍ଳପକ୍ଷ ଚାଲିଗଲା । ଦୁଇ କଳାଚୋରିଆଙ୍କଠାରୁ ମନଇଚ୍ଛା ଝଡ଼େଇଲୁ । ନୋଟ୍ ଝାମ୍ପି ଝାମ୍ପି ହାତ ବଥେଇଗଲା । ଖାଇ ଖାଇ ଗଣ୍ଡି ଦୋହଲିଗଲା । ମନ ହଉଥିଲା ନିର୍ବାଚନଟା ଆଉ ଦୁ' ତିନି

ମାସ ଘୁଞ୍ଚ ଯାଇଥାନ୍ତା କି, ପୂର୍ଣ୍ଣିମୀ ଚନ୍ଦ୍ରକୁ ଅଧାବାଟରେ ବାନ୍ଧି ରଖିଦେଇ ଥାଆନ୍ତେ । ସବୁ କଳୁ ସରିଗଲା । ଯାହାଙ୍କୁ ଆଣି ବୋଲି କହୁଥିଲେ ଶହ ଶହ ଟଙ୍କା ହରି ପକାଉଥିଲା ସେ ଏବେ ଟଙ୍କାଟିଏ ଦେବାକୁ କି କୁନ୍ଥୁକୁନ୍ଥୁ ! ଏଇ ଦିନକ ମଧ୍ୟରେ ଯାହା କିଛି ଆଦାୟ କଲେ ରକ୍ଷା । ତେଣିକି ଜଣେ ଗାତରେ ଲୁଚିବ ତ ଆଉ ଜଣେ ଆକାଶରେ ଉଡ଼ିବ; ସେତେବେଳେ କାହାରି ଭେଟ ମିଳିବ ନାହିଁ । ମିଳିଲେ ବି ଚିହ୍ନି ପାରିବେ ନାହିଁ । ଏଣୁ ଏଇ ଶେଷଦିନ ପାଇଁ ଯେତିକି ମିଳିଲା ସେତିକି ସଇ । ଚେଙ୍ଗ ତ ଦେଡ଼ଶହ ଦେଇଛି । ବେଙ୍ଗ ନ ଦେଲେ ନ ଦେଉ । ଏଇ ଦେଢ଼ଶହରେ ସମସ୍ତେ ପାଟି ସୁଆଦ କରିନେବା । ଦିନକ ପରେ ଯିଏ ହେଲେ ତ ଜଣେ ଜିତିବ । ସେତେବେଳେ ତା' ଟଙ୍କାରେ ସେମିତି ପାଟି ସୁଆଦ କରାଯିବ । ପ୍ରସ୍ତାବଟି ମଧ୍ୟ ସଙ୍ଗେ ସଙ୍ଗେ କାର୍ଯ୍ୟକାରୀ ହୋଇଗଲା ।

× × ×

ପରଦିନ ଭୋଟ ଗଣତି ଆରମ୍ଭ ହେଲା । ଚେଙ୍ଗ ଦାସେ ସକାଳୁ କାଳୀ ଠାକୁରାଣୀଙ୍କ ଫଟୋ ଆଗରେ ଅଧିଆ ପଡ଼ି 'ମା-ମା' ବୋବାଇବାରେ ଲାଗିଲେ । ଆଉ ବେଙ୍ଗ ଦାସ ବି ଗୋଟିଏ ମହାଦେବଙ୍କ ଫଟୋ ଆଗରେ ଅଧିଆ ପଡ଼ି 'ବାବା-ବାବା' ରଡ଼ି ଛାଡ଼ିଲେ ।

ପ୍ରତି ଅଧଘଣ୍ଟାରେ ଗଣତି ଥାନରୁ ଲୋକ ଧାଇଁ ଆସି ଖବର ଜଣାଉଥାନ୍ତି । ସନ୍ଧ୍ୟାବେଳକୁ ଚେଙ୍ଗ ଦାସ ଓ ବେଙ୍ଗ ଦାସଙ୍କ ମିଳିତ ଫଉଜ ଆସି ଖବର ଦେଲେ ଯେ ଚେଙ୍ଗ ଦାସେ ୯୭ ଭୋଟରେ ବେଙ୍ଗଦାସଙ୍କୁ ପରାଜିତ କରି ନିର୍ବାଚିତ ହୋଇଗଲେ । ଚେଙ୍ଗ ଦାସେ କାଳୀଙ୍କ ଫଟକୁ କୁଣ୍ଢେଇ ଧରି ଆନନ୍ଦରେ ଗଡ଼ିଗଲେ । ଫୁଲଚନ୍ଦନରେ ଫଟୋଟାକୁ ବୁଡ଼େଇ ଦେଇ ସେ ଘର ଭିତରେ ଗୋଟାଏ ଧୂପକାଠି ପ୍ୟାକେଟ୍ ଲଗେଇ ଦେଲେ । ଘର ଆଖପାଖ ଚାରିଆଡ଼ ମହକିଗଲା ।

ତେଣେ ବେଙ୍ଗ ଦାସଙ୍କ ଘର ଶୂନଶାନ୍ । ହାରିଲା ଲୋକ ପାଖକୁ କିଏ ବା ଯିବ ! ସାନ୍ତ୍ୱନା ଦେଲେ ଓଲଟି କୋହ ଉବୁକି ଉଠିବ । ବେଙ୍ଗ ଦାସେ ଖବର ପାଇବା ମାତ୍ରେ ମହାଦେବଙ୍କ ଫଟ ଆଡ଼େ ଗୁହ୍ନିଲେ ।

ତାଙ୍କ ଗୋଡ଼ଆଡ଼୍ ସିର୍‌ସିର୍ ହୋଇ ରାଗ ଉଠି ମୁଣ୍ଡକୁ ଚଢ଼େଇ ଦେଲା । ବାଡ଼ିଟାଏ ଆଣି ଫଟୋ ଉପରେ କାଠେ ଦେଲେ । କାଚତକ ଟୁକୁରା ଟୁକୁରା ହୋଇ ଝଣଝାଣ ତଳେ ଅଜାଡ଼ି ହୋଇ ପଡ଼ିଲା । ନଙ୍ଗଳା ଫଟୋଟାକୁ କାନ୍ଥରୁ ଘୋଷାଡ଼ି ନେଇ ବାଡ଼ିଆଡ଼କୁ ଘୁଞ୍ଚିଦେଲେ ।

× × ×

ଶହ ଶହ ଲୋକ ଟେଙ୍ଗ ଦାସଙ୍କୁ ଶଙ୍ଖଳିବା ପାଇଁ ଧାଇଁ ଆସିଲେ; ବେକରେ ଫୁଲମାଳ ପିନ୍ଧେଇ ଦେଲେ । ଟେଙ୍ଗ ଦାସେ ସରକାରୀ ଘୋଷଣା ଯାଏ ଅପେକ୍ଷା କରିବାକୁ କହୁଥିଲେ । ହେଲେ ତାଙ୍କ କଥା ଶୁଣୁଛି କିଏ ? ଭଲକାମରେ ମୁହୂର୍ତ୍ତେ ବି ଅପେକ୍ଷା କରିବାର ନୁହେଁ । ସଙ୍ଗେ ସଙ୍ଗେ ଶୋଭାଯାତ୍ରା, ବାଣ ରୋଶଣିର ବ୍ୟବସ୍ଥା ହୋଇଗଲା । ତାଙ୍କ ସମ୍ବର୍ଦ୍ଧନାରେ ବେଙ୍ଗ ଦାସଙ୍କ କର୍ମୀ ଦେଖି ଟେଙ୍ଗ ଦାସେ ଉମା ଉମା ଆଖିରେ ଚାହିଁବାରୁ ତାଙ୍କ ମୁଣ୍ଡି ଗୁମାସ୍ତା ଫୁସୁଫୁସୁ କରି କାନରେ କହିଲେ—"ଆଜ୍ଞା, ଏଇମାନେ ବେଙ୍ଗ ଦାସର ଖାଇ ଆପଣଙ୍କର ଗାଇବାରୁ ଆପଣ ଜିତିଲେ । ଆପଣଙ୍କ ପାଖରେ ଆମେ ପଛ, ସେମାନେ ଆଗ । ସେମାନଙ୍କୁ ଅନାଦର କରନ୍ତୁ ନାହିଁ । ଏ ସବୁ ଗୁପ୍ତ କଥା । ଆମେ କେବଳ ଜାଣିଛୁ । ଅନ୍ୟ କେହି ଯାର ସୁରାକ୍ ବି ପାଇନାହାନ୍ତି ।"

ଆନନ୍ଦରେ ଅଧୀର ହୋଇପଡ଼ି ଟେଙ୍ଗ ଦାସେ ସେମାନଙ୍କୁ ଜଣ ଜଣ କରି କୁଣ୍ଢାଇ ପକାଇଲେ । ବୋମ୍ବାଜ ତୋଡା ହୋଇ ଫୁଟି କାନ ଅତଡ଼ା ପଡ଼ିଲା । କେତେକ ଅତି ଉତ୍ସାହୀ ଯୁବକ ଟେଙ୍ଗ ଦାସଙ୍କୁ କାନ୍ଧରେ ବସେଇ ଥୋଡ଼ାଏ ବାଟ ବୁଲେଇ ଆଣିଲେ । ଜମିଯାଇଥିବା ଲୋକମାନଙ୍କୁ ଟେଙ୍ଗ ଦାସେ ଆତ୍ମହରା ହୋଇ ଗୋଟିଏ ଭାଷଣଦେଲେ—"× × ଯେଉଁ ବିଦେଶୀ ଲୋକେ କହନ୍ତି ଯେ ଆମ ଭୋଟରମାନେ ନିରକ୍ଷର, ବୋକା, ଲଣ୍ଡୁଆ ଓ ବିବେକହୀନ, ସେଇ ବିଦେଶୀ ଲୋକେ ଅସଲ ଓଲୁଙ୍କ ବୋକ୍‌ଶୁବୁଢ଼ା । ପ୍ରକୃତରେ ଆମ ଭୋଟ୍‌ରମାନଙ୍କ ନୈତିକ ଚରିତ୍ର ପୃଥିବୀର ଯେକୌଣସି ସଭ୍ୟ ରାଷ୍ଟ୍ରର ଭୋଟରମାନଙ୍କଠାରୁ ଅଧିକ ଉନ୍ନତ । ଆମ ଭୋଟରମାନେ ସଚ୍ଚୋଟ ଲୋକଙ୍କୁ ଚିହ୍ନିପାରନ୍ତି, ଭଲ ଭେଲ ବାଛିପାରନ୍ତି । ଗଭୀର ଅନ୍ତର୍ଦୃଷ୍ଟିରେ ପ୍ରାର୍ଥୀମାନଙ୍କ

ଉଦ୍ଦେଶ୍ୟ ଜାଣିପାରନ୍ତି । ସେମାନେ ନିଜ ନିଜର ସିଦ୍ଧାନ୍ତରେ ମେରୁ ପରି ଅଟଳ ରହନ୍ତି। ଧମକ ଚମକ ବା ପ୍ରଲୋଭନରେ ଯୋଗୀପରି ଅବିଚଳିତ ରହନ୍ତି । ଜିତେନ୍ଦ୍ରିୟ ପରି କାମିନୀ କାଞ୍ଚନକୁ ଦୂରରୁ ବର୍ଜନ କରନ୍ତି । ଏତଦ୍ବ୍ୟତୀତ ଘେରାଓକାରୀମାନେ କେବଳ ଆମର ରାଜ୍ୟ ନୁହେଁ, ସାରା ଭାରତର ସମ୍ମାନକୁ ସାରା ପୃଥିବୀରେ ଅତି ଊର୍ଦ୍ଧ୍ୱକୁ ଉଠାଇ ଦେଇଛନ୍ତି । ବେଙ୍ଗ ଦାସେ ଯେପରି ଭାବରେ ଟଙ୍କାର ସୁଅ ଛୁଟାଇଥିଲେ ସେଥିରେ ମୋର ଅନେକ ବନ୍ଧୁ ଆତଙ୍କିତ ହୋଇ ଉଠିଥିଲେ । ମୁଁ କିନ୍ତୁ ସେମାନଙ୍କୁ ବୁଝାଇ ଦେଇଥିଲି—ତୁମମାନଙ୍କ ଆଶଙ୍କା ଅମୂଳକ । ଆମ ବିବେକୀ ଓ ଜାଗ୍ରତ ଘେରାଓକାରୀ ଭାଇମାନଙ୍କୁ ମୁଁ ଭଲଭାବରେ ଚିହ୍ନିଛି । ସେମାନେ ଧନକୁ ବର୍ଜନ କରି ଯୋଗ୍ୟଜନଙ୍କୁ ନିଶ୍ଚୟ ଭୋଟ୍ ଦେବେ । ସେମାନଙ୍କୁ ଯେଉଁ ଆଶ୍ୱାସନା ମୁଁ ଦେଇଥିଲି ତାହା ଆଜି ମୋର ନମସ୍ୟ ଘେରାଓକାରୀ ଭାଇମାନଙ୍କ ଦ୍ୱାରା ନିର୍ଭୁଳ ସତ୍ୟ ରୂପେ ପ୍ରମାଣିତ ହୋଇଛି । ଏ ବିଜୟ ଆଜି ମୋର ବିଜୟ ନୁହେଁ, ଏ ବିଜୟ ମୋର ନମସ୍ୟ ଉଚ୍ଚକୋଟୀର ନୈତିକତାବିଶିଷ୍ଟ ବିବେକୀ ଘେରାଓକାରୀ ଭାଇମାନଙ୍କ ବିଜୟ । କେଉଁ ପାଷଣ୍ଡ, ମୂର୍ଖ, ଅବିବେକୀ କହେ ଯେ ଆମ ଘେରାଓକାରୀ ଭାଇ-ମାନେ ନିର୍ବୁଦ୍ଧିଆ ଓ ନିରକ୍ଷର ? ଏପରି ପାଷଣ୍ଡମାନଙ୍କୁ ମୁଁ ବଜ୍ର ଗମ୍ଭୀର କଣ୍ଠରେ କହିବି—ଆମ ଘେରାଓକାରୀ ଭାଇମାନେ ସିନା ବିଦେଶୀ ଶାସକମାନଙ୍କ ଦ୍ୱାରା ପ୍ରତିଷ୍ଠିତ ସ୍କୁଲ କଲେଜରେ ପଢ଼ିନାହାନ୍ତି; କିନ୍ତୁ ସେମାନେ ନିଜ ନିଜ ନୈତିକତା ଓ ଆଧ୍ୟାତ୍ମିକତା ସ୍କୁଲରେ ଯେଉଁ ଶିକ୍ଷାଲାଭ କରିଛନ୍ତି ତାହା ଯେ କେଡ଼େ ମହାନ୍ ତାହା କଥାରେ କହିହେବନି । ସେ ଶିକ୍ଷା ତୁଳନାରେ ମାମୁଲି ସ୍କୁଲ କଲେଜର ଶିକ୍ଷା ଯେ କେଡ଼େ ତୁଚ୍ଛ ତାହା ବି କଥାରେ କହି ହେବନି । ଆଜି ମୁଁ ଘେରାଓକାରୀ ଭାଇମାନଙ୍କ ନିକଟରେ ଆଜୀବନ ଋଣୀ । ମୁଁ ପ୍ରତିଜ୍ଞା କରି କହୁଛି—ଆପଣମାନଙ୍କ ସେବାରେ ମୁଁ ମୋର ସମସ୍ତ ସାମର୍ଥ୍ୟ, ସମସ୍ତ ଶ୍ରମ ନିୟୋଜନ କରିବି ।"

ହଠାତ୍ ବେଙ୍ଗ ଦାସଙ୍କ ପାଟି ବନ୍ଦ ହୋଇଗଲା । ମୁହୂର୍ତ୍ତକ ମଧ୍ୟରେ ସବୁ କିଛି ଓଲଟପାଲଟ ହୋଇଗଲା । ଚଳଚ୍ଚିତ୍ରର ଦୃଶ୍ୟ ପଟ୍-କରି ବଦଳିଗଲା ପରି ସେ ଥାନର ଦୃଶ୍ୟ ନିମିଷକ ମଧ୍ୟରେ ବଦଳିଗଲା । ସେଠି ବାଟ ଦେଇ ଦଳେ ଲୋକ 'ବେଙ୍ଗ ଦାସ ଜିନ୍ଦାବାଦ, ଆମର

ଜନତା ଜିନ୍ଦାବାଦ, ଜିନ୍ଦାବାଦ, ଜିନ୍ଦାବାଦ, ଗାଈବାଛୁରି ଜିନ୍ଦାବାଦ, ଜିନ୍ଦାବାଦ୍, ଜିନ୍ଦାବାଦ୍, ଆଦି କାନଫଟା ଧ୍ୱନି ଦେଇ ଚାଲିଗଲେ । ବୁଝ୍ ବୁଝ୍—ଭୁଲ୍‌ରେ ଗୋଟାଏ ବଡ଼ା ଗଣ୍ତି ହୋଇପାରି ନଥିଲା । ସେହି ବଡ଼ା ଗଣ୍ତିରେ ବେଙ୍ଗ ଦାସ ଚେଙ୍ଗ ଦାସର ୯୭ ଭୋଟ୍‌କୁ ଅତିକ୍ରମ କରି ଅଧିକ ୧୪୦ ଭୋଟ୍‌ରେ ଜୟଲାଭ କଲେ । ସଙ୍ଗେ ସଙ୍ଗେ ଏହା ସରକାରୀ ଭାବରେ ଘୋଷିତ ହୋଇଗଲା । ଚେଙ୍ଗ ଦାସେ ସେଇଠି ଲଥ୍‌କରି ବସି ପଡ଼ିଲେ । ତାଙ୍କ ମୁହଁରୁ କଥା ବାହାରିଲାବେଳକୁ ଅନ୍ତରଙ୍ଗ ୪।୫ ଜଣ ବନ୍ଧୁଙ୍କ ଛଡ଼ା ଆଉ ସମସ୍ତେ ବେଙ୍ଗ ଦାସଙ୍କ ଘରଆଡ଼େ ଧାଇଁ ଯାଇଥିଲେ ।

ମନ ଦୁଃଖରେ ଘରକୁ ଫେରୁ ଫେରୁ ଚେଙ୍ଗ ଦାସେ ତାଙ୍କ ସଙ୍ଗୀକୁ କହିଲେ—"ଓଃ ! ଏ ଠାଉଟର ଭୋଟର୍‌ଗୁଡ଼ାକୁ ଯିଏ ଚିହ୍ନି ନଥିବ ସେ ନିଜ ବାପକୁ ବି ଚିହ୍ନିପାରିବନି । ଉଖିଚଟା ଭୋଟର୍‌ଗୁଡ଼ାକ ସାପଠୁଁ ବଳି ଅବିଶ୍ୱାସୀ, ବାଘଠୁଁ ବଳି ଭୟଙ୍କର, ଶିଆଳଙ୍କଠାରୁ ବଳି ଚତୁର । ପାଠଶାଠ ତ ପଢ଼ିଲେନି; ଅନବରତ ଶିକାର, ଡାକୁଗିରି ଓ ଠକେଇ କାମରେ ମାତିଲେ, ଏଗୁଡ଼ା ଭଲକାମ କରିବେ କୁଆଡ଼ୁ ? ସ୍ୱାଙ୍କୁ ଦୟାମାୟା ନାହିଁ । ଛତରଖିଆଏ ଯେତେବେଳେ ବିପଦରେ ପଡ଼ିଥିବେ ସେତିକିବେଳେ ତାଙ୍କ ଉପରେ କୋରଡ଼ା ମାଡ଼ ଦେବା ଦରକାର । ନୀଚ କୁଳରେ ତ ଜନ୍ମ ହେଲେ, ତାଙ୍କର ବିବେକ ଆସିବ କୁଆଡ଼ୁ ? ଏଗୁଡ଼ା ପଇସା ପାଇଲେ ବିଷ୍ଟାକୁ ବି ପାଟିରେ ଦୂରେଇ ଦେବେ । କୁତ୍ସିତ ଜାନୁଆରଗୁଡ଼ାକ ରାଜନୀତିର 'ର' ଅକ୍ଷର ବି ଜାଣି-ନାହାନ୍ତି, ଆଉ ମଣିଷ ଚିହ୍ନିବେ କୁଆଡ଼ୁ ? ଜାନୁଆର ତ; ଯିଏ ଆଗରେ ଘାସ ଢାଳିଦେଇଲା ତା'ରି ପଛେ ପଛେ ଗୋଡ଼େଇବେ । ଏଇ ନିରକ୍ଷର ଭୋଟରମାନଙ୍କ ଲାଗି ଆମ ଦେଶ ସାରା ପୃଥିବୀରେ ନିନ୍ଦିତ ହେଉଛି—ଷାରଣ୍ଟିସ୍ତମାନେ ନୋଟ୍ ନେଇ ଭୋଟ୍ ଦିଅନ୍ତି । ଇସ୍‌ କି ଦୁର୍ନାମ ! ହଇଜା ବସନ୍ତରେ ଏଗୁଡ଼ାକ ପୋଛି ହୋଇଯିବା ଦରକାର ।"

ବନ୍ଧୁମାନେ 'ହୁଁ ହୁଁ' ମାରି ଚାଲିଥାନ୍ତି । ତାଙ୍କ ପାଟି ଭିତରେ ସତେ ଯେପରି କିଏ ଜଣେ 'ହୁଁ'ର ଗୋଟାଏ ରେକର୍ଡ଼ ଖଞ୍ଜି ଦେଇଛି ।

ଚେଙ୍ଗ ଦାସେ ତରବର ହୋଇ ନିଜ ଘର ଭିତରକୁ ପଶିଲାବେଳେ ପହିଲେ କାଳୀଙ୍କ ଫଟ ଉପରେ ନଜର ପଡ଼ିଗଲା । କ୍ରୋଧରେ ଫଟଟାକୁ କାନ୍ଥରୁ ଝିଙ୍କି ଆଣି ତଳେ କଚା ଦେଲେ । କାଚଟା ଚୂନା ହୋଇଯାଇ ଘରସାରା ବିଛେଇ ହୋଇଗଲା । ବନ୍ଧୁ ଜଣକ ବହୁତ ବହୁତ ପ୍ରବୋଧ ଦେଇ ବିଦାୟ ନେବା ପରେ ଚେଙ୍ଗଦାସେ ତାଙ୍କର ମୁଣ୍ଡି ଗୁମାସ୍ତାଙ୍କୁ ଖୋଜିଲେ । ହେଲେ ସେ ଆଖପାଖରେ କେଉଁଠି ନଥିଲା । ସେ ଅନ୍ୟ ଗୁମାସ୍ତାମାନଙ୍କ ସହ ବେଙ୍ଗ ଦାସଙ୍କର ତାରିଫ୍ କରିବାରେ ଓ ଖୋଦ୍ ବେଙ୍ଗ ଡାସଙ୍କ ସହ ଖତଗଦାକୁ ଫୋପଡ଼ା ହୋଇଥିବା ମହାଦେବ ଫଟଟିକୁ ଅତି ଉଦ୍‌ବେଗର ସହିତ ଖୋଜୁଥିଲେ । ଗୋଟିଏ ଭୁଲ ଗୋରୁ ସେ ଫଟଟିକୁ ଗ୍ରେବାଇ ଗର୍ଭସାତ୍ କରିଥିବା କଥା କାହାକୁ ଜଣା ନଥିଲା ।



# ॥ ଦୈବଫଳ ବଣ୍ଟରେ ॥

ନିର୍ବାଚନ ପ୍ରାର୍ଥୀପତ୍ର ଉଠାଣି ଦିନ ବହୁ ପ୍ରାର୍ଥୀ ଝିମା କୁକୁଡ଼ାଙ୍କ ପରି ଫଟ୍‌ଫାଟ୍ ପଡ଼ିଗଲେ । ବାକି ପ୍ରାର୍ଥୀମାନଙ୍କ ଭିତରୁ ଓହରିଯିବାର ଶେଷ ତାରିଖ ଦିନ ଆକସ୍ମିକ ବୈରାଗ୍ୟର ଉଦୟ ଯୋଗୁ ଜଣେ ଲେଙ୍ଗୁଟି ମାରି ରଣଭୂମି ପରିତ୍ୟାଗ କଲେ । ବୈରାଗ୍ୟଟା ଯେ ଆଃର୍‌ମାର୍କା ନିରୁତା ଏଥିରେ ସନ୍ଦେହ ନଥିଲା । ବୈରାଗୀମାନେ ଯେତେବେଳେ ଦେଖନ୍ତି ଯେ ଘରକରଣା ସୁଖ ବହୁ କଷ୍ଟରେ ମିଳୁଛି ଅଥଚ ଗେରୁଆ ପିନ୍ଧା ବୈରାଗୀ ସାଜିଲେ ବେଶ୍ ଆରାମ ମିଳୁଛି, ଖାଇବା ପିଇବାର ଚିନ୍ତା ଆଉ ରହୁନି, ସେତେବେଳେ ସେମାନେ ଲେଙ୍ଗୁଟି ମାରି ଗେରୁଆ ପିନ୍ଧି ବୈରାଗ୍ୟକୁ ହାତରେ ଧରି ଘର ଛାଡ଼ି ପଳାନ୍ତି । ନିର୍ବାଚନ ବୈରାଗୀମାନେ ପରିଷ୍କାର ଦେଖିଲେ—ନିର୍ବାଚନ ରଣଭୂଇଁକୁ ଡେଇଁବା ଅର୍ଥ ବହୁ ଜଞ୍ଜାଳ ଓ ଅର୍ଥହାନିକୁ କେବଳ ନିମନ୍ତ୍ରଣ କରିବା ନୁହେଁ; ବହୁ ଠାଉଟରଙ୍କ ଖପରରେ ପଡ଼ିବାକୁ ହେବ, ବିପକ୍ଷଦଳ ହାରା ତା'ର ସବୁ ଗୋଇ ଦାଣ୍ଡରେ ଖୋଲା ହେବା କଥାକୁ ବରଦାସ୍ତ କରିବାକୁ ହେବ । ଏତେ ଝିନ୍‌ଝଟରେ ସେ ପଶିବ କାହିଁକି ? ନିଶ୍ଚୟ ଯେ ଜିତିବ ତା'ର କଣ ସ୍ଥିରତା ଅଛି ? ଏହା ଅପେକ୍ଷା ଓହରିଯିବା ପାଇଁ ଭଲଆର ପାଞ୍ଚ ହଜାର ଟଙ୍କାପସ୍ତଟା ନିଶ୍ଚୟ ଅଧିକ ସୁଖଦାୟକ । ବାସ୍ ସେତିକରେ ବୈରାଗ୍ୟ ତା' ଉପରକୁ ବାଘ କୁଦିଲା ପରି କୁଦିପଡ଼ିଲା ଆଉ ତାକୁ ଘୋଷାଡ଼ି ଘୋଷାଡ଼ି ରଣଭୂଇଁରୁ ନେଇଗଲା । ସର୍ବଶେଷରେ ରହିଲେ ରଣଭୂଇଁରେ ଦୁଇ ଜଣ—ଭାଲୁ ଦାସ ଓ ହନୁ ଉତ୍ପାଡ଼ି । ଦୁହେଁ ଟାଣୁଆ ଯୋଦ୍ଧା । କେହି କାହାକୁ ଊଣା ନୁହନ୍ତି । ଦୁହିଁଙ୍କ ଲୁହା ସିନ୍ଦୁକରେ ତାଡ଼ା ତାଡ଼ା ଶହେ ଟଙ୍କିଆ ନୋଟ୍ ସବୁ ଶୁଦ୍ଧ ହୋଇ ଅଣନିଃଶ୍ୱାସୀ ହେଉଥାନ୍ତି । ଦୁହିଁଙ୍କ ପାଖରେ ଦୁଇଟା ଜବର ଠାଉଟର ଗୋଠ । ଧର୍ କହିଲେ କାମୁଡ଼ି ପକେଇବେ, ଉଠ କହିଲେ ତାଳଗଛ ଉପରେ ଚଢ଼ିଯିବେ । ପଡ଼୍ କହିଲେ

କୂଅକୁ ଡେଇଁ ପଡ଼ିବେ । ଏଣୁ ଲଢ଼େଇଟା ଯେ ଦାନ୍ତକୁ ଦାନ୍ତ; ନଖକୁ ନଖରେ ଲାଗିବ, ସେଇଟା ମରଣ ପରି ନିଶ୍ଚିତ । ଭୋଟ ଦେବା ଦିନ ଆଉ ମାତ୍ର ମାସଟାଏ । ଏହାରି ଭିତରେ ସମସ୍ତ ପ୍ରକାର ଲଢ଼େଇର ବ୍ୟବସ୍ଥା କରିବାକୁ ହେବ । ମନ୍ତ୍ରୀଜୀ ତମାମ ଗ୍ରେଟ ବଡ଼ ହୋଇ ଅନେକ ଅଫିସ୍ ଖୋଲିଗଲା । ଦୁଇ ପ୍ରାର୍ଥୀଙ୍କର ଦୁଇଟା ବଡ଼ ଶିବିର ଖୋଲିଗଲେ । ଏ ଦୁଇ ଶିବିରରେ ମଣିଷଙ୍କ ଅପେକ୍ଷା ଛେଳି କୁକୁଡ଼ାଙ୍କ ରଡ଼ି ଦିନକୁ ଦିନ ବଢ଼ିବାକୁ ଲାଗିଲା । ଭାଲୁ ଓ ହନୁଙ୍କ ସେନାପତିତ୍ୱରେ ଦୁଇ ଶିବିରରୁ ଯୁଦ୍ଧ ନିୟନ୍ତ୍ରଣ କରାଗଲା ।

ଭାଲୁ ଦାସ ଶିବିରରେ ଟିକନିଖି ଯୋଜନା ହୋଇ ବିଭାଗମାନ ସୃଷ୍ଟି କରି ଦିଆଗଲା । ପ୍ରତ୍ୟେକ ବିଭାଗରେ ଜଣେ ମୁଖିଆ, ଚାରିଜଣ ଉପମୁଖିଆ ଆଉ ଦଶଜଣ ବୋଲକରା ହାତ ମୁହଁ ପକେଇ ରହିଗଲେ । କାମ ଏକାବେଳେକେ ଜର୍ମାନୀ ମେସିନ ପରି କାମ କଲା ।

ଖିଆଣ ବିଭାଗର ମୁଖିଆ ନିର୍ବାଚନମଣ୍ଡଳୀସ୍ଥ ୪୦ ଗାଆଁରେ ପାଳକରି କେଉଁ କେଉଁ ଦିନ ଭୋଜି ଭାତର ବ୍ୟବସ୍ଥା ହେବ ତାହା ଆଗରୁ ଠିକଣା କରି ଟିପାଖାତାରେ ଟିପି ପକେଇଲେ । କଖାରୁ ଓ ସାରୁରେ ଶିବିରର ଗୋଟାଏ ବଡ଼ଘର ପୂରିଗଲା । ଭାଲୁ ଦାସେ ମୁଖିଆକୁ ନିର୍ଜନ ସ୍ଥାନକୁ ଡାକି ନେଇ ଗୁପ୍ତ ମନ୍ତ୍ର ଦେଲେ—"ଦେଖ, ଗାଆଁ ଲୋକଗୁଡ଼ାକ ଘରେ ତିଅଣ ରାନ୍ଧୁଣା । ମାଗଣା ପାଇଲେ—ଜଣେ ଜଣେ ଲୋକ ହାଣ୍ଡିଏ ତିଅଣ ଗେଫି ଦେବେ । ତିଅଣରେ ଜହରି ଲଙ୍କା ଆଚ୍ଛା କରି ବାଟି ଗୋଳେଇ ଦେବ । ଭାତରେ ଟିକିଏ ହଳଦୀ ପକେଇଦେବ । ପ୍ରତି ୨୦ କଳେ ଚାଉଳ ପିଚ୍ଛୁ ଅଧକଳେ ଚିନି ଛାଡ଼ିଦେବ । ପତର ପାଣି ପକେଇବା ପୂର୍ବରୁ କଥା ପ୍ରସଙ୍ଗରେ କହିଦେବ ଯେ ଲଣ୍ଡନର ଜଣେ ବଡ଼ ଡାକ୍ତର ଏବେ ଗବେଷଣା କରି କହିଛନ୍ତି ଯେ ଓଡ଼ିଶା ଗ୍ରାମବାସୀଙ୍କର ବହୁମୂତ୍ର ରୋଗ ପ୍ରତିରୋଧଶକ୍ତି କ୍ରମେ ହ୍ରାସ ପାଉଛି । ଭାତରେ ବେଶି ଚିନି ମିଶେଇ ଖାଇଲେ ବହୁମୂତ୍ର ରୋଗ ଶୀଘ୍ରକରି ମାଡ଼ ବସୁଛି ।

ବହୁମୂତ୍ର ରୋଗର ଭୟାବହତା ବିଷୟରେ ମଧ୍ୟ ଗୋଟାଏ ବକ୍ତୃତା ଦେଇଦେବ । କିଏ କେମିତି ଟାହୁଲି କରି ଦି' ଚାରିପଦ କହି ଦେଇପାରେ ।

ଖବରଦାର ତା' ଉପରେ ରାଗିବ ନାହିଁ । ବରଂ ହସି ହସି ଦୁ'ପଦ ଗୁଣ୍ଠୁ କଥା ତାକୁ କହିବ । ଟିପାଖାତାରେ ତା' ନାଆଁ ଟିପିକି ରଖିବ । ଭୋଟପରେ ସୁଧ କଳନ୍ତର ସହ ତାର ବଦଳା ନେବା । ଉପଦେଶଗୁଡ଼ାକ ଗିଳି ପକାଇ ମୁଖିଆ, ଉପମୁଖିଆ ଓ କେତେକ ବୋଲକରାଙ୍କ ସଂଗେ କର୍ମକ୍ଷେତ୍ରକୁ ଚାଲିଗଲା ।

ଅବକାଶ ସମୟରେ ନବନିଯୁକ୍ତ ମୁଖିଆକୁ ଭାଲୁଦାସେ ଉପଦେଶ ଦେଲେ—"ଦେଖ, ଏ ଜସ୍ବୁସୁଆଲା ମାଲ ଖରିଦ କଲେ ଆମକୁ ପୋଷେଇବ ନାହିଁ । ଖାଣ୍ଟି ଗଡ଼ଜାତ ରଖା ମହୁଲ ଓ ହାଣ୍ଡିଆ ମୁଁ ଯୋଗାଡ଼ କରିଛି । ଆଉ ଦିନେ ଦୁ' ଦିନେ ଧାନ ଟ୍ରକ ଭିତରେ ଆସିବ । ଶସ୍ତାକୁ ଶସ୍ତା, କିନ୍ତୁ ନିଶା କଡ଼କ୍‌ଚୁର୍‌ । ଅଧେ ମାଲକୁ ଅଧେ ପାଣି । ତେବେ ବି ନିଶା ହେବ । ନିଶା ହେଲାନି ବୋଲି ଯଦି କେହି କହେ ତେବେ ତାକୁ ବୁଝାଇଦେବ—କଡ଼ା ମାଲରେ ଯକୃତ (ଲିଭର୍‌) ରୋଗ ବେଶି ହେବାରୁ ସରକାର ମାଲକୁ ଟିକିଏ କାଉଳା କରି ଦେଇଛନ୍ତି । ମାଲ ପିଇବ ମଉଜ କରିବାକୁ । ରୋଗ କଣିବାକୁ ନୁହେଁ । ଓ ! କଡ଼କଚୁର୍‌ ମାଲ ଯେତେଜଣ ପିଉଛନ୍ତି, ସମସ୍ତଙ୍କ ଯକୃତରେ କର୍କଟ ରୋଗ (ଲିଭର୍‌ କ୍ୟାନସର୍‌) ବସା ବାନ୍ଧୁଛି । ଶ୍ରେଷ୍ଠ ଖଟିମାନଙ୍କରେ ମାଲ ସାଇତି ରଖିବ । ସେଇଠିକୁ ଭକ୍ତମାନଙ୍କୁ ଡାକି ନେଇ ମାଲ ପିଲେଇବ । ସବୁ ଗାଁର ଠାକୁର ଘରେ ପଞ୍ଚାନନମେଳା ଆରମ୍ଭ କରି ଦେଇ ଗଞ୍ଜେଇ, ଚିଲମ ଯୋଗେଇ ଦେବ । ଆଠଗଡ଼ ଶ୍ରେଷ୍ଠ ଗଞ୍ଜେଇକଳିର ଓଳିଆ ତିଆରି କରି ଆଗରୁ ରଖିଛି । ଗଞ୍ଜେଇ କଳି ଦେବାରେ ଊଣା କରିବନି । ଖୁବ୍‌ କମ୍‌ ଦାମରେ ମୁଁ ସେତକ ସଂଗ୍ରହ କରିଛି । ଆଉ ଦେଖ, ଭଲ ପାକିସ୍ଥାନ ଶ୍ରେଷ୍ଠ ଅଫିମ ଦୁ'କିଲୋ ରଖିଛି । ଆଗ ଆଗ ଆପୁଆ ଗୋଲିଅରମାନଙ୍କୁ ଠାବ କରି ତାଲିକାଭୁକ୍ତ କରି ପକାଇବ । ଫି ଲୋକ ଯେତିକି ଖାଏ ତାକୁ ସେତିକି ଦବ, ମଝିରେ ମଝିରେ ଦିନେ ଗପ୍‌ମାରିଯିବ, ଆପୁଆ ଗୋଲିଅରମାନେ ଉହଳ-ବିକଳ ହୋଇଯିବେ । ପରଦିନ ଦେଇ କହିବ—ତମ ବିକଳ ଦେଖି ପରା ମୁଁ ଭାଲୁଦାସଙ୍କୁ ଯାଇ କହିଲି । ସେ ଦୟାବନ୍ତ ଆପୁ କିଣି ମୋ ହାତରେ ପଠାଇ ଦେଲେ । ଦେଖ, ତାଙ୍କୁ ଭୋଟ ଦବଟି, ସେ ଭୋଟରେ ଜିତିଲେ ତୁମର ଆପୁ ଚିନ୍ତା ଆଉ ରଖେଇ ଦେବେନାହିଁ । ଦେଖ

ଆପୃଆମାନଙ୍କୁ ଲୁଚ ରହିଥିବ । ସନ୍ଧ୍ୟାବେଳେ ସେମାନଙ୍କ ନାକରୁ ପାଣି ବୋହିବା ଆରମ୍ଭ ହେଲେ ତାଙ୍କ ପାଖରେ ପହଞ୍ଚି ଆସୁ ଦେବ ।"

ଅବକାଶ ବିଭାଗର କର୍ମୀମାନେ ଚାଲିଯିବା ପରେ ଝୁଲୁଦାସେ ପ୍ରଚାର ବିଭାଗର କର୍ମୀମାନଙ୍କୁ ବିଶେଷ ତାଲିମ ଦେଇ କହିଲେ— "ଦେଖ ଆମେ କଅଣ କରିବା କଅଣ ନ କରିବା, ସେସବୁ ବିଷୟରେ ଊଁ ଚୁଁ କିଛି କହିବ ନାହିଁ । କଳ ଲୋକ ଉପରେ ଥାଇ କରୁଛି । ଆମେ ସବୁ ନିମିତ୍ତ ମାତ୍ର । ତେଣୁ ଆମେ ଏସା କରେଙ୍ଗା ତେସା କରେଙ୍ଗା କହିବା ମୂର୍ଖାମିର ପରିଚୟକ । କହିଦେଇ କରି ନ ପାରିଲେ ଲୋକ ବସେଇ ଉଠେଇ ଦେବେନି । ଖବରକାଗଜବାଲାଙ୍କୁ ଠାହୁଲି କରିବାକୁ ଖୋରାକ ମିଳିବ । ବିଜୁବାବୁ ଟାଇଲ ଘର ପାଇଁ ଯେଉଁ ହୀନଅବସ୍ଥା ଭୋଗିଛନ୍ତି ତୁମେ କଅଣ ଜାଣିନ ? ଏଣୁ କରିବା ନ କରିବା କଥା ଗାତରେ ପୋତ । ହନୁ ଛିହାଡ଼ର ସବୁ ଗୁମର କଥା ମୁଁ ଟିପି ରଖିଛି । ସେ ଯୋଉ ସୁକରକୁ ଚଢ଼ାଇଦେଇଥିଲା ତା'ରଠାରୁ ସମସ୍ତ ଗୁପ୍ତ ଖବର ସଂଗ୍ରହ କରିଛି । ନନାକାଣ୍ଡ ମକଦ୍ଦମାରେ ଜେଲଯାଇ ରହେଇଦେଲି କଅଣ କି ସେ ସ୍ୱାଧୀନତା ସଂଗ୍ରାମରେ ଜେଲ ଯାଇଛି । ଦୁଇ ଦୁଇଥର ତହବିଲ୍ ତୋସରପରେ ଜେଲ୍ ଜୋରିମାନା ହୋଇଛି । ସବୁ କେସ୍‌ର ନମ୍ବର, ତାରିଖ ମୁଁ ଟିପି ରଖିଛି । ଖାଲି ସେତିକି ନୁହେଁ, ତା'ର କେତେଟା ନାରୀ ଧର୍ଷଣର ଗୁପ୍ତ ଫଟୋ ମଧ୍ୟ ରଖିଛି । ସେଗୁଡ଼ିକ ଛାପିଦେବ । ପ୍ରଚାରବେଳେ ସବୁ ଗୁମର କଥା କହି ଫଟୋ ରୁ ଖଣ୍ଡିଏ ବାଣ୍ଟିଦେବ । ପୁଅ ସେଇଠି ଖତମ ପାଇଯିବ । ପଦାକୁ ବାହାରିବ ନା ମୁହଁ ଦେଖେଇବ ।"

ପ୍ରଚାରବିଭାଗିଆମାନେ ଯିବାପରେ ଅମୋଘ ଅସ୍ତ୍ରାଗାର ବିଭାଗର ଏକମାତ୍ର ବିଶ୍ୱାସୀ କର୍ମୀଙ୍କୁ ଖୁବ୍ ଗୁପ୍ତରେ କହିଲେ— "ଦେଖ, ଏ ଅମୋଘ ଅସ୍ତ୍ରର ଚାବିକାଠି ତୁମରି ହାତରେ ରହିଲା । ଭୋଟଦେବାର ଠିକ୍ ପୂର୍ବଦିନ ରାତି ୧୨ଟା ପରେ ତୁମେ ଜିପ୍‌ରେ ପ୍ରତି ଗାଁ'ର ମୁଖିଆମାନଙ୍କ ଘରକୁ ଯିବ । ପ୍ରତ୍ୟେକଙ୍କ ହାତରେ ହଜାରେ ଲେଖାଏଁ ଧରେଇ ଦେଇ କହିବ—ଏଇଟା ଭେଡ଼ ଅଡ଼େଇ

ଖର୍ଚ୍ଚ । କାଲି ବଡ଼ସକାଳୁ ଭେଡ଼ ଭୋଟରମାନଙ୍କୁ ଅଡ଼େଇ ନେଇ ଭାଲୁଦାସଙ୍କ ଗୁହାଳରେ ଯୋଗରି ପୂରେଇ ଦିଅନ୍ତୁ । ଆଉ ଗୁଣ୍ଡା ଲଫଙ୍ଗା, ଲଙ୍ଗଳା, କଟୁରିଆ ଯେତେ ଅଛନ୍ତି ସମସ୍ତଙ୍କ ହାତରେ କୋଡ଼ିଏ ଲେଖାଏଁ ଗୁଞ୍ଜି ଦେଇ କହିବ—ଏଇଟା ସାମାନ୍ୟ ପାନଖିଆ, ଭୋଟରେ ଜିତିଲେ ଭାଲୁଦାସେ ତମ ପକେଟ ଗରମ କରିଦେବେ । ଭେଡ଼ ଭୋଟରମାନଙ୍କୁ କିନ୍ତୁ କହିବ—ଭାଲୁଦାସ ଟଙ୍କା ପାଇବ କୁଆଡ଼ୁ ? ଏ ସବୁ ତିହାଡ଼ିନନାର ପ୍ରଚାର—ଭାଲୁଦାସ ଟଙ୍କା ବାଣ୍ଟୁଛି । ଲୋକେ ଟଙ୍କା ପାଇଁ ଭାଲୁଦାସ ପାଖକୁ ଧାଇଁବେ । ଟଙ୍କା ନପାଇ ଭାଲୁଦାସ ଉପରେ ରାଗିଯିବେ । ତିହାଡ଼ିନନା ଭୋଟତକ ସୁନ୍ତିଖୁରୁରେ ଗୋଟେଇ ନେବ । ତମମାନଙ୍କୁ ଭଣ୍ଡେଇ ଭୋଟ ମାରିନେବାର ଏକ ଫନ୍ଦି । ତୁମେମାନେ ହନୁ ତିହାଡ଼ି ପାଲରେ ପଡ଼ି ଗୋଟିଏ ଗରିବର ବନ୍ଧୁ, ନିସ୍ବାର୍ଥପର ଦେଶସେବକ, ଚରିତ୍ରବାନ୍ ଓ ଉତ୍ସାହୀ ଉଚ୍ଚକୋଟୀର ରାଜନୀତିଜ୍ଞ ଭାଲୁଦାସଙ୍କୁ ଦେଶ ଓ ଦଶର ସେବା କରିବାକୁ ସୁଯୋଗ ନଦେବ ନ ହିଁଅ । ନିଜର ହାନି କରିବ ତ କର । ପଛରେ କିନ୍ତୁ ପସ୍ତାଉଥିବ, ନେଡ଼ିଗୁଡ଼ କହୁଣିକୁ ବୋହିଯାଇଥିବ । ପାଞ୍ଚ ବର୍ଷ ଯାଏ କାନ୍ଦୁଥିବ । ଭାଲୁଦାସ ପାଖରେ ଟଙ୍କା ନାହିଁ, ସେ ଦେଇପାରିବ ନାହିଁ । ଟଙ୍କା ନେଇ ଭୋଟ ବିକିବାର ଇଚ୍ଛା ତ ହନୁ ତିହାଡ଼ି ପାଖକୁ ଯାଅ । ସେ ଦୁଇଟା ଟଙ୍କା ଦେଇ ତମଠୁଁ ଭୋଟ ନେବ, ତା'ପରେ ଗାଦିରେ ବସି ଦୁଇରେ ପେଡ଼ାଏ ଶୂନ ବସାଇ ତମଠୁଁ ଆଦାୟ କରିନେବ । ସେତେବେଳେ ବୋବାଉଥିବ—ଦରଦାମ୍ ବଢ଼ିଲା, ସବୁ ଖାଇବା ଜିନିଷରେ ଅପମିଶ୍ରଣ ହେଲା, ଅଖାଦ୍ୟ ଖାଇ ଲୋକେ ରୋଗୀ ହେଲେ ଇତ୍ୟାଦି । ହେଲେ ଆଉ ଶୁଣିବାକୁ କେହି ନଥିବେ ବାପଧନ । ଟଙ୍କା ଲୋଡ଼ୁଁ ତ ତିହାଡ଼ି ନନା ପାଖକୁ ଯାଅ । ପ୍ରକୃତ ଦେଶ ଓ ଦଶର ସେବା ଲୋଡ଼ୁଁ ତ ଭାଲୁଦାସ ପାଖକୁ ଆସ । ଏହାଦ୍ୱାରା ଦୁଇଟା କାମ ହାସଲ ହେବ । ମୁଁ ଜଣେ ସାଧୁ ସଚ୍ଚୋଟ ରାଜନୀତିଜ୍ଞ ବୋଲି ପରିଚିତ ହେବି ଆଉ ଲୋକେ ହନୁ ତିହାଡ଼ି ପାଖକୁ ଧାଇଁ ତା'ଠୁ ଟଙ୍କା ଝଡ଼େଇବେ ।”

ଏତେଗୁଡ଼ାଏ ହିସାବ କରି ବୁଢ଼ା ଭାଲୁଦାସଙ୍କ ମନ ଦୁଡ଼ୁଗୁଡ଼ୁ ହେଉଥାଏ । ମନଟା ଖାଲି ବୋଦାଉଡ଼ିବା ଜୀବପରି ଠାକୁରଙ୍କ ପାଖକୁ

ଘୋଷାଡ଼ ହୋଇଯାଉଥାଏ । ସବୁ ବଳଠାରୁ ଦୈବବଳ ବଡ଼ ବୋଲି ଶାସ୍ତ୍ରକାରମାନେ କହିଛନ୍ତି । ସବା ଶେଷରେ ଭାଲୁ ଦାସେ ନୂଆ ବିଭାଗଟିଏ ଖୋଲି ଜଣେ ପୋଖତ କର୍ମାଣିଆ ବ୍ରାହ୍ମଣ ହାତରେ ଛାଡ଼ିଦେଲେ । ଠିକ୍ ହେଲା ସେ ସବୁ ଗାଆଁରେ ଥିବା ଦେବଦେବୀଙ୍କ ପାଖରେ ହୋମ ଚଣ୍ଡୀପାଠ ଅନ୍ୟାନ୍ୟ ବ୍ରାହ୍ମଣମାନଙ୍କ ସହିତ ଋଷ୍ଟାମର ଭାବରେ ଓଳିଏ ମାତ୍ର ଅରୁଆ ଖାଇ କରିବେ । ପ୍ରତି ଦେବଦେବୀଙ୍କ ପାଖରେ ଫି ରବିବାର ଦିନ ବିରୁତା ଗୁଆ ଘିଅରେ ହୋମ ହେବ । ଗୁଆ ଅଧି, ଅରୁଆ ବୃଜଳ, ପରିବା ସମେତ ପ୍ରତି ବ୍ରାହ୍ମଣଙ୍କୁ ପାଞ୍ଚଟଙ୍କା ବିଦାକ ଦିଆଯିବ । ଭାଲୁ ଦାସେ ଏତକ ବରାଦ କରିଦେଇ ନିଶ୍ଚିନ୍ତ ହୋଇଗଲେ ।

ଭାଲୁ ଦାସଙ୍କ ଯୋଜନାଗୁଡ଼ିକ ଲୁଚି ରହିପାରିଲା ନାହିଁ । ହନୁ ଖଡ଼ାଡ଼ଙ୍କ ଗୁପ୍ତଚରମାନେ ଭାଲୁଦାସଙ୍କ କର୍ମୀମାନଙ୍କ ହାତରେ ରହି ସବୁ କିଛି ଟିପିଟାପି ଖଡ଼ାଡ଼ ନନାଙ୍କୁ ଜଣେଇ ଦେଲେ । ସେ ତତ୍‌ପର ବିଭାଗମାନ ଖୋଲି ତାକୁ ଅଧିକ ମାର୍ଜିତ କରିବାରେ ଲାଗିପଡ଼ିଲେ । ଦୈବବଳ ବିଭାଗ ପାଇଁ ଜଣେ କର୍ମାଣିଆ ବ୍ରାହ୍ମଣ ନିଯୁକ୍ତ କରିବେ କି ନିଜ ପୁରୋହିତଙ୍କୁ ନିଯୁକ୍ତ କରିବେ ଏଇ ଦ୍ୱନ୍ଦ୍ୱରେ ପଡ଼ିଛନ୍ତି, ଠିକ୍ ଏତିକିବେଳକୁ ଜଣେ ଗେରୁଆ ଲୁଗା ପିନ୍ଧିଥିବା ତାନ୍ତ୍ରିକ ଆସି ପହଞ୍ଚିଲେ । ଦେଖିବାକୁ ଏକ ଗୁଣ୍ଡାପରି । ବୁଦିବାଜୁଆ ରୁଦ୍ରାକ୍ଷମାଳା ବିଭୂଷିତ । ଖଡ଼ାଡ଼ଙ୍କୁ ଆଶୀର୍ବାଦ ଦେଇ ବସିଲେ । ଖଡ଼ାଡ଼ ଭକ୍ତିଭରେ ନମସ୍କାର କରିବାରୁ ସେ କହିଲେ—

“ବେଟା, ନିର୍ବାଚନରେ ତୁ ଠିଆ ହୋଇଥିବା ଜାଣି ମୁଁ ତୋ ପାଖକୁ ଆସିଛି । ମୁଁ ଜଣେ ବଡ଼ ତାନ୍ତ୍ରିକ, ନଖଦର୍ପଣରେ ସବୁ ଜାଣିପାରେ । ଶନିଗ୍ରହ ତୋର ଏକ ଘାଟିଆନରେ ରହିଛନ୍ତି । ତାଙ୍କ ସାହାଯ୍ୟ ବିନା ତୁ ଯେତେ ଚେଷ୍ଟା କଲେ ବି ଜିତିପାରିବୁନି । ସେତିକ କେବଳ ମୁଁ କରି-ଦେଇପାରିବି । ଆଗତୁରା ମୁଁ ଗୋଟିଏ ପଇସା ନେବିନି । କିନ୍ତୁ ମୋ ସହ ଚୁକ୍ତି କରିବାକୁ ହେବ । ଜିତିଗଲା ପରେ ମା’ କାତ୍ୟାୟନୀଙ୍କର ପୂଜା ଖର୍ଚ୍ଚ ଓ ବିଶ୍ୱବିଖ୍ୟାତ କବଚ ପାଇଁ ଦୁଇ ହଜାର ଟଙ୍କା ଦେବାକୁ ପଡ଼ିବ । ଆଗରୁ କିଛି ଯାଚିଲେ ବି ମୁଁ ନେବିନି । ରାଜି କି ନା କହ ? ହେଇ ଦେଖ ମୋର ପ୍ରଶଂସାପତ୍ରର ତାଡ଼ା ।”

ଭହାଡ଼ଏ ତାଙ୍କ ହାତରୁ ତାଡ଼ା ନେଇ ଦେଖିଲେ, ସତକୁ ସତ ବଡ ବଡ଼ ନେତାଙ୍କ ପ୍ରଶଂସାପତ୍ର । ମୁଦ୍ରା ରସିଦ୍ ବି । କେଉଁଠିରେ ଦୁଇ ହଜାର ଟଙ୍କାରୁ କମ୍ ନାହିଁ । ମନେ ମନେ ଭାବି ଲାଗିଲେ—କ୍ଷତି କଅଣ ? ଜିତିଲେ ସାଙ୍ଗେ ସାଙ୍ଗେ ମନ୍ତ୍ରୀ । ଗୋଟାଏ ମାରୁଆଡ଼ିକୁ କହିଦେବା ମାତ୍ରେ ସେ ଦୁଇ ହଜାର ଟଙ୍କା ବଢ଼େଇଦେବ । ନ ଜିତିଲେ ତ ସେ କିଛି ନେବନି । ମୋ ଲୋକସାନର ପ୍ରଶ୍ନ ହିଁ ନାହିଁ । ଠିକଣା ବେଳକୁ ଭଗବାନ ଏମିତି ତାନ୍ତ୍ରିକଟିଏ ପଠାଇ ଦେଇଛନ୍ତି । ତାନ୍ତ୍ରିକର ପ୍ରସ୍ତାବରେ ସେ ସଙ୍ଗେ ସଙ୍ଗେ ରାଜି ହୋଇଗଲେ । ଗୋଟାଏ ଭଲ ବୁଦ୍ଧିଆ କାମ କରିବାକୁ ହେଲେ ସଙ୍ଗେ ସଙ୍ଗେ କରିବାର ଦରକାର । ଷ୍ଟାମ୍ପ କାଗଜ ଆସି ଏଗ୍ରିମେଣ୍ଟ ଲେଖା ହୋଇଗଲା । ଦୁଇଟା ନକଲ ଦୁଇଜଣଙ୍କ ପାଖରେ ରହିଲା । ତାନ୍ତ୍ରିକ ଗୋଟାଏ ତମ୍ବା ତେଉଁରିଆ କାଢ଼ି ଫୁଟୁଫୁଟୁ କରି ଗୁଡ଼ାଏ ମନ୍ତ୍ର କାହାରିକୁ ନ ଶୁଣିବା ଭଳି ବୋଲି ଭହାଡ଼ଙ୍କ ହାତରେ ବାନ୍ଧିଦେଲେ । ପ୍ରସ୍ଥାନ ପୂର୍ବରୁ ପ୍ରବୋଧ ଦେଇ ପୁଣି ଥରେ କହିଲେ—"ଦେଖ, ଏଥିରେ ତୋର ଲାଭ ଛଡ଼ା କ୍ଷତି ନାହିଁ । ତୋତେ କିଛିମାତ୍ର ଆଗତୁରା ଦେବାକୁ ପଡ଼ୁନାହିଁ । ଜୟଲାଭ କଲେ ଦେବୁ, ନଚେତ୍ ନାହିଁ । ତେଣୁ ଆଶଙ୍କା କରିବାର କିଛି ନାହିଁ । ଜୟ ମା' କାତ୍ୟାୟନୀ ।" ଏତିକି କହି ତାନ୍ତ୍ରିକ ବିଦାୟ ନେଲେ ।

ଦିନେ ଦି'ଦିନ ପରେ ଜଣେ କାପାଳିକ ହଳଦିଆ ଲୁଗା ପିନ୍ଧି ଭାଲୁଦାସଙ୍କ ପାଖଘରେ ପହଞ୍ଚିଲେ । ସେ ଜଣେ ଅତି ଉଗ୍ର ତାନ୍ତ୍ରିକ । ମନ୍ତ୍ର ବଳରେ ଅସାଧ୍ୟ ସାଧନ କରିପାରନ୍ତି ବୋଲି ଜଣେ ଦି'ଜଣ ଅତି ବିଶ୍ବସ୍ତ କର୍ମୀ ଭାଲୁଦାସଙ୍କୁ ଜଣେଇ ଦେଲେ । ଭାଲୁ ଦାସେ କାପାଳିକଙ୍କ ଗୋଡ଼ତଳେ ପଡ଼ି, ଚରଣ ଧୂଳି ମୁଣ୍ଡରେ ମାରି କୃପା ଭିକ୍ଷା କଲେ ଏବଂ କିଛି ଦର୍ଶନି ପାଦତଳେ ଥୋଇବାର ଉପକ୍ରମ କରୁଛନ୍ତି ଠିକ୍ ଏତିକିବେଳେ କାପାଳିକ ବାରଣ କରି କହିଲେ—"ଥାଉ ଥାଉ, ଏବେ ନୁହେଁ । ମୁଁ ତ ଆସିଛି ତୋତେ ସାହାଯ୍ୟ କରିବାକୁ । ବୀର ବଜରଙ୍ଗ ମୋତେ ତୋ ପାଖକୁ ପଠେଇଛି । ତା'ର ପୂଜା ଠିକ୍ଭାବେ କରେଇ ପାରିଲେ ତୋର ଅବଶ୍ୟ ଜିତାପଟ ହେବ । ତୋତେ କିନ୍ତୁ ଅଙ୍ଗୀକାର ପତ୍ର ଲେଖିଦେବାକୁ ହେବ ।

କଡ଼ଲେ ଦୁଇ ହଜାର ଟଙ୍କା ପୂଜାଖର୍ଚ୍ଚ ଦେବାକୁ ପଡ଼ିବ । ଆଗରୁ ସେ ଏକ ପଇସା ବି ନୁହେଁ ।”

ଭାଲୁ ଦାସେ ମଧ୍ୟ କାପାଳିକ ପାଖରେ ଥିବା ବଡ଼ ବଡ଼ ନେତାଙ୍କର ବହୁ ପ୍ରଶଂସାପତ୍ରମାନ ଦେଖିଲେ । ସବୁପତ୍ରଠାରୁ ପ୍ରଧାନମନ୍ତ୍ରୀଙ୍କ ଦେଇଥିବା ଚିଠିଟି ବଡ଼ ଲୋଭନୀୟ । ଏତେ ସୁଯୋଗ ଭାଗ୍ୟରେ ଥିଲେ ମିଳେ । ଚଟାପଟ ସେ ବି ଷ୍ଟାମ୍ପ କାଗଜ ଆଣି ଅଙ୍ଗୀକାରପତ୍ର ଲେଖିଦେଲେ । ଦୁହିଁଙ୍କ ପାଖରେ ଦୁଇଟା ନକଲ ରହିଲା ।

ଦୁଇ ଷଣ୍ଢଙ୍କ ଲଢ଼େଇରେ ସାରା ନିର୍ବାଚନମଣ୍ଡଳୀ ଉଠିଲା ପଡ଼ିଲା । ଲୋକେ ଆଉ ଶୋଇବସି ପାରିଲେ ନାହିଁ । ନିତି ଖବର ମିଳୁଥାଏ—ଆଜି ଭାଲୁଆ ଦଳର ସ୍ୱରଟାଙ୍କର ମୁଣ୍ଡ ଫାଟିଛି, କାଲି ହନୁ ଦଳର ପାଞ୍ଚଟାଙ୍କର ଗୋଡ଼ହାତ ଭାଙ୍ଗିଛି । ଧାଁଧପଡ଼ କରି କରି ପୁଲିସ୍‌ବାଲାଏ ଝାଳ୍‌ ଖାଇଗଲେ । ମହା ଗଣ୍ଡଗୋଳ ଭିତରେ ଦେଇ ଭୋଟ ଶେଷ ହେଲା । ସବୁ ଶାନ୍ତ ପଡ଼ିଗଲା । କର୍ମୀମାନେ ଫାଁକାଳ ପଡ଼ିଗଲେ । ଭାଲୁ ଦାସେ ଓ ହନୁ ଡହାଡ଼ି କେବଳ ସାରବଜାରଙ୍କ ଓ ମା’ କାତ୍ୟାୟନୀ ନାମ ଖିଆପିଆ ଭୁଲି ଦିନରାତି ଜପିବାରେ ଲାଗିଥାନ୍ତି ।

ଭୋଟ ଗଣତିର ଆଠ ଦଶଦିନ ବାଦ୍‌ ସାରବଜାରଙ୍କ ଓ କାତ୍ୟାୟନୀଙ୍କ ଦୁଇ ପଣ୍ଡା କୋଟ୍‌ ପେଣ୍ଟ ପିନ୍ଧି ଗୋଟିଏ ହୋଟେଲ୍‌ରେ ଯାଇ ପହଞ୍ଚିଲେ । କାଦମ୍ବରୀ ଓ କୁକ୍‌କୁଟ ବ୍ୟଞ୍ଜନରେ ପରିତୃପ୍ତ ହୋଇ ଉଭୟେ କହିଲେ ୨।୪ ମାସରେ ଥରେ ନିର୍ବାଚନ ହୁଅନ୍ତା । ତାହା ସାରବଜାରଙ୍କ ଓ ମା’ କାତ୍ୟାୟନୀଙ୍କୁ ପ୍ରାର୍ଥନା କଲେ । କାତ୍ୟାୟନୀଙ୍କ ପଣ୍ଡା ପକେଟରୁ ଦୁଇହଜାର ଟଙ୍କାର ନୋଟ୍‌ କାଢ଼ିଲା । ହୋଟେଲ୍‌ବାଲାକୁ ୩୨୦ଟଙ୍କା ଦେବାପରେ ବାକିତକ ଅଧା ଅଧା ବାଣ୍ଟିନେଇ ହୋଟେଲ ଛାଡ଼ିଲେ ।



# ॥ ଭୋଟୁଲ୍ ବାବାଙ୍କ ଭୋଟ୍ କମିଆଁ ॥

ଆସନ୍ତା ନିର୍ବାଚନରେ ଠିଆ ହେବା ଲାଗି ହଡ଼ିବନ୍ଧୁ ଦାସ ଉରଫ୍ ହାଉଡ଼ା ଦାସଙ୍କ ମନ ରମ୍‌ରମ୍ ହୋଇ କୁଣ୍ଡେଇ ହେଲା । ଭୋଟକଣ୍ଡୁଟା ଆଜିକାଲିକା ଟାଉଟର ଯୁଗରେ ଯେ ସର୍ବପ୍ରଧାନ କଣ୍ଡୁ, ତାହା କେହି ଅସ୍ୱୀକାର କରି ପାରିବେ ନାହିଁ । ହାଉଡ଼ା ଦାସେ ଧୀରେ ଧୀରେ କଥାଟାକୁ ଟାଉଟର୍ ମେଳାରେ ପକେଇଲେ । ବିଚାର ଚାଲିଲା ।

ଜଣେ ଟାଉଟର୍ କହିଲା—''ନିର୍ବାଚନରେ ଠିଆ ହେବାକୁ ହେଲେ, କିଛି ଗୋଟାଏ ଆଖିଦୃଶିଆ କାମ କରିବାକୁ ହେବ । ଦେଉଳ-ତୋଳିବା ବା ବାଟରେ ହଗିବା । ଏମିତିଆ କାମ କିଛି କରିବାକୁ ହେବ, ଯେପରିକି ସମସ୍ତେ ପଚାରିବେ, ''ଆରେ କିଏ କଲା, ଆବେ କିଏ କଲା ? ତା'ପରେ ଖୋଳତାଡ଼ ହୋଇ ନାଆଁଟା ଡିଣ୍ଡିମ ହୋଇ ବାଜିଯିବ । ସମସ୍ତଙ୍କ ମନରେ ନାଆଁଟା ବସା ବାନ୍ଧିଯିବ । ତାପରେ ବେଶିଲୋକ ଯେଉଁଥିରେ ହୋହା ହେଉଥିବେ, ତାଙ୍କ ସାଙ୍ଗରେ ସେଇ ହୋହାରେ ମାତି-ଯିବ; ଠିକ୍ ଯେମିତି ଢ'ଶ୍ୱରଟା ବିଲୁଆ 'ହୁକେ ହୋ' ପାଟି କଲେ ଆଉସବୁ ବିଲୁଆ ଯିଏ ଯେଉଁଠି ଥାଆନ୍ତି, ସମସ୍ତେ 'ହୁକେ ହୋ'ରେ ମାତିଯାଆନ୍ତି । ତାପରେ ସମସ୍ତଙ୍କ ଆଗରେ ରହି ସମସ୍ତଙ୍କଠାରୁ ବେଶି ଜୋର୍‌ରେ ପାଟି କରିବାକୁ ହେବ । ଦାନ୍ତ କଡ଼ମଡ଼ କରି, ହାତ ହଲେଇ, ମନ୍ତ୍ରୀମାନଙ୍କୁ ତାତିଲା ତାତିଲା ଗାଳିରେ ପୋଡ଼ି ପକେଇବାକୁ ହେବ । ନିର୍ବାଚନର ମୌସୁମ ଆସିଗଲେ, ଗୋଟାଏ ପଇସାବାଲା ପାର୍ଟିଆଡ଼େ ଆଉଜି ଯାଇ, ଅନ୍ୟ ପାର୍ଟିମାନଙ୍କୁ ଗାଳିଗୁଲଜ କରିବ । ସେମାନଙ୍କ ନାଆଁରେ କଞ୍ଚା ଗାଲୁଆ କଥାସବୁ ତିଆରି କରି, ଗୁପ୍ତସୂତ୍ରରୁ ଏଗୁଡ଼ାକ ସଂଗ୍ରହ କରିଛି ବୋଲି, ନିଜ ପାର୍ଟିର ନେତାମାନଙ୍କ ଆଗରେ ବଖାଣ କରିବ । ନେତା-ମାନଙ୍କ ପାଖକୁ ଗଲାବେଳେ ଦଶ ପନ୍ଦର ଜଣକୁ ସାଙ୍ଗରେ ଅଲବତ୍

ନେଇ ଯିବ । ନେତାଏ ଯେମିତି ଜାଣିଯିବେ ଯେ ତୁମ ପଛରେ ବହୁତ ଲୋକ ଅଛନ୍ତି । ଜଗନ୍ନାଥଙ୍କ ଦର୍ଶନକୁ ଯିନା କମ୍ ଲୋକ ବାହାରୁଛନ୍ତି; କିନ୍ତୁ ନେତାଦର୍ଶନ ପାଇଁ ଲୋକ ସବୁବେଳେ ହାଉପାଉ । ନେତାଙ୍କ ପାଇଁ ଘିଅ, ଦୁଧ, ମାଛ ମହିରେ ମହିରେ ଭେଟି ଦେଉଥିବ । 'ସେବା କାର୍ଯ୍ୟ ଟୂଜାବଳେ କବା ଅସାଧ ମଣ୍ଣିଛଳେ ।' ନେତାଙ୍କର ଟିକଟଟାଏ ନ ଦେବାକୁ ବାଟ ନଥିବ ।"

ହାଉଡ଼ା ଦାସେ ଭୋଟ ପାଠଗୁଡ଼ାକ ପୂରାପୂରି ହଜମ କରି ନପାରି ଜଣକୁ ପଚାରିଲେ—"ସବୁ ତ ଶୁଣିଲି; ହେଲେ କେମିତି କେଉଁଠୁ କଅଣ କରିବା ଆରମ୍ଭ କରିବି, ସେଇଟା ମୋ ମୁଣ୍ଡରେ ପଶୁନାହିଁ । କିଛି ଗୋଟାଏ ଖିଅ ମୋତେ ଧରେଇ ଦିଅନ୍ତୁ ।"

ଜଣେ ଟାଉଟର ଖିଅ ଧରେଇଲା—"ଦେଖ, ଆମ ଅଞ୍ଚଳରେ ଆଉ ଗୋଟାଏ ହାଇସ୍କୁଲ ନ କଲେ ଆଉ ଚଳିବନି । ଅନେକ ଲୋକ ବେଙ୍ଗ ସାହୁ ତୋଟାରେ ସ୍କୁଲ ବସେଇବାକୁ କହୁଛନ୍ତି; ହେଲେ ବେଙ୍ଗ ସାହୁ ତୋଟାଟା ଦେବାକୁ ନାସ୍ତି କରି ଦେଉଛନ୍ତି । ବଡ଼ିଆ ବଡ଼ିଆ ଆମ୍ବଗଛ ଲାଗି ଛାଡ଼ିବାକୁ ତା' ସତ ବଳୁନି । ବାସ୍, ଏଇଠୁ କାମ ଆରମ୍ଭ କର ।"

ହାଉଡ଼ା ଦାସେ ପାଞ୍ଚମନ ପଚିଶି ପ୍ରକୃତି ଏକାଠି କରି ଲାଗି-ପଡ଼ିଲେ । ବକ୍ତୃତାର ତାଉ ବଢ଼ିଲାଗିଲା । କ୍ରମେ ଗାଳିଗୁଲଜ ମିଶିଲା, ତା'ପରେ ହାତଗୋଡ଼ କଥା କହିଲେ । ବେଙ୍ଗ ସାହୁ କାନରେ ତୁଳାବିଣ୍ଡା ଦେଇ ବସିଥାଏ । ହାଉଡ଼ା ଦାସେ ଏକାବେଳେକେ ଲଗାମଛଡ଼ା ହୋଇ-ଗଲେ । ଦିନେ ଶହ ଶହ ଲୋକଙ୍କୁ ସାଙ୍ଗରେ ଧରି ବେଙ୍ଗ ସାହୁ ତୋଟାରେ ପଶିଗଲେ ଆଉ ତୋଟାର ବହୁତ ଗଛ ହାଣି ପକେଇଲେ । ବେଙ୍ଗ ସାହୁ ଠେଙ୍ଗାତୋଡ଼ା ଧରି ଧାଇଁଲା କଚେରିକୁ । ଶେଷରେ ହାଉଡ଼ା ଦାସଙ୍କୁ ଆଉ କେତେ କବାଡ଼ଙ୍କ ସଙ୍ଗେ ଛ' ଛ' ମାସ ମାମୁଘରେ ବିଶ୍ରାମ ପାଇଁ ରମାନା ହୋଇଗଲେ । ଗଲାବେଳେ ୫।୬ ଜଣ ଟାଉଟର ତାଙ୍କ ବେକରେ ଫୁଲ-ହାରଟାଏ ପକେଇଦେଇ କହିଲେ—"ବାଟ ଖୋଲିଗଲା ଦାସେ, ବାଟ ଖୋଲିଗଲା । ମାମୁଘର ତୀର୍ଥ ଦର୍ଶନ ଯିଏ ନ କରିଛି, ସେ କସ୍ମିନ୍ କାଳେ ବିଧାନସଭା ଦର୍ଶନ କରିପାରିବନି । ଏଥର ମାମୁଘରୁ ବାହାରିଲାବେଳେ

ଗୋଟାଏ ଗୋଡ଼ ମାମୁଘରେ ତ ଆଉ ଗୋଡ଼ ବଧାନ ସଭାରେ । ଭାଗ୍ୟରେ ଥିଲେ ଏମିତିଆ ମଜଜା ମିଳେ । ଫେରିଲାବେଳକୁ ଆମେ କ୍ଷେତରେ ଘୋଟ ପଚେଇ ରଖିଥିବୁ । ତୁମେ ଖାଲି ଦି' ହାତିଆ କାଟି ପକେଇବ ।"

ପୁଲହ୍ ଗାଡ଼ି ଗୁଲିଯିବାବେଳେ ଟାଉଟର୍ ଦଳ ନିଜ ନିଜ କୁଞ୍ଚ ଟେକି ହଲେଇ ଲାଗିଲେ । ବିଦାୟ ନେଲାବେଳେ ଲୋକେ ରୁମାଲ୍ ହଲାନ୍ତି ବୋଲି ସେମାନେ ଆଗରୁ ଜାଣିଥିଲେ । ଦୁର୍ଭାଗ୍ୟକୁ କାହାରି ପକେଟରେ ଛିଣ୍ଡା ରୁମାଲ୍ଟାଏ ବି ନଥିଲା । ଫଳରେ ସମସ୍ତେ ନିଜ ନିଜ କୁଞ୍ଚକାନି ଟେକି ହଲେଇ ଲାଗିଲେ । ଦେଣ୍ଡିମାରି ଟାଉଟର୍ମାନେ ନିଜ ନିଜ ଘରକୁ ଫେରିଲେ ।

ହାଉଡ଼ା ଦାସେ ମାମୁଘରୁ ଏକାବେଳେକେ ପୋଖତ ନେତାଭି ମୁକୁଟ ପିନ୍ଧି ଗାଆଁକୁ ଆସିଲେ । ଟାଉଟର୍ଙ୍କ ଗହଣରେ ଏକ ସଭା ତାଙ୍କ ନିଜ ଘରେ ବସିଲା ।

ହାଉଡ଼ା ଦାସ ବଜ୍ରଗମ୍ଭୀର ସ୍ୱରରେ କହିଲେ—"ମୁଁ ଛାଡ଼ିବି ନାହିଁ, ଆଇନ୍କୁ ବଦଳେଇବି ଓ ତା'ରି ସାହାଯ୍ୟରେ ସେଇଠି ସ୍କୁଲ କରିବ । ଆଇନ୍ ବିରୁଦ୍ଧରେ ଯାଇ କେହି କରିହେବ ନାହିଁ । ଏଥର ନିର୍ବାଚନରେ ମୁଁ କଂଗ୍ରେସ ଟିକେଟ୍ରେ ଠିଆ ହେବି; ଅଲବତ୍ ଜିତିବି ଆଉ ଅଲବତ୍ ମନ୍ତ୍ରୀଟାଏ ହୋଇ ବେଙ୍ଗ ସାହୁ ତୋଟା ଦଖଲ କରିବି ଓ ହାଇସ୍କୁଲ ବସେଇବି । ନିର୍ବାଚନ ତ ଆସିବା ଆସିବା ଉପରେ । ଆଜଠୁଁ ଲାଗିଯାଅ ପ୍ରଚାରରେ ।"

ନିର୍ବାଚନର ଶ୍ରେଷ୍ଠ ବସନ୍ତ ଝୁଲୁଝୁଲୁ ହୋଇ ବହି, ଟାଉଟରିଆ-ମାନଙ୍କ କାଫୁକୁ ଉଲୁସାଇ ଦେଲା । ସେମାନଙ୍କୁ ଆଉ ପ୍ରାର୍ଥୀ ଖୋଜିବା ଦରକାର ପଡ଼ିବନି । ହାଉଡ଼ା ଦାସ ତ ନିଶ୍ଚୟ କଂଗ୍ରେସ କମ୍ପାନିଠାରୁ ଟିକେଟ୍ଟାଏ ପାଇବେ । ତେଣିକି ରୁଷିଆ ବା ଆମେରିକା-ଆଡ଼ୁ ଟଙ୍କାର ସୁଅ ପାଣିପରି ଛୁଟିବ । ସେତିକିବେଳକୁ ଯିଏ ଯେତେ ବାଲ୍ଟି, କୁମ୍ଭ, ଗରା, ଡାଳ ଯୋଗାଡ଼ କରି ପାରିବ, ସେତିକି ତା'ରି ସୌଭାଗ୍ୟ

ଟାଉଟର୍‌ମାନେ ପ୍ରାର୍ଥୀ-ଟିକେଟ୍-ଚଢ଼ଉରେ ହାଉଡ଼ା ଦାସଙ୍କୁ ଥୋପକରି ପକେଇ ଦେଇ ଚେରେଣ୍ଡାକୁ ଗ୍ଲହିଁ ରହିଲେ । ଦିନ ପରେ ଦିନ ଗଡ଼ିଗଲା । ଚେରଣ୍ଡା ଖୁପୁଖୁପୁ ହେବା ଦୂରେ ଥାଉ, ଟିକିଏ ଦୋହଲିଲା ନାହିଁ । ଶେଷରେ କଂଗ୍ରେସ୍, ଜନତା, କମ୍ୟୁନିଷ୍ଟ କି ସୋସାଲିଷ୍ଟ କେହି ହେଲେ ଗିଳିଲେ ନାହିଁ । ଟିକେଟ୍ ମିଳିବା ଶେଷ ହେବା ପରେ ଟାଉଟର୍‌ମାନେ ବନ୍ଧୀଖଡ଼ା ଫୋପାଡ଼ି ଦେଇ ପଳେଇଲେ । କଂଗ୍ରେସ କି ଜନତା ଟିକେଟ୍‌ଟାଏ ମିଳିଥିଲେ ସିନା ଟଙ୍କା-ସମୁଦ୍ର ଆମେରିକା କି ରୁଷିଆ ଆଡୁ ମୌସୁମୀ ବାୟୁ ବୋହି ସେମାନଙ୍କ ଉପରେ ଟଙ୍କା ବରଷେଇ ଥାଆନ୍ତା । ହାଉଡ଼ା ଦାସେ ସ୍ୱାଧୀନ ଭାବରେ ଠିଆହେଲେ ପାଣି ଟୋପାଏ ବି ମିଳିବନି । ଶୁଖା ଖଡ଼୍‌ଖଡ଼୍ ପାଖରେ ଟଙ୍କା କୁଆଡ଼୍ ଆସିବ ଯେ ସେ ସେମାନଙ୍କୁ ଦେବ । ଓଲଟି ସେମାନଙ୍କୁ ଶୋଷିବାର ସମ୍ଭାବନା ଅଛି ।

ହାଉଡ଼ା ଦାସେ ଧାଁ ଧପଡ଼ କରି, କୌଣସିମତେ ଅମାନତ ଟଙ୍କାଟା ଯୋଗାଡ଼ କରି, ସ୍ୱାଧୀନ ଭାବରେ ଠିଆ ହୋଇସାରି ସ୍ୱରି-ଆଡ଼କୁ ଖୋଜିଲା ବେଳକୁ କର୍ମୀମାନେ ଏକାବେଳକେ ଶୂନ୍‌ଶାନ୍ । ଯେଉଁମାନେ ଦିନସାରା ତାଙ୍କର ପାଖରେ ନସରପସର ହେଉଥିଲେ, ଯାଆ କହିଲେ ପାଖ ଛାଡୁ ନଥିଲେ, ସେମାନଙ୍କର ଧାସ ବି ମିଳିବାକୁ ନାହିଁ; ହାଉଡ଼ା ଦାସେ ଖୋଜି ବୁଲିଲେ । ଟାଉଟରିଆ କର୍ମୀମାନେ ମହା ତର୍‌କା । ତାଙ୍କୁ ଦୂରରୁ ଦେଖିବା ମାତ୍ରେ ଯେ କୌଣସି ଏକ ଗୁପ୍ତସ୍ଥାନରେ ଯାଇ ଲୁଚି ଯାଉଥିଲେ ।

ଜଣେ ଅ’ ଜଣଙ୍କ ସଙ୍ଗେ ଅକସ୍ମାତ୍ ମୁହାଁମୁହିଁ ଭେଟ ହୋଇଗଲେ । ଟାଉଟର୍ ଶିରୋମଣି ତାଙ୍କୁ ବୁଝେଇ ଦେଲେ—“ଦେଖ, ତୁମେ ଆମକୁ ଭୁଲ ବୁଝନା । ଆମେ ଠିକ୍ କରିଛୁ କଂଗ୍ରେସ ଓ ଜନତାଠାରୁ ଟଙ୍କା ଖାଇବୁ; କିନ୍ତୁ ଗୁପ୍ତରେ ଆପଣଙ୍କ ପାଇଁ କାମ କରିବୁ । ଆପଣଙ୍କ ପାଖରେ ଟଙ୍କା କୁଆଡୁ ଆସିବ ଯେ ଆପଣ ଆମକୁ ଦେବେ । ଆମେ ଯଦି ସେମାନଙ୍କଠାରୁ ଏତେବେଳେ ଟଙ୍କା ଖାଇ ନ ପାରିବା ତେବେ ଆମ କର୍ମୀପଣିଆକୁ ଧିକ୍ । ଆମେ ଦିନବେଳା ସେମାନଙ୍କ ପାଇଁ

ଜୀର ମନରେ ପ୍ରଚାର କରିବୁ । ଗୁପ୍ତରେ ଚୁପ୍ ଚୁପ୍ ଭୋଟରମାନଙ୍କୁ ଆପଣଙ୍କୁ ଭୋଟ୍ ଦେବାଲାଗି ବୁଝେଇବୁ ।"

ହାଉଡ଼ା ଦାସଙ୍କ ମନ ମାନିଗଲା । ସେ ମନେ ମନେ ଭାବିଲେ, ଗୁପ୍ତ ପ୍ରଚାରଟା ସବୁଠୁଁ ବଢ଼ିଆ କାମ । ପ୍ରଚାର କଥା ପ୍ରତିପକ୍ଷ ଜାଣି-ପାରିବେନି କି ଏହାର କାଟପାଣି ଲଗେଇ ପାରିବେନି । ଫଳରେ ସେ ଭୋଟବାକ୍ସରେ ପୋତି ହୋଇପଡ଼ି ନିଶ୍ଚିହ୍ନ ହୋଇଯିବ ଆଉ ସେ ବିଧାନସଭାରେ ରଡ଼ଗୁଡ଼ ଛାତରୁ ଚୂନ ଖସେଇ ପକେଇବେ ।

ହାଉଡ଼ା ଦାସେ ସାଇକେଲ ଚିହ୍ନଟା ପାଇଥିଲେ । ସେଥିପାଇଁ ସାଇକଲଟା ଧରି ସେ ଖୁବ୍ ପ୍ରତିଜ୍ଞା କଲେ—"ଗୋଟିଏ ବି ପଇସା ଖର୍ଚ୍ଚ କରିବିନି, ଗୋଟିଏ ବି ଇସ୍ତାହାର ଛାପିବିନି, ଗୋଟିଏ ବି ପୋଷ୍ଟର କାନ୍ଥରେ ମାରିବିନି, ଗୋଟିଏ ବି ସଭା କରିବିନି, ଗୋଟିଏ ବି ପଇସା ଭୋଟରକୁ ଘୁଷ୍ ଦେବିନି, ଗୋଟିଏ ବି ଜିପ୍ ଭଡ଼ାରେ ଆଣିବିନି, ଗୋଟିଏ ବି ଇଡ଼୍ଲି କାହାକୁ ଖୁଆଇବି ନାହିଁ । ଏଇ ସାଇକେଲ୍‌କୁ ରଥକରି ନିର୍ବାଚନ ଯୁଦ୍ଧ କ୍ଷେତ୍ରକୁ ମଣ୍ଡି ପକେଇବି, ବିଜୟଲକ୍ଷ୍ମୀଙ୍କୁ ଘିଡ଼ିଘାଡ଼ିଆ କରି ମୋ ଘରକୁ ଘୋଷାଡ଼ି ନେଇଯିବି ।"

'ଜୟ ହରି ହରି ବୋଲ' କହି ହାଉଡ଼ା ଦାସେ ସାଇକେଲ ଉପରେ ଉଠିଲେ । ଯାହାକୁ ଆଗରେ ପାଇଲେ ତାକୁ ଅଟକେଇ କହିଲେ—"ଆଜ୍ଞା, ଆପଣଙ୍କ ସେବା ପାଇଁ କମର କସି ବାହାରିଛି । ଅତୀତରେ ତ କାହାକୁ କେତେ ଭୋଟ ଦେଇଛନ୍ତି । ସେମାନେ କ'ଣ ଉପକାର କରିଥିଲେ ? ଏବେ ଭୋଟ ଦେଇ ଦେଖନ୍ତୁ ମୁଁ ଆପଣଙ୍କର କି ସେବା କରୁଛି । ଆପଣ ଯେତେବେଳେ ଚାହିଁବେ, ମୁଁ ଆପଣଙ୍କ ଦୁଆରେ ହାଜର ହୋଇଯିବି ।"

ଏକଥା ଶୁଣି ପାରିଲାପରେ କେହି କେହି କହନ୍ତି, "ଆଜ୍ଞା, କାହିଁକି ଏତେଗୁଡ଼ାଏ ପରିଶ୍ରମ କଲେ, ମୁଁ ତ ଏ ମଣ୍ଡଳୀର ଭୋଟର ନୁହେଁ; ମୁଁ ଅନ୍ୟ ମଣ୍ଡଳୀର ଭୋଟର ।"

ଆଉ ଜଣେ କହେ—"ଆହେ, ଏ ଉଡ଼ାଜାହାଜ ଓ ରକେଟ୍ ଯୁଗରେ ତୁମେ ସାଇକେଲ ଧରି କଅଣ କରିବ ହୋ ! ନଈବାଲି ଚଷିବାହିଁ ସାର ହେବ !"

ଜଣେଅଧେ ବି କହିବାର ଶୁଣାଗଲା—"ଆରେ ରଖ ହୋ ତମ ସେବା, ଖୁବ୍ ଅଗେ ନଭେଇ ପାରିଲୁଣି ! ଭୋଟ୍ ଖଣ୍ଡିକ ପାଇବା ପୂର୍ବରୁ ପୁଣି ଗୋଲାମ ବନିଯାଅ । ଭୋଟ୍ ପାଇସାରି ବିଧାନସଭା ଗାଦିରେ ବସିବା ମାତ୍ରେ ବାଦ୍‌ସାହା ବନିଯାଅ । ଯେଉଁମାନେ ତୁମକୁ ସେଠି ବସେଇଲେ, ସେମାନଙ୍କୁ ଚିହ୍ନିବେ ନାହିଁ, ଫାଟକ ବାହାରକୁ ତଡ଼ି ନ ଦେବାକୁ ବାହାର ସମ୍ଭବ ନାହିଁ, ତମ ଖୁରାକୁ ଦଣ୍ଡବତ ବାବା, ଯାଅ ଯାଅ ତୁମ ବାଟ ଦେଖ !"

ଆଉ ଜଣେ ମୁଖଲଜ୍ଜା ପୋଛି ଦେଇ ସାଫ୍ ସାଫ୍ କହିଦେଲା, "ତୁମମାନଙ୍କୁ ଚିହ୍ନିଥିଲା ସେଇ ନରୋତ୍ତମ ଦାସ । ତୁମେ ଯେତେଜଣ ଠିଆ ହୋଇଥିଲ, ସମସ୍ତେ ଗୋଟିଏ ଲାଉର ମଞ୍ଜି । ଭୋଟବେଳେ ଯେତିକ ଟଙ୍କା ଖଟେଇ ଥାଅ, ବିଧାନସଭାକୁ ଯାଇ ତା'ର ଶହେଗୁଣ ଲାଭ ଉଠେଇବାରେ ଲାଗିପଡ଼ । ଦଳେ ଅଯୋଗ୍ୟ ମାଙ୍କଡ଼ଙ୍କ ମୁହଁ ଉପରକୁ ସ୍ୱାଧୀନତା ଶାଳଗ୍ରାମଟା ଫିଙ୍ଗି ଦେଇ, ବ୍ରିଟିଶ ସରକାର ଚାଲିଗଲା । ମାଙ୍କଡ଼ମାନେ ଶାଳଗ୍ରାମକୁ ନଚେଇବାରେ ଲାଗିଛନ୍ତି । ତୁମେ ସେହି ମାଙ୍କଡ଼ ଭିତରୁ ଗୋଟିଏ !"

ନିର୍ବିକାର ହାଉଡ଼ା ଦାସ ସବୁ ହଜମ କରିଦେଇ ଆଉ ଗୋଟିଏ ଶିକାର ଖୋଜି ଗଲେ । କେତେଜଣ ବନ୍ଧୁ ତାଙ୍କୁ ଜଗରି କରି କହିଲେ—"କିଛି କଲେ କର ନକଲେ ନକର, କିନ୍ତୁ ଗୋଟିଏ ନିର୍ବାଚନ ଇସ୍ତାହାର ଅଲବତ୍ ଛପ । ତୁମେ ନିର୍ବାଚିତ ହେଲେ ଲୋକଙ୍କ ପାଇଁ କଅଣ କଅଣ କରିବ, ତାହା ସେମାନଙ୍କ କାନରେ ପକେଇବା ଉଚିତ । ସମସ୍ତେ ନିଜ ନିଜ କଥା ଛପେଇ ବାଣ୍ଟୁଛନ୍ତି । ତୁମେ ନ ବାଣ୍ଟିଲେ ଲୋକେ ତୁମକୁ ଭୁଲିଯିବେ !"

କଥାଗୁଡ଼ାକ ହସରେ ଉଡ଼େଇ ଦେଇ ହାଉଡ଼ା ଦାସ କହିଲେ— "ଯେଉଁସବୁ ଇସ୍ତାହାର ଛପା ହେଉଛି, ସେଥିରେ ପ୍ରାର୍ଥୀ ନିଜେ

କପରି ଲୋକଙ୍କ ସେବା କରିବେ ତା’ ଜାଣିଲେଣି, ଅନ୍ୟମାନଙ୍କର ଚୋଇ ଖୋଳ ଅଛନ୍ତି । ତାଙ୍କୁ ବ ପଢ଼ି ପାରିବେ ଶତକଡ଼ା ୨୦ଜଣ । ତାଙ୍କ ଭିତରୁ ମଧ୍ୟ ପ୍ରକୃତରେ ତା’ ଉପରେ ଆଖି ବୁଲେଇବେ ଚଉଠେ । କାହିଁକି ମୁଁ ଗୁଣ୍ଡିପୁଡ଼ିଆ କରିବାକୁ କି ଛୁଆଙ୍କ ନାକ ପୋଛୁବା ପାଇଁ ସେଗୁଡ଼ାକ ଛାପିବି ? ବରଂ ଏମିତି ମୁଁ ସମସ୍ତଙ୍କୁ ମୋ କଥା ଶୁଣେଇ ପାରୁଛି । ଛପାର ଏଇଟା ବଡ଼ବୋପା ।”

ଇସ୍ତାହାର ଛପା କାମଟା ସିନା ତୁଟିଗଲା । ପୋଷ୍ଟର କହାନ୍ତି ଦରକାର; ସେତକ ହବ କପରି ? ହାଉଡ଼ା ଦାସଙ୍କ ମୁଣ୍ଡରେ ଗୋଟାଏ ବୁଦ୍ଧି ଗାତଖୋଳି ପଶିଲେ । ସେ କେତେଜଣ ସାଙ୍ଗଙ୍କ ଘରୁ ଯାଇ ଏକପାଖିଆ କାଗଜ ସଂଗ୍ରହ କରିଆଣିଲେ । ପଦାରେ ମଗହୋଇଥିବା ପୋଷ୍ଟରମାନଙ୍କ ଚହ୍ଲ ଆକାରର ସାଇକଲ ଚହ୍ଲ ନିଜ ହାତରେ ଗାରେଇ ପକେଇଲେ । ଢ’ ଖଣ୍ଡଟା ଖେତଡ଼ା ଟୋକାଙ୍କୁ ଡାକି କହିଲେ—“ଦେଖ, ମୋର ଏ କାମଟା କରିଦିଅ; ମୁଁ ତୁମକୁ ମୋ ସାଙ୍ଗର ସିନେମା ହଲ୍‌ରେ ଗ୍ଲୁକରି କରେଇ ଦେବି । ସିନେମା ହଲରେ ଗ୍ଲୁକରି ହେଲେ ମାଗଣାରେ ସିନେମା ଦେଖା ହେବ ।” ଏହାଠାରୁ ଅଧିକ ଲୋଭମାସ୍ତ କନିଷ ଆଉ କଣ୍ଟି ନାହିଁ; ସଙ୍ଗେ ସଙ୍ଗେ ଟୋକାମାନେ ରାଜି ହୋଇଗଲେ । ହାଉଡ଼ା ଦାସେ ବତେଇ ଦେଲେ—“ଦେଖ, ତୁମେ କେବଳ ଏ ସାଇକଲ ଚହ୍ଲଟାକୁ ଗାଈବାଛୁରି ଚହ୍ଲ ଉପରେ ଅଠା ଲଗେଇ ମାଡ଼ିଦେବ; ଆଉ ମୋ ନାଁଟାକୁ ତା’ ନାଁ ଉପରେ ମାଡ଼ିଦେବ । ବାସ୍ ସେ ପୋଷ୍ଟରଟା ସେହି ସମୟଠାରୁ ମୋର କାମ କରିବ ।” ସିନେମା ପାଗଳ ଟୋକାଏ ରାତିରେ ଲୁଚିଛପି କାମଟା ଖତମ୍ କରିଦେଲେ । କେବଳ ସେତିକି ନୁହେଁ, ଆଉ ଅନ୍ୟକାମ ସବୁ ଅଢ଼ ଉତ୍ସାହର ସହିତ କଲେ । ଘରୁ ଖାଇ ଘୋଡ଼ା ଆଗରେ ଡେଇଁଲେ ।

ଭୋଟ୍ ଦିନ ନକଟେଇ ଆସିବାରୁ ଟୋକାମାନେ ହାଉଡ଼ା ଦାସଙ୍କୁ ଚିରକୁଟି ଛାପିବା ଆରମ୍ଭ କରିବା ପାଇଁ କହିଲେ—“ହଜାର ହଜାର ସଂଖ୍ୟାରେ ନାଆଁ ଓ ନମ୍ବର ଚିରକୁଟିରେ ଲେଖିବାକୁ ହେବ । ଅନ୍ୟମାନଙ୍କର ଛପା ହୋଇ କାମ ଅଧାଅଧି ହୋଇଗଲାଣି, ଆମର ଏପର୍ଯ୍ୟନ୍ତ ଛପା ହେଲାନି ।”

ଡାକ୍ତର ହସେ ବୁଝାଇ ଦେଲେ—"ଆରେ ଏତେ ବ୍ୟସ୍ତ କାହିଁ, ମୋର ଛପେଇବା ଦରକାର କଅଣ ? ପ୍ରତ୍ୟେକ ଦଳ ଚିରକୁଟି ଛପିଛନ୍ତି; ସମସ୍ତେ ସେ ଚିରକୁଟିରେ ସେଇ ନାଆଁ, ସେଇ ଗାଆଁ, ସେଇ ନମ୍ବର ଲେଖିବେ । ତେବେ ଆଉ ଅଧିକାଟାଏ ଛପି ଲାଭ କଅଣ ? ନିର୍ବାଚନ କେନ୍ଦ୍ରରେ କର୍ମଚାରୀଙ୍କୁ ଭୋଟରର ନମ୍ବରଟା ଜଣେଇ ଦେବା ହେଲା ଚିରକୁଟିର କାମ । ଚିରକୁଟି ସମସ୍ତଙ୍କ ପାଇଁ କାମ କରିବ । କେନ୍ଦ୍ରକୁ ଗଲାବେଳେ ଚିରକୁଟିରୁ ସଙ୍କେତଟାକୁ କାଟିବାକୁ ପଡ଼ିବ । ସେତେବେଳେ ସମସ୍ତଙ୍କ ଚିରକୁଟି ସମାନ ହୋଇଯିବ । ଆମର ଚିରକୁଟି ଛପିବା ବିଲ୍‌କୁଲ ଦରକାର ନାହିଁ । ଚିରକୁଟିରେ ନାଆଁ, ନମ୍ବର ଲେଖିବାରେ ଯେତିକ ସମୟ ନଷ୍ଟ ହୁଅନ୍ତା, ସେତିକି ସମୟ ପ୍ରଚାରରେ ଲାଗିଯାଉ । ବୁଲି ବୁଲି ଲୋକଙ୍କୁ କୁହ, "ଭାଇମାନେ—ଯିଏ ନିର୍ବାଚନରେ ଯେତେ ବେଶି ଟଙ୍କା ଖର୍ଚ୍ଚ କରୁଛି, ସିଏ ପଦ୍ଧ ଜିତେ ତେବେ ବିଧାନସଭା ଭିତରେ ଥାଇ ଖର୍ଚ୍ଚର ଶହେଗୁଣ ଟଙ୍କା ସତର ବାଟରେ ତୁମଠାରୁ ଶୋଷି ନେବ । ତୁମେ ଖାଲି ଛଟପଟ ହେଉଥିବ । ଦୟାମାୟା ନରଖି ସିଏ ଶୋଷି ଲାଗିଥିବ । ନିର୍ବାଚନବେଳର ଶୂନ୍ୟଥାଳକୁ ପୂର୍ଣ୍ଣ ଝୁମ୍‌ଝୁମ୍ କରିବା ପାଇଁ ସେ ଶୋଷିବ । ଏଣୁ ମଣିଷ ଚିହ୍ନି, ଯିଏ କମ୍ ଖର୍ଚ୍ଚ କରୁଛି ତାକୁଇ ଭୋଟ୍ ଦିଅ । ଆଉ ଗୋଟାଏ କଥା, କୁହ—ଭାଇମାନେ ସାଇକଲ ଲୋକଙ୍କର ଯେତେ ସେବା କରେ, ଅନ୍ୟ କୌଣସି ଯାନ ସେତେ ସେବା କରିପାରେ ନାହିଁ । ରାସ୍ତାକୁ ଚାହିଁ ମଟରଗାଡ଼ି କେତେ, ଘୋଡ଼ାଗାଡ଼ି କେତେ ଆଉ ସାଇକଲ କେତେ ? ସାଇକଲ କାମ କେହି ଦେଇ ପାରିବେ ନାହିଁ । ଭାଇମାନେ, ସାଇକଲକୁ ଭୁଲିବ ନାହିଁ । ଆଉ ଗୋଟିଏ କାମକର, ଗୋଟିଏ ଭେଣ୍ଟୁଲ୍ ବାବା ଆବିର୍ଭାବ କରାଅ । ଯେମିତି ବତଉଛି ସେମିତି କର ।"

× × ×

ଭୋଟ୍ ହେବାକୁ ଦଶବାରଦିନ ବାକି । ହଠାତ୍ ଗାଆଁରେ ଏକ ଭେଣ୍ଟୁଲ୍‌ବାବାଙ୍କ ଆବିର୍ଭାବ ହେଲା; ବାବା ଭାରି ରାଗି । ବେଶି ରାଗି-ଗଲେ ମୁହଁରୁ ଦୋ ଅକ୍ଷର ବାହାରି ପଡ଼ୁଛି । ଗ୍ରାମ୍ୟ ଗ୍ରାମ୍ୟ ଗାଆଁ ସାରା 'ଠ' ବୁଲିଗଲା ଯେ ଜଣେ ତ୍ରିକାଳଦର୍ଶୀ ବାବାଙ୍କ ଆବିର୍ଭାବ ହୋଇଛି । ଲୋକେ

ଥାଟପଟାଳ ଲଗିଲେ । ହାଉଡ଼ା ଦାସଙ୍କ ଟୋକାଏ ଆଜ ସେମାନଙ୍କର ସାଙ୍ଗମାନେ କହି ବୁଲଲେ ଯେ ବାବାଙ୍କ ଆଖିକୁ କିଛି ଅଛପା ରହିନ । ହାଉଡ଼ା ଦାସଙ୍କ ଛଡ଼ା ଅନ୍ୟ ପ୍ରାର୍ଥୀମାନେ ପୁଅ, ମାଇପ, ଭାଇ, ବନ୍ଧୁ ବଗଦର ସହ ପୂଜ୍ୟପ୍ରଣାମି ଅଜାଡ଼ିଲେ । ଗୋଟିଏ ଚୁଙ୍ଗୁଚୁଙ୍ଗିଆ ଟୋକା ପଚାରି ଦେଲା—"ବାବା, କିଏ ଭୋଟ୍‌ରେ ଜିତିବ ?" ବାବା କ୍ରୋଧରେ ଅଶ୍ରାବ୍ୟ ଗାଳି ଦେଇ କହିଲେ, "ଆଗତୁରା ଏଇଟା କହିବାର ନୁହେଁ; କର୍ମଯୋଗରେ ବାଧା ପଡ଼ିବ । ଯିଏ ଜିତିଲ୍‌ବାଲା, ନାକରେ ତେଲ ପକାଇ ଶୋଇପଡ଼ିବ । ହାରିଲ୍‌ବାଲାଏ ଘାଇଲ୍ ହୋଇ ପଡ଼ି ରହିବେ । ମୋଠ ଉପରେ କର୍ମକର୍ମାଣି ବନ୍ଦ ହୋଇଯିବ । ପାପ ଗାଆଁକୁ ହଇଜା ଘୋଟିଲପରି ଘୋଟିଯିବ ।"

ଭେଟ୍ ପୂର୍ବଦିନ ହେଣ୍ଟୁଲ୍‌ବାବାଙ୍କ ଅତିପ୍ରିୟ ଚେଲାମାନେ ଓରଫ୍ ହାଉଡ଼ା ଦାସଙ୍କ କର୍ମୀମାନେ ଭକ୍ତିରେ ଗଦ୍‌ଗଦ୍ ହୋଇ ପଚାରିଲେ— "ବାବା ! ତୋତେ ନ ପଚାରି ଆମେ କିଛି କରିବୁନି । ତୁ କହିଦେ ଆମେ କାହାକୁ ଭେଟ୍ ଦେବୁ ?"

ହେଣ୍ଟୁଲ୍‌ବାବା ଡାହାଣ ହାତର ଆଶୀର୍ବାଦ ମୁଦ୍ରା ଦେଖାଇ କହିଲେ –"ହଁ ବେଟା, ଠିକ୍ ପଚାରିଛୁ । ଆମେ ଅବଶ୍ୟ କହିବା, ଦେଖ, ଯୋଉ ଚିହ୍ନକୁ କାଲି ବେଶି ଦେଖିବ, ସେହି ଚିହ୍ନରେ ମୋହର ମାରିବ । ଏହା ମା କାତ୍ୟାୟନୀର ଆଜ୍ଞା । ମା କାତ୍ୟାୟନୀ ଯେଉଁ ଚିହ୍ନଟା କାଲି ସମସ୍ତଙ୍କୁ ବେଶି ଦେଖେଇବେ, ତାକୁଇ ଭେଟ୍ ଚୁପ୍‌ଚାପ୍ ଦେଇଦେବ । ଅନ୍ୟଥା ହେଲେ ଗୋଟିଏ ଝାଡ଼ାରେ ବଡ଼ପୁଅ, ସ୍ୱାମୀର ସ୍ତ୍ରୀ, ସ୍ତ୍ରୀର ସ୍ୱାମୀ ଲଥ୍‌ଲଥ୍ ହୋଇ ଟଳି ପଡ଼ିବେ । ଅନ୍ୟଥା ହେବନି, ହେବନି ।" ଏହା କହି ହେଣ୍ଟୁଲ୍‌ବାବା ଚିମୁଟାକୁ ଦୁମ୍‌କରି ଭୂଇଁ ଉପରେ କଚାଡ଼ିଦେଲେ । ପୁଣି ରାଗିଯାଇ କହିଲେ—"କାତ୍ୟାୟନୀ କହିଛନ୍ତି ଟିଭିରେ ଥିବା ଚିହ୍ନ ଚଳିବନି । ଖାଣ୍ଟି ଜନମତଟା କରିବାକୁ ହେବ । ଟିଭିରେ କୁକୁଡ଼ା କି ସିଂହ ଦେଖି ଭେଟ୍ ଦେବନି, ରାସ୍ତାରେ ଯଦି ବେଶି ସଂଖ୍ୟାରେ ଜୀଅନ୍ତା କୁକୁଡ଼ା କି ସିଂହ ଦେଖିବ, ତେବେ ତାକୁଇ ଭେଟ୍ ଦେବ । ମା କାତ୍ୟାୟନୀ ବହୁ ସଂଖ୍ୟାରେ କୌଣସି ଏକ ଚିହ୍ନ କାଲି ସକାଳେ ବାଟେ, ଘାଟେ,

କେତେ ସବୁଠି ଦେଖାଇବେ । ଖବରଦାର ମନେରଖ, ଯେଉଁଠା ବେଶି ସଂଖ୍ୟାରେ ଦେଖିବ ତାଙ୍କୁଇ ଭୋଟ୍ ଦେବ । ମା କାତ୍ୟାୟନୀ ତୋର ଇଚ୍ଛା ପୂର୍ଣ୍ଣ ହେଉ ।"

ସକାଳୁ ସକାଳୁ ସମସ୍ତେ କାମଦାମ ସାରି ଭୋଟ ଦେବାପାଇଁ ବାହାରି ପଡ଼ିଲେ । ଘରୁ ବାହାରିବା ମାତ୍ରେ ଦାଣ୍ଡରେ ଦେଖିଲେ ସାଇକଲ ଆଉ ଧାଇକଲରିକ୍ସା । ରିକ୍ସାଠା ସେଇ ସାଇକଲ । କାଁଭେଁ ମଟର-ଗାଡ଼ିଟାଏ ଧାଇଁଯାଉ ଥାଏ, କିନ୍ତୁ ସାଇକଲ ଆଗରେ ତା' ସଂଖ୍ୟା ଏକାବେଳେ ନଗଣ୍ୟ । ଆଗରେ ସାଇକଲ, ପଛରେ ସାଇକଲ, କଡ଼ରେ ସାଇକଲ, ଯାଉଛି ସାଇକଲ, ଆସୁଛି ସାଇକଲ, ଠିଆ ହୋଇଛି ସାଇକଲ । କାହିଁ ବାଛୁରି ମଳଦ୍ୱାର ଶୁଙ୍ଘୁଥିବା ଗାଈ କାହିଁ ? ଲଙ୍ଗଳ ଧରି ଚଷ ଭିତରେ ପଶିଥିବା ଚାଷୀ କାହିଁ ? ଦାଆ ହାଣ୍ଡୁଡ଼ି କାହିଁ, ରାସ୍ତାରେ ଗୋଟିଏ ହେଲେ କୁକୁଡ଼ା ଦେଖା ନାହାନ୍ତି । କାଲି ରାତିରେ କଂଗ୍ରେସିଆ ଓ ଜନତାଆଏ କଅଣ ଗାଆଁର ସବୁଯାକ କୁକୁଡ଼ା ଖାଇଗଲେ । ନାଃ, ଏସବୁ ଦେବକୂଟ । ରାସ୍ତାରେ କେନ୍ଦ୍ରକୁ ଗଲାବେଳେ ମାଳ ମାଳ ସାଇକଲ । ସାଇକଲରେ ସାଇକଲର ଧକମ୍‌ଧକା । ଯେଉଁଠି ଭୋଟ୍ ହେଲେ, ସେଠି ବି ସାଇକଲ । ଆଉ ସନ୍ଦେହ କରିବାର କିଛି ନାହିଁ । ମା' କାତ୍ୟାୟନୀ ତ ଆଖିରେ ଆଙ୍ଗୁଠି ଗେଞ୍ଜି ଦେଖେଇ ଦେଲେ । ତାଙ୍କ ଆଜ୍ଞାକୁ ଅନ୍ୟଥା କରିବାର ଜୁ ଆଉ କାହାର ଥାଉ ବା ନଥାଉ, ମହିଳାମାନଙ୍କର ବିଲକୁଲ୍ ନାହିଁ । ଈଶ୍ୱର ଅବିଶ୍ୱାସୀ, ନାସ୍ତିକ, ଦେବଦ୍ରୋହୀ କମ୍ୟୁନିଷ୍ଟ ଆଉ ମୁଷ୍ଟିମେୟ ପଢ଼ୁଆ ଆଖିଫିଟା ଲୋକଙ୍କୁ ଛାଡ଼ିଦେଲେ, ବାକି ଅଣ୍ଡିରାମାନେ କାତ୍ୟାୟନୀଙ୍କ କଥାକୁ ଏଡ଼ାଇ ଦେଇ ପାରିଲେ ନାହିଁ । ଜନାନାମାନଙ୍କ କଥା ଉଠିବାର ନୁହେଁ ।

ଭୋଟ୍‌ଲ୍ ବାବା ଓ ତାଙ୍କ ଚେଲାଦଳ, ଓରଫ ହାଉଡ଼ା ଦାସଙ୍କ କର୍ମୀଗଣ ମିଳିଥିବା ଆଶାତୀତ ଟଙ୍କାପଇସା ବାଣ୍ଟକୁଣ୍ଟ କରି ନେଇ ପକେଇବାର ଉପରେ ଥିଲେ । ଫଳାଫଳ ବାହାରିଯିବାପରେ, ଆଉ ପକେଇବାର ଦରକାର ପଡ଼ିଲା ନାହିଁ ।

## ॥ ପଲ୍ଲୀ ଭୋଟ୍ ଗ୍ରହଣ କେନ୍ଦ୍ର ॥

ଡାରୁଟେଙ୍ଗର ଏକ ଦୁର୍ଗମ ପଲ୍ଲୀ ଅଞ୍ଚଳରେ ଭୋଟ୍ ଗ୍ରହଣ କେନ୍ଦ୍ରର ଡେରା ପଡ଼ିଥାଏ । ସେଠାରେ କେନ୍ଦ୍ର ହାକିମ ରୂପେ କାମ ଚଳେଇବାକୁ ହେବ ବୋଲି ସରକାରୀ ଆଦେଶନାମା ପାଇବା ମାତ୍ରେ ଅଧ୍ୟାପକ ବୈଷ୍ଣବ ସାମଲ ପଣ୍ଡିତେ ଗୁମ୍ ମାରି ବସିଗଲେ । ମନେ ମନେ ଭଲ ମନ୍ଦର ହିସାବ ପର୍ଦ୍ଦ ତିଆରି କରିବାକୁ ଲଗିଲେ । ସହରଣ୍ଟ କେନ୍ଦ୍ର ଅପେକ୍ଷା ପଲ୍ଲୀ କେନ୍ଦ୍ର ଯେ ଅଲବତ୍ ଭଲ, ତାହା ସେ ପଣ୍ଡିତେ ଭାବିଗଲେ । ସହରର କେନ୍ଦ୍ରମାନଙ୍କରେ ଭୋଟରଙ୍କ ଭିଡ଼ ଖୁବ୍ ବେଶି । ସେମାନଙ୍କୁ ସମ୍ଭାଳିବାରେ ନାକିଷ ଝାଳନାଳ ହୋଇଯାଏ । ନାନା କୁଞ୍ଚୁପେଞ୍ଚୁଆ, ମାରପେଞ୍ଚୁଆ, ଦଗଲବାଜିଆ, ଭଣ୍ଡ ଭୋଟର୍ ସେମାନଙ୍କ ଭିତରେ ଗୋଟେଇଗୋଟେଇ ହୋଇଯାଇ ଥାଆନ୍ତି । ସେମାନଙ୍କ ଉପରେ ତୀକ୍ଷ୍ଣ ନଜର ରଖିବା କାଠିକର ପାଠ । ଜଣେ ଆଉଜଣେ ଅନୁପସ୍ଥିତ ଭୋଟର୍ ନାଆଁରେ ଭୋଟ୍ ଦେଇଦିଏ । ଏସବୁ କାମବେଳେ ଜଣ୍ଟିବା ମଧ୍ୟ ମହା ବିପଦ । ଭୋଟର୍‌ଟା ଅନ୍ଧାରୁଆ ଘର ଭିତରେ ଡେଣା କାଢ଼ିକି କରୁଛି ଭାବ ଠିକଏ ଜଣ୍ଟି ଦେଲେ କଥା ଶେଷ । ଭୋଟର୍ ଟି ତର୍ଜନଗର୍ଜନ କରିଉଠେ—"କହୋ ! ତୁମେ ଜଣ୍ଟୁଛ କଅଁ ? ଗୋପନ ଭୋଟଦାନ ନିୟମର ଖିଲାପ କରୁଛ । ଆମେ ଏହା ଉପର ହାକିମଙ୍କୁ ଜଣେଇ ଦେବୁ । ଆମେ କଅଣ ଚୋର ନା ତସ୍କର ଯେ ଆମକୁ ଏମିତି ଜଣ୍ଟୁଛ ?"

ଭୋଟରଙ୍କର ମୁହଁ ଟାଣ; କିଏ ଏତେ ହେଙ୍ଗାମରେ ପଶୁଛି । ଉକୁଟା ପଦ କୋଉ ମନ୍ତ୍ରୀଙ୍କର ପୋଷା କୁକୁର ହୋଇଥିବ, ତେବେ ସତର ସେଣାରେ ଯାଇ ପାଣି ଉଠେଇ । କି ମିଳିବ ସେଥିରୁ । ଦଗଲ-ବାଜ୍‌ଟା ଯାହା କରୁଛି କରୁ । ଓଲଟି ଯେ ଶଳାଟାକୁ ପାକଳେଇ

ଫୁଲୁଦେଇ କହିବାକୁ ପଡ଼େ—"ନା ନା, ଆପଣ ଆଜ୍ଞା କେଉଁଠି ଛଡ଼ାର କରୁଛନ୍ତି କାହିଁକି ? ଆପଣଙ୍କର କାହିଁକି କଅଣ ଅସୁବିଧା ହେବ, ସେଥିଲାଗି ଆପଣଙ୍କ ପାଖେ ପାଖେ ରହୁଛୁ । ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ, ମୁଁ ଚାଲିଯାଉଛୁ ।" ଏହା ଉପରେ ପୁଣି ଆଉ ଗୋଟିଏ ସ୍ଥାନ-ମାନଅଭି କାମ ତୁଲାଇବାକୁ ପଡ଼େ । କେତେ କେତେ ବଡ଼ ହାକିମ ହୁକୁମା, ସମସ୍ତ ପ୍ରାୟ ଏହି ସହରକୁ କେନ୍ଦ୍ରକୁ ଆସନ୍ତି । ସେମାନେ ଆସି ପହଞ୍ଚିଗଲେ ନିଜର ନୂଆ ଜୋଇଁଠାରୁ ଅଧିକ ଅଭ୍ୟର୍ଥନା କରିବାକୁ ହେବ । 'ଆଜ୍ଞା, ଆପଣ, ହେଁ-ହେଁ'ର କୋଡ଼େଇ ରଖିବାକୁ ହେବନାହିଁ । ଲାଙ୍ଗୁଡ଼ ପରି ସେମାନଙ୍କ ପଛରେ ନସରପସର ହେବାକୁ ପଡ଼ିବ । ସେମାନେ କେନ୍ଦ୍ରରେ ଥିବା ଯାଏ ନିଜକୁ କେନ୍ଦ୍ରର ରଜା ମନେ ନକରି, ଦୁଆରି ବା ଝାଡ଼ୁଦାର ମନେକରିବାକୁ ହେବ । ସେ ସହରର କେନ୍ଦ୍ରକୁ ଦଣ୍ଡବତ ଦୂରରୁ ଜୁହାର ବାବା, ଦଣ୍ଡବତ ଦୂରରୁ ଜୁହାର ।

ଏଇଟା ହେଉଛି ଅଧ୍ୟାପକ ବୈଷ୍ଣବ ସାମଲଙ୍କର ପ୍ରଥମ ମଫସଲ କେନ୍ଦ୍ର । ଏକଦମ୍ ନାଲି ଚୂଡ଼ା । ଯାହା ବି ହେଉ ସେ ହେଉଛି ପଲ୍ଲୀ—ଯାହାକୁ ଦେଖି ନନ୍ଦକିଶୋର ନିଜର ସମସ୍ତ ସୃଷ୍ଟିକୁ ପଲ୍ଲିଆ ପଲ୍ଲିଆ କରି ଦେଇ, ପଲ୍ଲୀକବି ନନ୍ଦକିଶୋର ବନିଗଲେ, ଯାହାର ଚିତ୍ର କଲମ ମୁନରେ ଆଙ୍କି ଆଙ୍କି ସଚି ରାଉତରାୟ ଥୋଇଦେଇ ଗଲେ ତାଙ୍କର ଅମର କବିତାଗୁଚ୍ଛ (ପଲ୍ଲୀଶ୍ରୀ) । ସେହି ପଲ୍ଲୀର ହୃଦୟ ଭିତରକୁ ଠିକ ଭିତରେ ବସି ଥାଟ ସାଜ ପଶିଯିବାକୁ ହେବ । ତା'ର ସୌନ୍ଦର୍ଯ୍ୟରେ ନିଜକୁ, ପୋଖରୀରେ ପଇସା ହଜାଇଲା ଭଳି ହଜାଇ ଦେବାକୁ ହେବ । ତା'ର ସୁରଭିକୁ ବଗଡ଼ ଶୁଖୁଆ ଶୁଙ୍ଘିଲା ପରି ପେଟ ପୂରେଇ ଶୁଙ୍ଘିବାକୁ ହେବ । ସରଳ, ନିଷ୍ପାପ, ନିରୀହ ପଲ୍ଲୀବାସୀଙ୍କର ସାନ୍ନିଧ୍ୟ, ଆତିଥ୍ୟ କେଡ଼େ ଆକର୍ଷଣୀୟ ଓ ତୃପ୍ତିକର ହେବ ସତେ ! କେନ୍ଦ୍ରରେ ଯେଉଁ କେତୋଟି ଦିନ କଟାଇବାକୁ ହେବ, ତାହା ଜୀବନରେ ସ୍ମରଣୀୟ ଓ ଅଲିଭାଦାଗ ହୋଇ ରହିଯିବ । ସେଠାରେ ଲୋକଙ୍କଠାରୁ ଯେଉଁ ସମ୍ମାନ ମିଳିବ, ତା'ର ଶତାଂଶ ବି ସହରର କେନ୍ଦ୍ରରେ ମିଳିବ କି ନାହିଁ ସନ୍ଦେହ । କେନ୍ଦ୍ରରେ ସେ ହେବେ ଏକଚ୍ଛତ୍ର ସମ୍ରାଟ । ତାଙ୍କ ମୁହଁଟା ହେବ ଆଇନ୍ ସେ କେନ୍ଦ୍ର ଭିତରେ । ଦରକାର ପଡ଼ିଲେ ଯାହାକୁ ତାହାକୁ

ଗିରଫ୍ କରି ଦେଇ ପାରିବେ । ଗୁଳି ଚଳାଇବାକୁ ବି ହୁକୁମ ଦେଇ ପାରିବେ । ସେଠି ସେ ଦିନକିଆ ସୁଲ୍ତାନ ପରି ଚାରିଦିନିଆଁ ଇନ୍ଦିରା ଗାନ୍ଧି ବନିଯିବେ ।

ସେଠାରୁ ଫେରି ଆସି କଲେଜରେ ଛାତ୍ରମାନଙ୍କୁ ପାଠ ପଢ଼େଇଲାବେଳେ କହିବେ, ନନ୍ଦକିଶୋର ପଲ୍ଲୀ ବିଷୟରେ କଅଣ କହି ନାହାନ୍ତି, ସଚ୍ଚିରାଉତରାୟ ପଲ୍ଲୀର କେଉଁ ଦିଗଟାକୁ ଦେଖି ନାହାନ୍ତି । ଛାତ୍ରମାନଙ୍କୁ ସେ ଚମକେଇ ଦେବେ, ସେମାନଙ୍କ ପେଟ ଭିତରୁ ଭକ୍ତି ଓ ସମ୍ମାନ ଓଟାରି ଆଣିବେ । ମୋଟ ଉପରେ ସ୍କୁଲକୁ ଜେଲ୍ ଭିତରେ ଜବରଦସ୍ତି ଭର୍ତ୍ତି କରିଦେଲାପରି, ମଫସଲି ଭୋଟ୍ କେନ୍ଦ୍ରକୁ ଘିଡ଼ିଘାଡ଼ିଆ ଘୋଷାଡ଼ି ଆଣି ସାହିତ୍ୟ ଭିତରେ ଭର୍ତ୍ତି କରିଦେବେ ।

ଖୁବ୍ ଉତ୍ସାହ ଉଦ୍ଦୀପନାର ସହ ଅଧ୍ୟାପକ ବୈଷ୍ଣବ ସାମଲେ ନିଜକୁ ପ୍ରସ୍ତୁତ କରି ପକେଇଲେ । ପଲ୍ଲୀରେ ଯାହା ଯାହା ନ ମିଳିବାର ସମ୍ଭାବନା ଥିଲା, ସେଗୁଡ଼ାକ ତରବର ହୋଇ ସଂଗ୍ରହ କରି ପକେଇଲେ । କେନ୍ଦ୍ରରେ ଚାରିଟା ଦିନ କଟେଇବାକୁ ହେବ । ଗୋଟାଏ ଦିନ କାମ । ବାକି ତିନିଦିନ ଫାଙ୍କା—ଖାଲି ତନଖି ଓ ଏସାକର, ତେସାକର ବୋଲି ହୁକୁମ ଚଳେଇବା କଥା । ଏ ତିନିଦିନ ସମୟଟା କଟେଇବାକୁ ମୁଠାଏ ତାଆସ ସୁଟ୍କେଶ୍ ଭିତରେ ପୂରାଉଥିଲେ, ହଠାତ ମନେ ପଡ଼ିଗଲା—ସେ ହେଉଛନ୍ତି କେନ୍ଦ୍ରର ଏକଛତ୍ର ଅଧିପତି । ସେ ପୁଣି ତାଆସ ଖେଳିବେ ଅଧୀନସ୍ଥ ଲୋକଙ୍କ ସାଙ୍ଗରେ ! "ହଟ୍ହଟ୍", କହି ସେ ତାଆସ ମୁଠାକୁ ସୁଟ୍କେଶରେ ନ ପୂରାଇ ପଦାକୁ ଫିଙ୍ଗିଦେଲେ । ଫିଙ୍ଗିଦେବା ପରେ ହୋସ୍ ଆସିଗଲା—ଆରେ ଆରେ, ତାଆସ ମୁଠାଟା କେନ୍ଦ୍ରରେ ସିନା ଦରକାର ପଡ଼ି ନଥାନ୍ତା, ଏଠି ତ ସାଙ୍ଗ ଅଧ୍ୟାପକମାନଙ୍କ ସଙ୍ଗେ ଜମିଥାଆନ୍ତା ! ଫୋପାଡ଼ି ଦେବାଟା ଭୁଲ ହୋଇଗଲା । ମୁଠାଟାକୁ ଗୋଟାଇ ଆଣିବାକୁ ଯାଇ ଦେଖିଲେ, ତାହା ନର୍ଦ୍ଦମା ଭିତରେ ଆତ୍ମହତ୍ୟା କରିସାରିଲାଣି । 'ଜାନେ ଦୋ' କହି ସେ ଫେରି ଆସିଲେ ଆଉ ଫୁରୁସତ ଥିବା ତିନୋଟି ଦିନ ପଲ୍ଲୀ ଉପରେ ନନ୍ଦକିଶୋର ଓ ସଚ୍ଚିରାଉତରାୟ ଛାଡ଼ିଯାଇଥିବା ବିଷୟ ଉପରେ ତିନି ସତା

ଏକୋଇଶଟା କଡ଼କ୍‌ଚୁର କବିତା ଲେଖି ପକେଇବାକୁ ଠିକ୍ କରି ନନ୍ଦକିଶୋର ଗ୍ରନ୍ଥାବଳୀ ଓ ପଲ୍ଲୀଶ୍ରୀ ବହି ଦୁଇଟି ସୁଟ୍‌କେଶ୍ ଭିତରେ ପୂରେଇଲେ । ଟ୍ରକ୍‌ରେ ମାଲମତା ବୋଝେଇ କରି, ସାମଲେ ଥାଟେସଙ୍ଘେ ଭୋଟ୍ କେନ୍ଦ୍ରକୁ ରମାନା ହୋଇଗଲେ । ଟ୍ରକ୍ ଧକଡ଼୍ ଚକଡ଼୍ ହୋଇ କେନ୍ଦ୍ର ଆଡ଼େ ଧାଇଁଥିଲାବେଳେ ମୁଣ୍ଡିଘରର (ହେଡ଼୍‌କ୍ୱାଟର) ଅଗ୍ରସୂଚନା- ଗୁଡ଼ିକ ମନେପକାଇ ସେ ଭାବୁଥାଆନ୍ତି—କେନ୍ଦ୍ରଟି ନିଶ୍ଚୟ ଆ ସ୍କୁଲ ଘର । ଘରଟି ନିଶ୍ଚୟ ପକ୍‌କା ଘର ହୋଇଥିବ। କେଉଁ ଗାଆଁରେ ଆଜି- କାଲି ବିଜୁଳିବତି ନାହିଁ ଯେ ସେଠି ନଥିବ ? ବିଜୁଳି ପଙ୍ଖା ନିଶ୍ଚୟ ଗୋଟିଏ ଥିବ । ସେଇ ଯଥେଷ୍ଟ । ବି. ଡ଼ି .ଓ. ଅଗରୁ ଆମ ରହିବା କୋଠରି ଆଉ ଭୋଟ୍‌ଦେବା ବଡ଼ ଘରଟି ସଜାଇକରି ରଖିଥିବେ । ରହଣିଟା ବେଶ୍ ଆରାମଦାୟକ ହେବ । ଖାଇବା ପିଇବା କଥା ଛାଡ଼ । ମଫସଲର ଆତିଥ୍ୟ, ଖାଣ୍ଟି ଦୁଧ, ଗୁଆଘିଅ, କୁକୁଡ଼ା, ଖାସି ବିଷୟରେ ପ୍ରଶ୍ନ କରିବାକୁ ନଥିବ । ରେଭେନ୍‌ସା କଲେଜର ଜଣେ ଅଧ୍ୟାପକ ଯେତେବେଳେ ପ୍ରଧାନ କର୍ମକର୍ତ୍ତା ଭାବରେ ଯାଉଛନ୍ତି, ବି. ଡ଼ି. ଓ. ଏସବୁ ଜିନିଷରେ ଅଭାବ ରଖିଥିବେ ନା ! କିଏ ଜାଣେ ବି. ଡ଼ି. ଓ. ଟି ତାଙ୍କ ଛାତ୍ର ନ ହୋଇଥିବ ! ଏତକ ହୋଇଥିଲେ ତ କାମ ଫତେ ।

ଏହାପରେ ତିକ୍କିଶାଳରୁ ଢେଙ୍କାନାଳ ଯାଏ ଭାବୁ ଭାବୁ ଟ୍ରକଟା କେନ୍ଦ୍ର ପାଖରେ ପହଞ୍ଚିଗଲା । ବୈଷ୍ଣବ ସାମଲେ ଡ୍ରାଇଭରକୁ ପଚାରିଲେ— "କହେ, ଏଠି କିଆଁ ଅଟକେଇଲ ?"

"ଆଜ୍ଞା, ଏଇ ପରା କେନ୍ଦ୍ର ।"

"ଆରେ ନା ନା, ଏଇଟା ଖଣ୍ଡିଆ ସ୍କୁଲଘରଟାଏ, ଭଙ୍ଗାକାନ୍ଥ; ଯା ଘରପାଖରେ ବାଡ଼ କାହିଁ ? କେନ୍ଦ୍ର ପରା ଗାଁ ସ୍କୁଲଘରେ ହୋଇଛି ? ଏଇଟା କଅଣ ସ୍କୁଲଘର ?"

"ଆଜ୍ଞା ହିଁ । ଆପଣ ସହରର ସ୍କୁଲ ସାଙ୍ଗରେ ଗାଁ ସ୍କୁଲର ତୁଳନା କରୁଛନ୍ତି କାହିଁକି ? ଏଇ ପାଖ ଗାଆଁରେ ପରା ମୋ ଘର । ମୁଁ ଜାଣିନି ? ଏଇଠି ରହିବାକୁ ହେବ ।"

"କ ଆଶ୍ଚର୍ଯ୍ୟ ! ଗୁହାଳ ପରି କୋଠରି ଗୋଟିଏ । ତାହାରି ଭିତରେ ଆମେ ସମସ୍ତେ ରହିବୁ, ଖାଇବୁ, ପିଇବୁ, ଶୋଇବୁ ? କାହାରି ଦେଖାନାହିଁ, କଥା କଅଣ ? ବି.ଡ଼ି.ଓ. କାହିଁ ?"

"ଆଜ୍ଞା, ବ୍ଲକ୍ ଅଫିସ୍ ଏଠାରୁ ଛଅ କିଲୋମିଟରି ବାଟ ହେବ । ସେ ଥିବେ କି ନଥିବେ କେଜାଣି ! ସେ କଣ୍ଟ୍ରାକ୍ଟରଙ୍କୁ ବରାଦ ଦେଇ ଶୋଇ ପଡ଼ିଥିବେ । କଣ୍ଟ୍ରାକ୍ଟରି କି ଗାଁଅ ମୁଖିଆ କାହାରି ଦେଖାଦର୍ଶନ ନାହିଁ ।"

ଘର ଭିତରଟା ପରୀକ୍ଷା କରିବାକୁ ବୈଷ୍ଣବ ସାମଲେ ପଶି ଯାଉ ଯାଉ ମୁଣ୍ଡରେ ଗୋଟାଏ ଲଙ୍ଗଳା ଚୁଅ ଗେଡ଼ ହୋଇଗଲା । 'ବାପାଲୋ' ବୋଲି କୁହାଟି, ସାମଲେ ବସି ପଡ଼ିଲେ । ବିଶେଷ କିଛି କ୍ଷତ ହୋଇ ନଥିଲା । ତଥାପି ଟିକିଏ ଡେଟଲ୍ ମାରିଦେଇ କହିଲେ—ଘରେ ନପଶୁଣୁ ମୁଣ୍ଡରେ ଗୁଳି ବାଜିଲାଣି । ଆଗକୁ କଅଣ ହେଉଛି ଦେଖାଯାଉ ।

ଘର ଚାରିପାଖ କାନ୍ଥରେ ସହସ୍ର କଣା । ମାଟିକାନ୍ଥ ବର୍ଷାରେ ଧୋଇ ହୋଇଯାଇ ଚାଲୁଣୀ ପରି ହୋଇଯାଇଛି । ପାଖରୁ ଲୋକଙ୍କୁ ଦୂରେଇ ରଖିବାକୁ ବାଡ଼ବି ଟିକିଏ ନାହିଁ । ସେ ଖୁବ୍ ବିବ୍ରତ ହୋଇପଡ଼ିଲେ । ଚାଳକୁ ଚାହିଁ ଦେଖିଲେ ତାହା ମଧ୍ୟ ଚାଲୁଣୀ । ବିରକ୍ତ ହୋଇ ସେ ବି.ଡ଼ି.ଓ.ଙ୍କ ପାଖକୁ ଲୋକ ପଠାଇଲେ । ବି.ଡ଼ି.ଓ. ବି କାହାନ୍ତି ?

କଣ୍ଟ୍ରାକ୍ଟରି, ବି.ଡି.ଓ., ଗାଁଅର ମୁଖିଆ ଲୋକ କି ନିର୍ବାଚନ ଫୁଲ୍‌କାରେ ଠିଆହୋଇ ଜାକୁଟ୍ଟୋଟ ମାରୁଥିବା ମାଲମାନଙ୍କର କାହାରି ବି ଦେଖାନାହିଁ । ଆଠଦଶଜଣ ବାଉବୁଲା କୌତୂହଳାକ୍ରାନ୍ତ ଟୋକାଙ୍କ ଛଡ଼ା ଆଉ କେହି ହାବୁଡ଼େ ପଡ଼ିଲେ ନାହିଁ ।

ସନ୍ଧ୍ୟା ହେଲା । ସାମଲଙ୍କ ପେଟ ଚାହାଜଳଖିଆ ପାଇଁ କଅଁ କଅଁ ହୋଇ ଡାକ ଛାଡ଼ିଲା । ପିଲାଙ୍କଠାରୁ ସନ୍ଧାନ ନେଇ, ଜଣକୁ ଚାହାଜଳଖିଆ ପାଇଁ ପଠାଇଲେ । ସେ ଗୋଟାଏ ପତ୍ରର ଠୋଲାରେ କିଛିଟା ମୁଡ଼ି ମୁଆଁ ଧରି ଆସି କହିଲା—"ଏହାଠାରୁ ଭଲ ଆଉ କିଛି ଜଳଖିଆ ନାହିଁ । ଚାହା

ମିଳବ ଯେ ଗୁଡ଼ପକା । ଆଜ ସେ ଗିଲାସରେ ପିଇଲେ ଆପଣ ବାନ୍ତି କରି ପକେଇବେ । ମୁଁ ଗୋଟାଏ ସଜେଇଦେଇ ପିଇଦେଇ ଆସିଲି ।"

ସାମଲେ ଦାନ୍ତ କଡ଼ମଡ଼େଇ ଉଠିଲେ । ବି.ଡ଼ି.ଓ., ଥାନାବାଲା ଓ ପ୍ରାର୍ଥୀମାନଙ୍କର ପରମାୟୁ ସେହି ମୁହୂର୍ତ୍ତରେ ଶେଷ ହୋଇଯାଉ ବୋଲି ଅନୁଚ୍ଚ ଗଳାରେ ଆଦେଶ ଦେଲେ ।

ନିଶାର ସମୁଦ୍ର ଭିତରେ ସାମଲଙ୍କର ଗୋଡ଼ ଭୂଇଁ ଛୁଇଁଲା । ଗାଆଁ ଭିତରକୁ ଯାଇଥିବା ସିପାହିଟି ଦୁଇ ତିନିଜଣ ଲୋକଙ୍କୁ ଧରି ଫେରିଲା । ସେମାନଙ୍କ ହାତରେ ହାଣ୍ଡି ଓ ଅନ୍ୟାନ୍ୟ ଗୋଷେଇ ସରଞ୍ଜାମ ଥିଲା । ସିପାହିଟି ସାମଲଙ୍କୁ କହିଲା—"ଆଜ୍ଞା, ଏଠା ଲୋକଗୁଡ଼ାକ ଭାରି ସନ୍ଦେହୀ । ସରକାରୀ ଲୋକେ ଯାହା ଖାଇବେ କି ନେବେ, ତା'ର ପଇସା ଦେବେ ନାହିଁ ବୋଲି ଭାବି 'କିଛି ନାହିଁ' ବୋଲି କହୁଛନ୍ତି । ଏମିତିକି ପାଖ ମାଡ଼ୁନାହାନ୍ତି । ପାଖକୁ ଗଲେ କାଳେ ବେଠିରେ ଖଟେଇବେ, ସେ ଡରରେ ପାଖ ମାଡ଼ୁନାହାନ୍ତି । ଆଜି ରାତିଟା ଆମକୁ ହାତେ ହାତେ ସବୁ କରିବାକୁ ହେବ । ବି.ଡି.ଓ. ଯାଇଛନ୍ତି ଭୁବନେଶ୍ୱର କାମରେ । କାଲି କି ପଅରିଦିନ ଆସିବେ । ଥାନାବାଲାଏ କଟାଳ କରିବାରୁ ଏମାନେ ଜିନିଷପତ୍ର ଧରି ଆସିଛନ୍ତି । ଆଗତୁରା ମଜୁରି ପାଇଲେ ବୋଲହାକ ବି କରିବେ ।

ସାମଲେ ତରବର ହୋଇ ଆଗତୁରା ଆଠଟା ଟଙ୍କା ବଢ଼େଇ ଦେଲେ ଆଜ ପରିଲେ ରାତିର ବରାଦ କଲେ । ଦ'ପହରିଆ ଓ ସନ୍ଧ୍ୟା ବେଳା ଏପର୍ଯ୍ୟନ୍ତ ପାଟିକୁ ଯାଇ ନଥାଏ । ସମସ୍ତେ ଏକମନ ହୋଇ ଲାଗି-ପଡ଼ିବାରୁ ରାତିପିଆ ସରୁ ସରୁ ରାତି ନଅ ଓ ଗୋଷେଇ ସରୁ ସରୁ ରାତି ଗୋଟାଏ ବାଜିଗଲା ।

ପଲ୍ଲୀର ଆକାଶ ତଳେ ଅଧରାତିଆ ନିଦ ଉପଭୋଗ କରିବାକୁ ସାମଲଙ୍କର ଭାରି ମନ ଡାକୁଥିଲା । ହେଲେ ଭୋଟ୍‌ବାକ୍‌ସ, କାଗଜ ଆଦି ଦାୟିତ୍ୱପୂର୍ଣ୍ଣ ଜିନିଷଗୁଡ଼ିକ ତାଙ୍କୁ ସେଥିରୁ ନିବର୍ତ୍ତାଇଲା । ସେ ସେଗୁଡ଼ିକୁ ଘର ଭିତରେ ରଖି, ତା'ରି ପାଖରେ ଶେଯ ପାତିଲେ । ଝରକା ଖଣ୍ଡିଆମଣ୍ଡିଆ ଘରର ଅବ୍ୟବସ୍ଥା ବି ତାଙ୍କୁ ବିଶେଷ ବିଚଳିତ କଲା ନାହିଁ । ପଲ୍ଲୀର ମାଟିରେ ଶୋଇ, ତା'ର ମଧୁର ବାସ୍ନା ଓ ଉଷ୍ମତା ଅନୁ-

ଭବ କରିବାକୁ ସେ ଶ୍ରେୟସ୍କର ମନେକଲେ । ଶଯ୍ୟାରେ ଶୋଇ, ଗୁଳର ଫାଙ୍କବାଟେ ପଲ୍ଲୀ ଆକାଶ ଦେଖିପାରୁଥିବାରୁ, ସେ ନିଜକୁ ଭାଗ୍ୟବାନ୍ ମନେକଲେ । ସିପାହିମାନେ ଭିତରୁ-କଳା-କବାଟ ବାହାର ପାଖରେ ପହରା ଦେଲେ ।

ସାମଲଙ୍କ ଆଖିକୁ ନିଦ ଆସୁନଥାଏ । କଣା ଗୁଳ ଭିତରେ ଗଣ୍ଡ ଆକାଶର ଦୃଶ୍ୟ ବିଷୟରେ ନନ୍ଦକିଶୋର ତା ସହିତ ଗଭୀରଭାବରେ କାହିଁ କେଉଁଠି କିଛୁ ତ ଲେଖିନାହାନ୍ତି ! କାନ୍ଥର ପ୍ରାକୃତିକ ଝରକା ଭିତର ଦେଇ ଦିଶୁଥିବା ସୁପ୍ତ ପଲ୍ଲୀର ଛବି ତ କେହି ଦେଇନାହାନ୍ତି ! ଆ ! ଏ'ଟା ବଡ଼ିଆ ବିଷୟ ମିଳିଗଲା । କଲେଜକୁ ଗଲାମାତ୍ରେ ଛାତ୍ରମାନଙ୍କୁ—

ଇଲେ ବୋପାଲେ, ଏଇଟା କଅଣ ଲୋ—ଧାଇଁ ଆସରେ, ମାରି ପକେଇଲାରେ—ରଡ଼ରେ ବୈଷ୍ଣବ ସାମଲ ହଠାତ୍ ପ୍ରକାଣ୍ଡ ଗର୍ଜନ କରି ଉଠିଲେ । ସିପାହିମାନେ ପଦାରେ ଘଙ୍ଗୁଡ଼ିମାରି ପହରା ଦେଉଥିଲେ । ପହିଲେ ହାଉଳଖାଇ ପରସ୍ପରଙ୍କୁ ଚୋର ଭାବି ପରସ୍ପରେ ଗଡ଼ାଗଡ଼ି ହୋଇ-ଗଲେ । ଚେତା ଆସିବାରୁ ଦୁଆର ପେଲିଲେ । କବାଟ ଭିତରୁ କଳା । ସାମଲ ବାବୁଙ୍କର ଚିତ୍କାର ଲାଗି ରହିଥାଏ । ସିପାହିମାନେ ଡିହମାରି କବାଟ ଭାଙ୍ଗି, ଭିତରେ ପଶିଲେ; ଆଉ ରଡ଼ି ଛାଡ଼ିଲେ, "ଶାଳା କାହାଁ ଗିୟା ଚୋର । ଶାଲକା ଖପୁରି ଉଡ଼ାଦେଙ୍ଗେ" ।

ସାମଲବାବୁ ଟିକିଏ ସାହସ ପାଇ ଥରୁଆ କଣ୍ଠରେ କହିଲେ—"ଶଳା ଚୋରଟା ମୋତେ ଗୋଟାଏ ମୋଟା ଦଉଡ଼ିରେ ବାନ୍ଧିବାକୁ ବସିଥିଲା । ପାଟି କରିବାରୁ ଦଉଡ଼ିଟାକୁ ଟାଣି ନେଇଗଲା । ଶଳା, ଘର ଭିତରେ କେଉଁଠି ଅଛି । ଆଲୁଅ ଲଗା ହେଲା । ସାମଲବାବୁ ବି ଟର୍ଚ୍ଚଟା ଅଣ୍ଡାଳି ପାଇଲେ । ଲଣ୍ଠନ ଓ ଟର୍ଚ୍ଚ ଉଭୟ ଜଳି ଉଠିଲେ । ଚୋର ପାଇ ଗୋଟାଏ କଣରେ । ତା' ଚେହେରା ଦେଖି ସମସ୍ତଙ୍କ ହାହା ଶିଡ଼େଇ ଉଠିଲା । ସମସ୍ତେ ଦୂରରୁ ଦେଖିଲେ, ଏକ ମସ୍ତବଡ଼ ଡେମଣାସାପ । ଗୋଟାଏ ବଡ଼ ମୂଷାକୁ ପାଟିରେ ଅଧା ପୂରେଇ ଧରିଛି । ମଥାନରେ ରାତି ଭ୍ରମଣରତ ମୂଷିକଟିକୁ ଖାପୁକରି ଧରିପକେଇଲାବେଳେ, ଭାରସାମ୍ୟ ରକ୍ଷା କରି ନପାରି ମୂଷାସହ ସାମଲବାବୁଙ୍କ ଉପରେ ଖସିପଡ଼ିଲା ।

ସାମଲବାବୁ ଏପରି ବେଆଦବ୍ ଡେମଣାଟାକୁ ମାରି ଦେବାକୁ ଅର୍ଡ଼ର ଦେଲେ । କିନ୍ତୁ ସେ ଡେମଣାଟି, ମନୁଷ୍ୟ ବିଶେଷତଃ କୃଷକମାନଙ୍କ ବନ୍ଧୁ ବୋଲି ତାଙ୍କୁ ବୁଝେଇ ଦିଆଯିବାରୁ ସେ ନିଜ ଅର୍ଡ଼ରଟାକୁ ପ୍ରତ୍ୟାହାର କରିନେଲେ ଓ ଡେମଣାକୁ ସସମ୍ମାନ ଘରୁ ବାହାରି ଯିବାର ଆଶୁ ବ୍ୟବସ୍ଥା କରିଦେଲେ ।

ଆଜି କି କାହାକୁ ନିଦ ହୁଏ । ଭୋର୍ ହୋଇ ଆସିବା ଉପରେ । ସାମଲଙ୍କର ମନେପଡ଼ିଗଲା—ଆରେ, ଏଠି ତ ଫ୍ଲସ୍ ଲାଟ୍ରିନ୍ ନାହିଁ । ଅବଶ୍ୟ ତାହାଠାରୁ ଭଲ ମୁକ୍ତାକାଶ ପାଇଖାନା ଅଛି; କିନ୍ତୁ ତାହା ରାତି ଥାଉ ଥାଉ ବ୍ୟବହାର କରିବାକୁ ହେବ, ନଚେତ୍ ଇଜ୍ଜତ ମହତ ଏଇ ପଲ୍ଲୀରେ ବିସର୍ଜନ କରି ଯିବାକୁ ହେବ । ଅଦୂରରେ ନଈ । ସେଠି ଶୌଚ କର୍ମ ସମାପନ କରିବା କଥାଟା ଆଗରୁ ସେ ସଂଗ୍ରହ କରି ସାରିଥିଲେ । ସିଗାରେଟ୍‌ଟାଏ ଲଗେଇ, ଟର୍ଚ୍ଚଟା ଧରି, ସେ ପ୍ରକୃତି ମେଣ୍ଟେଇବାକୁ ବାହାରିଗଲେ । ବାଟରେ ସେ ଜାଣିପାରିଲେ ଯେ ତାଙ୍କଠାରୁ ଆହୁରି ତର୍କା ବି ଅଛନ୍ତି । ସେ ଗଲାବେଳେ ଏଣେତେଣେ ବସିଥିବା ନରନାରୀ ତାଙ୍କୁ ଭକ୍ତି ଦେଖାଇ ଠିଆ ହୋଇ ଯାଉଥାଆନ୍ତି । ଏ ଛିଦ ବଳ, ଗାଉଁତରଫରୁ କେହି ଦେଇନାହାନ୍ତି ଭାବି, ସାମଲେ ଟିପା ଖାତାରେ ଟିପି ପକେଇବେ ବୋଲି ମନେମନେ ସ୍ଥିର କରିନେଲେ ।

ସକାଳ ହେଲା । ସମସ୍ତଙ୍କର ନିତ୍ୟକର୍ମ ସରିଲା । କଣ୍ଟ୍ରାକ୍‌ଟର କି ବି. ଡ଼ି. ଓ. କାହାରି ଦେଖା ନାହିଁ । ଘର ଝାଆରି, ବାଡ଼ବନ୍ଧ, ଅନ୍ଧାରୁଆ କୋଠରି ଝାଆରି, କେତେ କାମ ବାକି । ଶେଷରେ ସାମଲେ ନିଜେ ନିଜେ ଶାବଳ, କୋଦାଳ ଧରିଲେ । ସବୁ କାମ ସରିବା ପରେ, ଦିନ ଉତରନ୍ତି ହେଲା ବେଳକୁ, ବି. ଡ଼ି. ଓ. କଣ୍ଟ୍ରାକ୍‌ଟର ସହ ଆସି ପହଞ୍ଚିଲେ । ବି. ଡ଼ି. ଓ. ଜଣକ ଯଦି ସାମଲଙ୍କର ପୂର୍ବତନ ଛାତ୍ର ନହୋଇ ଥାଆନ୍ତେ ତେବେ ସେ ତାଙ୍କୁ କଞ୍ଚା ଚୋବେଇ ଯାଇଥାଆନ୍ତେ । ଯାହା ହେଉ, ଛାତ୍ର ବି. ଡ଼ି. ଓ.ଙ୍କ ଆବିର୍ଭାବ ଗୁରୁ ପ୍ରିଜାଇଡ଼ିଂ ଅଫିସରଙ୍କୁ ବହୁ ହଲାପଟାରୁ ରକ୍ଷାକଲା । ରାତିଟା ଝୁରୁଝୁରୁରେ କଟିଗଲା । × ×

ରାତି ପାହିଲେ ଭେଟ୍ । ବଡ଼ ସକାଳୁ ସାମଲେ ସମସ୍ତଙ୍କ ସହ ଜାଗତିଆର ହୋଇଗଲେ । ଘୁରିଆଡ଼ ତନଖି କରୁକରୁ ସାମଲେ ଦେଖିଲେ,

ଜଣେ ପ୍ରାର୍ଥୀଙ୍କର ପୋଷ୍ଟର ସବୁ କାଢ଼ି ଜଣେ ଆଣି ଗଛରେ କେନ୍ଦ୍ର ପାଖରେ ଲଗେଇ ଦେଇଛନ୍ତି । ଏକାବେଳେକେ ବେଆଇନ୍ କାମ । ସବୁଯାକ କୁକୁଡ଼ା ମାର୍କା ପୋଷ୍ଟର । ସେଗୁଡ଼ାକ ଚିରାଗଲା । ରିପୋର୍ଟ କରିବା ପାଇଁ ଖଣ୍ଡିଏ ଜବତ୍ କରି ରଖାଗଲା । କଥାଟା ସ୍ପଷ୍ଟ ହୋଇଯିବାରୁ କୁକୁଡ଼ା ମାର୍କା ପ୍ରାର୍ଥୀ ଜଣକ ଧଇଁସଇଁ ହୋଇ କହିଲେ—"ଆଜ୍ଞା, ଏଇଟା ବଦମାସ୍ ଦାଆ ଚିହ୍ନବାଲା ପ୍ରାର୍ଥୀର କାମ । କାନ୍ଥ ବାଡ଼ରୁ ମୋ ପୋଷ୍ଟର ଛଡ଼େଇ, ସବାଗଛ ଏଠି ଆଣି ମାରି ଦେଇଛନ୍ତି । ମୋ ନାଆଁରେ ଯେମିତି ଗୋଟାଏ କେଁ ରହିଯିବ, ତା'ର ଗୋଟାଏ ଫନ୍ଦି ।"

ସାମଲେ ମୁଣ୍ଡରେ ହାତଦେଇ ବସି ପଡ଼ିଲେ । କି ଚମତ୍କାର ଟାଉଟରି କୌଶଳ । ଏଡିକବେଳେ ଗୋଟାଏ ବଡ଼ପାଟିଆରେ ଡାକ ଶୁଭିଲା, "ଦାଆ ଚିହ୍ନରେ ଭୋଟ୍ ଦିଅ ।" ସିପେହିମାନେ ବଡ଼ପାଟିଆ ଆଡ଼କୁ ଖେଦିଗଲେ । ଦାଆବାଲାଏ ଚଟାପଟ୍ ଆସି ଫେରାଦ ହେଲେ— "ଏଗୁଡ଼ାକ କୁକୁଡ଼ାଙ୍କ କାମ । ସେ ବଡ଼ପାଟିଆକୁ ଜବତ କରନ୍ତୁ ଆଜ୍ଞା ।" ସାମଲେ ଦେଖିଲେ ଉଭୟେ ପେଞ୍ଚ ମାରିବାରେ ସିଦ୍ଧହସ୍ତ ।

× × ×

ବୁଢ଼ିଆଣୀ ଜାଲ ମେଲେଇ ମାଛିଙ୍କୁ ଚକେଇ ବସିଲା ପରି, ସାମଲବାବୁ ସବୁ ଠିକ୍‌ଠାକ୍ କରିସାରି ଭୋଟରଙ୍କୁ ଅପେକ୍ଷା କରି ରହିଲେ । ପହିଲେ ଗୋଟିଏ ବୁଢ଼ୀ ଆସି ସାମଲବାବୁଙ୍କୁ ସ୍ନେହରେ କହିଲା—"ହଇରେ ପୁଅ, କୋଉ ଚିହ୍ନରେ କାଠି ମାରିବି, କହିଲୁ ? ଦଳେ କହୁଛନ୍ତି ଦାଆରେ ଲଗା, ଆଉ ଦଳେ କହୁଛନ୍ତି କୁକୁଡ଼ାରେ ଲଗା । ମୋ ମୁଣ୍ଡକୁ ଅଳମେଇଦେଇ ସାବରେଇ ଦେଲେଣି । ପୁଅ ! ତୁ ଯୋଉଥିରେ କହିବୁ ମୁଁ ସେଇଥିରେ ଲଗେଇବି ।"

ସାମଲବାବୁ ବହୁତ ବୁଝେଇସୁଝେଇ ନିଜ ଇଚ୍ଛାମୁତାବକ ଲଗେଇବାକୁ ଯେତେ କହିଲେ ବି ବୁଢ଼ୀ ନଶୁଣେ । କ୍ରମେ ସେ ଭୋଟ୍ କଥା ଛାଡ଼ି ହେଇ, ତା' ପୁଅ କପରି ବୋହୂ କଥାରେ ପଡ଼ି ତାକୁ ପଚାରୁନି, ତା'ର ଏକ ବଡ଼ ଇତିହାସ ବର୍ଣ୍ଣନା କରି ଲୁଗାକାନିରେ ଆଖି ପୋଛିଲା । ବହୁ ବୁଝାବୁଝି ପରେ ବୁଢ଼ୀ ଗୁପ୍ତ କୋଠରିକୁ ଗଲା । ଆଖି ବୁଜି ମା'

ମଙ୍ଗଳାଙ୍କୁ ସୁମରଣା କରି କାଗଜ ଉପରେ ମୋହରଟାକୁ ମାଡ଼ିଦେଲା ଓ କାଗଜଟାକୁ ମୋଡ଼ିମାଡ଼ି ସାମଲବାବୁଙ୍କ ହାତକୁ ବଢ଼େଇ ଦେଇ କହିଲା— "ଦଶଟି ପୁଅ ଦ' ଟଙ୍କା, ଯାଏ ମୁଁ ଘରକୁ; ଚେଣେ ବୋହୂଟା ଘରେ କେତେ କଅଣ ଖିନଖରାପ କରିପକେଇଲଣି।"

ସାମଲବାବୁ ଯେତେ ବୁଝେଇଲେ ବି ବୁଢ଼ୀ ନବୁଝେ। ସେତେବେଳକୁ ଆଉ ଆଉ ଭୋଟର୍ ସବୁ ଆସିଗଲେଣି। ବୁଢ଼ୀ ସାମଲବାବୁଙ୍କୁ ଗାଲି ପରି ଘେରିଛି। ଶେଷରେ ପୁଲିସ ଧମକେଇବାରୁ ବୁଢ଼ୀ କୁନ୍ଥି କୁନ୍ଥି ହୋଇ ଚାଲିଗଲେ।

କିଛି ସମୟ ସୁରୁଖୁରୁରେ କଟିଯିବା ପରେ, ପୁଣି ଗୋଟିଏ ବୁଢ଼ୀ ଆସି ସାମଲଙ୍କୁ ଘେରିଲା। ପାଟିତୁଣ୍ଡ ନକରିବାକୁ ଯେତେ କହିଲେ ବି ବୁଢ଼ୀ ନଶୁଣେ। ସେ କହିଗଲା—"ଦାଆବାଲା ମୋ ବୁଢ଼ା ଖଣ ପକେଇଛି। ଆଉ କୁକୁଡ଼ାବାଲା ମୋ ପୁଅ ଖଣ ପକେଇଛି। ମୁଁ ଦ'ଟା ଚିହ୍ନରେ ମୋହର ମାରିବି। ତୁ ପୁଅ ସାକ୍ଷୀ ଥା, ମୁଁ ତୋ ଆଗରେ ମୋହର ମାରିବି।"

କେବଳ ଗୋଟିଏ ଚିହ୍ନରେ ମାରିବା ପାଇଁ ନିୟମ ଅଛି ବୋଲି କହିବାରୁ, ବୁଢ଼ୀ ଉତ୍ତେଜିତ ହୋଇପଡ଼ି କହିଲା—"ଏଁ, କି କଥା କହୁଛୁ; ପୁଅ ଆଡ଼େ ଦେଲେ ବୁଢ଼ାକୁ ହାନି, ବୁଢ଼ା ଆଡ଼େ ଦେଲେ ପୁଅକୁ ହାନି। ମୋର ଅମଙ୍ଗଳ ଚାହୁଁଛୁ ?"

ବୁଢ଼ୀ କାହା କଥା ନଶୁଣି ସମସ୍ତଙ୍କୁ ସାକ୍ଷୀ କରି, ସମସ୍ତଙ୍କ ଆଗରେ ଭୋଟ୍‌କାଗଜ ଉପରେ ଦୁମ୍ ଦୁମ୍ କରି ଦୁଇଟାଯାକ ଚିହ୍ନରେ ବାଡ଼େଇ ଦେଇ ଓ କାଗଜଟାକୁ ସାମଲଙ୍କ ଆଡ଼କୁ ଫିଙ୍ଗିଦେଇ ଟମଟମ ହୋଇ ଚାଲିଗଲା।

ଜଣେ ପାକୁଆ ବୁଢ଼ା କଟଉ ମାଡ଼ ଆସି ପରାମର୍ଶ ଆରମ୍ଭ କରିଦେଲା—"ହେଃ ! ନଜାଣି ନରୋତ୍ତମ ଦାସ ବଗିଡ଼ ଯାଇଥିଲା। ମୁଁ ଏ ଦୁହିଁଙ୍କ ଭିତରୁ କାହାକୁ ଭୋଟ୍ ଦେବିନି। ବିରିଟିଷ୍ ବାଙ୍କଶ କୋଉଠି ଅଛି କହ। ମୁଁ ସେଇଠି ଦେବି। କେଡ଼େ ଅଇସରେ ରଖି ନଥିଲା ସେ ! ବାଘ-ବଳଦଙ୍କୁ ଏକାଠି ପାଣି ପିଆଉଥିଲା। ଏ ଛତରଖିଆଗୁଡ଼ାକ କେଉଁ

ଭଲ ବୁଝନ୍ତି । ପାଟିକେଇ ପୂଜାକେଇ ଭୋଟ୍‌ଟି ହାତ କରିନେବେ, ତାପରେ—"

ସାମଲେ ପାଟି କରି ଉଠିଲେ—"ହୋ ମଉସା ! ଏ ଘର ଭିତରେ କିଛି ପାଟିଗୁଣ୍ଡ କରନାହିଁ । ଭୋଟ୍ ସରିପାଉ, ତା' ପରେ ନିଜ ଘର ଆଗରେ ମନଇଚ୍ଛା ଯାହାକୁ ନାହିଁ ତାକୁ ଗାଳିଗୁଲଜ କରୁଥିବ ।"

ବୁଢ଼ା ଖିଙ୍କାରି ଉଠିଲା—'ହୁଁଃ ! ତମେ ସେଇ ଲାଉର ମଞ୍ଜି । ତମକୁ ମୋ କଥା ଭଲ ଲାଗିବ କୁଆଡ଼ୁ ? ନାଃ, ଏ ଛତରଙ୍କୁ ମୁଁ ଭୋଟ୍ ଦେବିନି ।" ବୁଢ଼ା ରାଗରେ ଭୋଟ୍ କାଗଜଟା ଚିରି ପକାଇଲା । ଟୁକୁରାତକ ଗୋଟେଇ ରଖି, ସାମଲେ ବୁଢ଼ାକୁ ପୁଲିସ୍ ଜିମାରେ ଦେଲେ ।

କିଛି ସମୟ ବାଦ୍ ଗୋଟିଏ ସ୍ତ୍ରୀଲୋକ ମସ୍ତବଡ଼ ଓଢ଼ଣାଟାଏ ପକେଇ ଆସିଲା । ତା' ହାତରୁ କାଗଜ ନେଇ କର୍ମଚାରୀମାନେ ତା' ନାଁ, ତା ସ୍ୱାମୀ ନାଁ ସବୁ ଡାକଗଲେ । ସେ ମଧ୍ୟ ସବୁଥିରେ ମୁଣ୍ଡ ଟୁଙ୍ଗାରିଲା । ସ୍ତ୍ରୀଲୋକଟି ଭୋଟ୍ କାଗଜ ଓ ମୋହର ନେଇ ଅନ୍ଧାରୁଆ କୋଠରି ଭିତରକୁ ଗଲା । ସାମଲେ ଚାହିଁ ରହିଥା'ନ୍ତି । ସ୍ତ୍ରୀଲୋକଟି ଫେରିଲାବେଳକୁ ଦୁର୍ଯୋଗବଶତଃ ତା' କାନିଟା ବାଉଁଶ ତାଟିରେ ଲାଗିଯାଇ ଟାଣି ହୋଇ-ଗଲା । ଓଢ଼ଣାଟି ଟେକ ହୋଇଗଲା । ସାମଲେ ଦେଖିଲେ ତରୁଣୀର ହଠାତ୍ ଲିଙ୍ଗ ପରିବର୍ତ୍ତନ—ମୁହଁରେ ନିଶ । ସାମଲେ ଭାବୁଥାଆନ୍ତି, ଜଣେ ସ୍ତ୍ରୀ ଲୋକର ଏତେବଡ଼ ନିଶ ହୋଇପାରେ କି ନା; କେଜାଣି ପଲ୍ଲୀରେ ହେଉ-ଥିବ । ଜଣେ ପୋଲିଂ ଏଜେଣ୍ଟ୍ ଚିଲେଇ ଉଠିଲା—"ଆଜ୍ଞା ଏ ଶଅର ସାଙ୍ଗର ପାଣ୍ଡିଆ । ସ୍ତ୍ରୀ ନୁହେଁ ବୋଲି ନିର୍ଭରଯୋଗ୍ୟ ପ୍ରମାଣ ପାଇବାରୁ, ସାମଲେ ବଜ୍ରମୁଷ୍ଟିରେ ତା' ହାତକୁ ଜାବୁଡ଼ି ଧରି ବାହାରକୁ ଘୋଷାଡ଼ି ନେଇଗଲେ ଓ ପୁଲିସ୍ ଜିମା ଦେଲେ । ଗାଆଁରେ ନଥିବା ଜଣେ ସ୍ତ୍ରୀଲୋକ ନାଆଁରେ ଭୋଟ୍‌ଟାଏ ଦେଇଦେବ ବୋଲି ଏପରି କୌଶଳ କରିଥିଲା ପାଣ୍ଡିଆ । ଆଗରୁ ପ୍ରାୟ ଦଶ ବାରଜଣ ଭୋଟ୍ ଦେଇ ଯାଇଥିବା ଏମିତିଆ ଲମ୍ବ ଓଢ଼ଣାବାଲୀ ଯେ ନିଶ୍ଚିତ ଭାବରେ ଠକେଇ ଭୋଟର୍, ତାହା ସାମଲଙ୍କୁ ଜଳଜଳ ହୋଇ ଦିଶିଲା । ଜଣେ ଭଲ୍ ଚଟ୍ଟୋପାଧ୍ୟାୟ ମୁଚ୍ଛୁପୂନ କରିବାପାଇଁ ସେ ଓଢ଼ଣାବାଲୀଙ୍କ ଭୋଟ୍‌ଦାନ ରୋକିଦେଲେ ।

କୁକୁଡ଼ା ଦଳର କାଉ୍‌ପଟଦାରମାନେ ସେମାନଙ୍କର ଗୋଟିଏ ବଡ଼ ସ୍କୁଲ୍ ଭଣ୍ଡୁର ହୋଇଯିବା ଦେଖି ଉକ୍ରଗ୍ଗଜଳ ଗ୍ଲେବାଇଲେ । ବୋଝ ଉପରେ ନଳିତା ବଡ଼ ପରି, ଦାଆବାଲାଙ୍କ ଟିଟିକାରି ଓ ଥଟ୍ଟା କଥା ସେମାନଙ୍କୁ ଅଥୟ କରି ପକାଇଲା । ସବୁ ନାଟର ଗୋବର୍ଦ୍ଧନ ଏଇ ସାମଲବାବୁ ବୋଲି ସେମାନେ ସ୍ଥିର କରି, କସ୍‌ଜଦରରେ ଟେଙ୍କଟାଏ ଦେବାଲାଗି ଓଳି ଉଣ୍ଡିଲେ । ତେଣେ ଦାଆବାଲା ଏହାର ଟେର୍ ପାଇ, ସାମଲବାବୁଙ୍କୁ ପୂରା ମଦତ୍ ଦେବାକୁ ସଜବାଜ ହୋଇ ରହିଲେ । କ୍ରମେ ବାରୁଦ ଗଦା ଦୁଇଦଳଙ୍କ ଦ୍ୱାରା ଜମିବାକୁ ଲାଗିଲା । ବାକି ରହିଥିଲା ଟିକିଏ ନିଆଁର ଝୁଲ । ସେତକ ବି ଉଡ଼ିଆସି ପଡ଼ିବାକୁ ବେଶି ଡେରି ଲାଗିଲାନି ।

ମେଣ୍ଢା ଅଡେଇ ଆଣି କଂସେଇଖାନା ଖୁଆଡ଼ ଭିତରେ ପୂରେଇଲା ପରି, ଦୁ'ଦଳ ଭୋଟର୍‌ମାନଙ୍କୁ ଭିଡ଼ଓଟାରି ଆଣି ଭୋଟ୍‌ଘର ଖୁଆଡ଼ ଭିତରେ ଭର୍ତ୍ତି କଲେ । ଘର ବାହାରେ ଖୁବ୍ ଭିଡ଼ ଜମିଗଲା । ଉଭୟ ଦଳ ନିଜ ଲୋକଙ୍କୁ ଆଗ'-ଘରଭିତରେ ଭର୍ତ୍ତି କରିବାକୁ ଧସ୍ତାଧସ୍ତି ଆରମ୍ଭ କରିଦେଲେ । ଜଣେ କୁକୁଡ଼ିଆ ବିଦ୍ରୂପ କରି କହିଦେଲା—"ଅଳପେଇସେ ଦାଆ ଧରିଛନ୍ତି । ଯାଉନାହାନ୍ତି ବିଲରୁ ଧାନ କାଟିବାକୁ । ଏଇଠାକୁ ବିଲ ଭାବିଛନ୍ତି ।"

ଜଣେ ଦାଅବାଲା କାଟପାଣି ଲଗେଇଲା —"ଆବେ, ଏ ଦାଆରେ କୁକୁଡ଼ା ବେକସବୁ କଚ୍‌କଚ୍ କଟିଯିବ । ସମ୍ଭାଳ ଏଥର ।"

ବାସ୍ ଏତିକରେ ନିଆଁ ଝୁଲ ଆସି ପଡ଼ିଗଲା । ପୁଲିସ୍‌ବାଲାଙ୍କୁ ଠେଲିଦେଇ ଦୁଇ ଦଳର ଷେଣ୍ଢମାନେ ଘର ଭିତରକୁ ଧସେଇ ପଶିଗଲେ । ସାମଲବାବୁ ଯାହାକୁ ତଡ଼ି ବାହାରକୁ କାଢ଼ିଦେଲେ, ଯୋଗକୁ ସେ ଗୋଟିଏ କୁକୁଡ଼ିଆ ଥିଲା । କୁକୁଡ଼ିଆମାନେ ଚିଲେଇ ଉଠିଲେ, "ଆହେ ଦେଖ ହୋ ! ଏ ହାକିମଟା ଦାଆବାଲାଙ୍କଠାରୁ ଘୁସପତ୍ ଖାଇ ସେମାନଙ୍କୁ ସପୁଟ୍ କରୁଛି ! ଏମିତିଆ ଡାକପୁକାର୍ ପାତରଅନ୍ତର ଆମେ ବରଦାସ୍ତ କରି ପାରିବୁନି । ଆସୁ କଲେକ୍ଟର୍, ଆସୁ ପୁଲିସ୍ ସାହାବ, ଆମେ ଏଇଠି ତା'ର ବଦଲା ନେବୁ ।" ଦାଆବାଲା ସନାଟି ଆସିଲେ—"କେମିତ୍ ! ତୁମେଇ ସବୁ ଦଶମାସିଆ ଆଉ ଆମେ ଖାଲି ପାଞ୍ଚମାସିଆ । ଆବେ ପିଠି

ସମ୍ମାନ ଏଥର ।" ଲାଗିଗଲା ବାତ୍ୟାବେଗରେ ଝୁଲ୍ । ବାଡ଼ ହୋଇଥିବା ବାଉଁଶତକ ଉପାଡ଼ି ନେଇ ସମସ୍ତେ କାମରେ ଲଗେଇଦେଲେ । ଶହ ଶହ ଲୋକଙ୍କ ମାର୍ପିଟକୁ ସ୍ୱର ପାଞ୍ଚଟା ବୁଢ଼ାବୁଢ଼ିଆ ସଦ୍ୟ ଚାଲିମପ୍ରାପ୍ତ ପୁଲିସ୍ କରିବେ ବା କଅଣ ? ଜଣେ ସାମଲବାବୁଙ୍କ ଆଦେଶ ପାଇ ଧାଇଁଲା ଥାନାକୁ । ଏହାରି ଭିତରେ କୁକୁଡ଼ାମାନେ ଘରଟାକୁ ମଚ୍ଛି ପକାଇ ଭୋଟ୍ କାଗଜରୁ କିଛି ଚିରିଗ୍ଲର ପକେଇଲେ । ହେଲେ ଦାଆବାଲାଙ୍କ ତତ୍ପରତା ହେତୁ ସାମଲବାବୁଙ୍କ ବେହରେ ଟିପ ଲଗେଇ ପାରିଲେ ନାହିଁ ।

ପୁଲିସ୍ ତ ପୁଲିସ୍ । ଏକାବେଳେକେ ମିଲିଟାରି ପୁଲିସ୍ । ହାତରେ ଠେଙ୍ଗା ନାହିଁ, ବନ୍ଧୁକ । ଗୁଳିଆଁରେ ଛେରମୁଣ୍ଡ ସମସ୍ତେ ପଳେଇଲେ । ବଗଡ଼ ମୂଷା ମାଡ଼ିବସିଲା ପରି, ପୁଲିସ କେତେଟାଙ୍କୁ ମାଡ଼ିବସିଲେ । ଭୋଟ୍ ଗ୍ରହଣରେ ସେଇଠି ଥିକୁଲ୍ ଥାଇ ପଡ଼ିଲା । ସାନ ଭୋଟ୍ ଗ୍ରହଣ ହେବବୋଲି ସ୍ଥିର ହେଲା ।

ବୈଷ୍ଣବ ସାମଲେ ଡେଡ଼ିକ୍ଟୁଲା ଧରି ଟ୍ରକ୍‌ରେ ଫେରୁଥିଲାବେଳେ ଭାବୁଥାଆନ୍ତି—"ଆହା ପଲ୍ଲୀର ଏମନ୍ତ ଶବ, ପଲ୍ଲୀଆମାନଙ୍କ ଏମନ୍ତ ଗୁଣ; ନନ୍ଦକିଶୋର ଓ ସଚ୍ଚିରାଉତରାୟଙ୍କ ଆଖିରେ ଯାହା ନପଡ଼ିଲା !"



## ॥ ଶିକା ଛିଣ୍ଡିବ ? ॥

ଭୋଟ୍ ଗଣତି ଚାଲିଛି । କଚେରିସାରା ଲୋକ ଥାଟପଟାଳ ମାରୁଛନ୍ତି । କୁରୁକ୍ଷେତ୍ରରେ କୌରବ-ପାଣ୍ଡବଙ୍କ ପରି ସାରା କଚେରିର ଲୋକେ ଦୁଇଭାଗ ହୋଇଯାଇଥା'ନ୍ତି—କଂଗ୍ରେସ ଆଉ ଜନତା । ସ୍ୱାଧୀନ ଓ କମ୍ୟୁନିଷ୍ଟଙ୍କ ସୁର୍‌ଶବ୍ଦ ନଥାଏ । କଡ଼ା ପୁଲିସ୍ ପହରା ଥାଇ ଘର ଭିତରେ ଗଣତି ଚାଲିଛି । ସେଇଠାରୁ ବେଳେବେଳେ ଖବର ଉଡ଼ି ଆସୁଥାଏ—"କଂଗ୍ରେସ ୧୦ଟା ଭୋଟ୍‌ରେ ଆଗେଇଛି ।" ବାସ୍, ଏତିକରେ ପଦାରେ ଅପେକ୍ଷା କରିଥିବା କଂଗ୍ରେସିଆଏ ଛତା, ଗାମୁଛା, ଚଟି ଉପରକୁ ଫିଙ୍ଗି ନାଚ, କୁଦ କୁଦାଟ ଛାଡ଼ୁଥାନ୍ତି—"ଆରେ, କୁଁ ଉଁ ଆସିଲେ ବାରଜାତି ଚେରଗୋଲ୍, ଜନତା ହେଲେ ସବୁ ଗଲ । ଯୁଆ ମୁହଁ ଆଉ ତ ତା' ମୁହଁ ସାଉ । ହମସ୍ତେ ଗୋଟାଏ ଚାଦର ଘୋଡ଼େଇ ହୋଇପଡ଼ କହିଲେ—ହୁଁ, ଆମେ ଆସିଲୁ ହୋ ଜନତା । ଆମେ ସବୁ ଚାଳିଶି ବର୍ଷ ହେଲା ଯେ ମାଡ଼ି ବସିଥିଲୁ ! ମାଗଣା ! କେନ୍ଦ୍ରରେ ଗୁରୁର ପେଞ୍ଚ ମାରି ଗାଦିଟା ଛଡ଼େଇ ନେଲେ ବୋଲି ଭାବଛନ୍ତି ଏଠି ବି ରାଜ୍ୟରେ ଛଡ଼େଇ ନେଇଯିବେ । ଏଠି ରାଜ୍ୟରେ ଆମେ ଷେଣ୍ଢ । ଏଠିକି ପୁଣି ଆଉ ଗୋଟିଏ ଷେଣ୍ଢ ଆସିବ କେମିତି, ବସିଥାଉ ଜନତା କେନ୍ଦ୍ରରେ । ଆମେ କଂଗ୍ରେସିଆଏ ରାଜ୍ୟମାନଙ୍କରେ ଅଲବତ୍ ପୂରା ଦାଣ୍ଡରେ ବସି ରହିବୁ । ଚାରିଆଡ଼େ ଘେରି ଜନତାବାଲାଙ୍କୁ କେନ୍ଦ୍ରରେ କାବୁ କରିଦେବୁ । ବାପ ନାଁ ପଚାରିଲେ ମୁହଁରୁ ବାହାରିବନି । ଆରେ, କଂଗ୍ରେସକୁ କଅଣ ବୋଲି ପାଇଛନ୍ତି କି ! କି ସାହସ ଦେଖ ହୋ ! ବାମନ ହୋଇ ଚନ୍ଦ୍ରକୁ ହାତ ବଢ଼ଉଛନ୍ତି; ଗେଣ୍ଡା ହୋଇ ହରିଣ ପଛରେ ଗୋଡ଼େଇବାକୁ ଉହୁଙ୍କି ଉଠୁଛନ୍ତି । ଆରେ ବାରଜାତି ଚେର ଗୋଲ୍, ଆଗେ ନିଜର ଅସ୍ତିତ୍ୱ ବଞ୍ଚାଏ ରଖ । ତା'ପରେ ଗାଦିରେ ବସିବାକୁ ହମହମ ହେବ । ଆରେ

କାହିଁ କଂଗ୍ରେସ, କାହିଁ ଜନତା ! କାହିଁ ରାଣୀ, କାହିଁ ଚନ୍ଦ୍ରକାଣୀ ! କାହିଁ ରାମଚନ୍ଦ୍ର ମହାରାଜା, କାହିଁ ରାମା ବାଉରି । ଜନତାବାଲାଙ୍କ କମ୍ ସାହସ ନୁହେଁ ତ ! ଏଠି କଂଗ୍ରେସକୁ ହଟାଇବେ ଆଉ ନିଜେ ପୁଣି ଯାଇ ଗୋଡ଼ ଉପରେ ଗୋଡ଼ ପକାଇ ବସିଯିବେ । ହୁଁଃ ! ଯୋଏ ଗୁଡ଼ମୁଆଁ ମନେ ମନେ ଖାଇ ଯାଉଛନ୍ତି ।”

ଠିକ୍ ଏତିକିବେଳେ ଭିତରଆଡ଼ ଖବର ଉଡ଼ି ଆସିଲା—ଜନତା ୧୧୯ ଭୋଟ୍‌ରେ ଆଗେଇଛନ୍ତି । କଂଗ୍ରେସିଆଙ୍କ ହଟ୍ଟଗୋଳ ଥପ୍‌କରି ବନ୍ଦ ହୋଇଗଲା । ଜନତାବାଲାଏ ବାଉଳା ହୋଇଗଲେ । କାମ ପ୍ରପୀଡ଼ିତ ବୋଦାପରି ଅମ୍‌ବଅଅଅ ଚିତ୍କାର ଛାଡ଼ି, ହୁବେଇରେ, ବୋଲ ବୋଲାଉଆ ଗଆ ଗଆରେ ରଙ୍ଗ ଛାଡ଼ି, ଜୋତା, ଛତା, ଚାଦର ଉଡ଼େଇ ଥାନଟାକୁ ଅନ୍ଧେଇ ଦେଲେ । ଜଣେଅଧେ ଉତ୍ତେଜନାରେ ଶୀର୍ଷସ୍ଥାନକୁ ଉଠିଯାଇ ଲୁଗାପଟାକୁ ଉଡ଼େଇ ଦେବାକୁ ଯାଉଥିଲେ । ଅବଶ୍ୟ ସେମାନଙ୍କର ସଙ୍ଗୀମାନଙ୍କ ହସ୍ତକ୍ଷେପ ଫଳରେ କ୍ଷାନ୍ତ ରହିଲେ । ଜନତା ସମର୍ଥକ ଦଳଙ୍କ ମୁହଁରୁ ବଡ଼ପାଟିଆ (ମାଇକ୍) ନାଦିତ ରଡ଼ି ପ୍ରଖରସ୍ୱରେ ଶୁଭିଲା—“ଆବେ, ତମ ବୋପା ବାପ ଗାଦିରେ ବସିବୁ । ସ୍ୱଳଶ ବର୍ଷର ଗୁଡ଼ମୁଆଁ ଖିଆ ଆଜଠୁଁ ସରିଗଲା ହୋ ବାପଧନ । ଆବେ, ଆଉକୁ ତୁମେ ବାସି ପେଜରୁ ମୁହାଏ ପାଇବନି । ସ୍ୱରାଜ ଆଶ୍ରମରେ ଯେଉଁ ପଲଉ, ଖାସିର ସୁଅ ଛୁଟିଥିଲା, ସବୁ କୁଆଡ଼େ ଉଭେଇଯିବ । ସେଠି ଖାସି ତ ଖାସି, ଖାସିର ଲଣ୍ଡିଟାଏ ବି ଖୋଜିଲେ ମିଳିବନି । ଆରେ ସର୍ବଗିଳା ଦଳ, ପେଟରେ ଗୋଲେଇ ଅଧାକୁ କମି ଯିବରେ । ବେହେଲଗୁଡ଼ାକ ଭାବିଥିଲେ ଗାଦିଟାକୁ ଇସ୍ତମରାରପଟ୍ଟା କରି ନେଇଛନ୍ତି । ଆରେ ଓଲୁଙ୍କ ବୋକସ୍ୱବୁହା ଦଳ ! ତମ ବୋପା, ବୁଢ଼ାବାପ, ଶିଳ-ଶିଳପୁଅମାନେ ତ ପବନରେ କୁଆଡ଼େ ଉଡ଼ିଗଲେ । ତାଙ୍କର ଚିହ୍ନବର୍ଣ୍ଣ ରହିଲା ନାହିଁ; ଆଉ ତମେ ଶିମୁଳି ତୁଳା-ଗୁଡ଼ାକ ହଲିବନି ବୋଲି ମନେ ମନେ ଆଶା କରିଛ । ତୁମର ବାରଟା ବାଜିବାକୁ ଆଉ କେତେ ମିନଟ୍ ବାକି ।”

ଘର ଭିତରୁ ପୁଣି ଖବର ଉଡ଼ି ଆସିଲା—ଜନତା ଦଳ ୭୦ ଭୋଟ୍‌ରେ ଆଗେଇଛନ୍ତି । କଂଗ୍ରେସିଆଙ୍କ ଟିଟ୍‌କାର ଆରମ୍ଭ ହୋଇଗଲା—

"ହଇରେ ବେଣ୍ଟୁଆ ବାରଜାତ ଛେରଗୋଳ ଦଳ, ୧୧୯ରୁ ଏକା-ବେକେକେ ୭୦କୁ ଆସିଲଣି । ଆଉ ଟିକଏ ଗଲେ ଖବର ଆସିବ, ଜନତା ଦଳ ୧୧୯ରେ ପହଞ୍ଚିଲେଣି । ଧରୁ ଧର, ଥପ୍ପ ଧର, ତମ ପାଞ୍ଚି ଚିତ୍ରଗୁପ୍ତ ଖୋଲିଲଣି ।"

ଘର ଭିତରୁ ପୁଣି ଖବର ଆସିଲା—ଜନତାଦଳ ୫୦ ଭୋଟ୍‌ରେ ଆଗେଇଛନ୍ତି । ଉଭୟ ଦଳର ପାଟି ଥମିଗଲା । ଦୁଇଦଳ କଟକଚଣ୍ଡୀଙ୍କ ଦୁଇହାତ ଧରି ଭିଡ଼ାଓଟରା ଆରମ୍ଭ କରିଦେଲେ । ଜନତାଦଳ ଗୋଟାଏ ହାତ ଭିଡ଼ି ମନେମନେ ଅନୁରୋଧ କରୁଥାନ୍ତି, "ହେ ମା କଟକଚଣ୍ଡୀ ! ଆଉ ଖପାନା, ଦଶହରାକୁ ଯୋଡ଼ାଏ ବୋଦା ଦେବୁ । ତୋ ପାଦରେ ଶରଣ ଗଲୁ ମା । କଂଗ୍ରେସିଆଙ୍କୁ ଆଜିଯାଏ ବଞ୍ଚେଇଲୁ । ଆମେ କଅଣ ତୋର ପୁଅ ନୋହୁଁ ? ଆମକୁ କିଛି ଦିନ ଗାଦିରେ ରଖ । ମା ! ତୋ ଗୋଡ଼ତଳେ ପଡ଼ୁଛୁ, ଆଉ ଖପାନା ବରଂ କିଛି ବଢ଼େଇଦେ । ଆମକୁ ଘଣ୍ଟ ଘୋଡ଼େଇ ରଖ ।"

ଆରହାତ କଂଗ୍ରେସିଆଏ ପ୍ରାଣପଣେ ଘୋଷାଡ଼ି ମନେମନେ ପ୍ରାର୍ଥନା କରି ଲାଗିଲେ—"ମା ! ଏମିତି ଅସ୍ତେ ଆସ୍ତେ ଦୟା କରୁଛୁ କାହିଁକି, ଦେ ତୋ ଦୟାର କୁଣ୍ଡ ଆମ ଉପରେ ଢାଳିଦେ । ୧୧୯ରୁ ୭୦, ସେଥିରୁ ୫୦, ଏମିତି ଧୀରେ ଧୀରେ କାହିଁକି କମାଉଛୁ, ଏକାଥରକେ ଜନତାଆଙ୍କୁ ଟପେଇ, ଆମକୁ ଷାଠିଏ, ସତୁରି ହଜାର ଉପରେ ରଖିଦେ ମା' । ଶହେଟା ବୋଦା ଦେବୁ ମା' । ଆମକୁ ଅକଯାଏ ପାଳିଲୁ; ଆଜି କିଆଁ ପାଦରେ ଠେଲି ଦେଉଛୁ ! ଦେବୋତ୍ତରବାଲାଏ ତୋ ଧନରୁ ଭେଣ୍ଡି ତପଟ କରିଦେଇଥିବେ । ଆମକୁ ଗାଦିରେ ରଖିଲେ ଆମେ ତୋ ଧନ ଫେରାଇ ଦେବୁ । ତା' ଉପରେ କିଛି ସୁଧ ବି ଦେଇଦେବୁ ମା' । ଆଉ ରାଗନା ମା' ।"

ଭିତରୁ ଖବର ଆସିଲା—କଂଗ୍ରେସ ୭୦ ଭୋଟ୍‌ରେ ଆଗଉଛି । ଜନତାଆଏ ରାଗରେ କଟକଚଣ୍ଡୀଙ୍କ ହାତଟାକୁ ଝଟ୍‌କରି ଛାଡ଼ିଦେଲେ । ବିଚରା ମା' କଟକଚଣ୍ଡୀ କଂଗ୍ରେସିଆଙ୍କ ଉପରେ ଲଥକରି ଅଜାଡ଼ି ହୋଇ ପଡ଼ିଲେ ପରା ! କଂଗ୍ରେସିଆଏ ମନେମନେ ଠିକ୍ କରିନେଲେ—ମା'

କଟକଚଣ୍ଡୀ ସଦା ଜାଗ୍ରତା, କୃପାମୟୀ, ଆତଙ୍କହାରିଣୀ ପ୍ରତ୍ୟକ୍ଷ ଦେବୀ— ଆମର ଗୁହାରି ଶୁଣିବାଲାଗି ସର୍ବଦା ତାଙ୍କର କାନ ମେଲା । ମା' ଆମଠି ଦୟା ରଖିଛନ୍ତି; ଏଥିରେ ଆଉ ସନ୍ଦେହ ନାହିଁ । ଏ ଦୟା ଯେ କେବେ-ହେଲେ ଊଣା ହେବନାହିଁ, ଏଥିରେ ବି ସନ୍ଦେହ ନାହିଁ ।

ଭିତରୁ ଖବର ଆସିଲା—ଜନତା ଦଳ ୫୦୦ ଭୋଟ୍‌ରେ ଆଗେଇଲା । କଂଗ୍ରେସିଆଙ୍କୁ ହାଉଳି ଖୁଆଇ ଲଗ ଲଗ ଖବର ବାହାରିବାରେ ଲଗିଲା—୧୫୦୦, ୨୩୦୦, ୪୬୦୦ ଭୋଟ୍‌ରେ ଜନତା ଆଗେଇ ଚାଲିଛି । କଂଗ୍ରେସିଆଏ ମା' କଟକଚଣ୍ଡୀଙ୍କ ହାତକୁ ଛୁଆଡ଼ି ଦେଇ ପେଲିଦେଲେ ; ଅନ୍ୟ ଜନତାଆଏ ମାଆଙ୍କର ହାତକୁ ଅଣ୍ଡାଳିଲେ । ଗଣାଯାଇଥିବା ସମସ୍ତ ଭୋଟ୍‌ରେ ଅଧିକରୁ ବେଶି ନହେବା ପର୍ଯ୍ୟନ୍ତ ମାଆଙ୍କୁ ପୂରାପୂରି ବିଶ୍ୱାସ କରିପିବା ଓ ତାଙ୍କ ଉପରେ ପୂର୍ଣ୍ଣ ଆସ୍ଥା ରଖିବା ବିଜ୍ଞତାର କାର୍ଯ୍ୟ ହେବନି ବୋଲି ମଧ୍ୟ ମନେ ମନେ ଠିକ୍ କଲେ । କିନ୍ତୁ ସମସ୍ତ ପାଇଁ ପୂର୍ଣ୍ଣ ମାରବତା ଜାରି ରହିଲା । ଜନତାଆଏ ଯେତେବେଳେ ଆଗେଇ ଆଗେଇ ଚଉଦ ହଜାରରେ ପହଞ୍ଚିଗଲେ, ସେତେବେଳେ ସେମାନଙ୍କ ଆନନ୍ଦର ବନ୍ଧେଇ ବାଇ ଭାଙ୍ଗିଗଲା । କାନଫଟା କୁହାଟ ଗୁଡ଼ି ସେମାନେ ଆନନ୍ଦ ବାଉଳା ହୋଇଗଲେ । ଥୋକେ ଲୁଗାପଟା, ଛତା, ଜୋତା ଉପରକୁ ଫୋପାଡ଼ିଲେ । ଥୋକେ କୁଣ୍ଢାକୁଣ୍ଢି ହୋଇ ସାହାଣି ମାଇ-ଅଣ୍ଡିରା ନାଚ ନାଚିଲେ । ଥୋକେ କାଳଶିଙ୍କ ପରି କୁହାଟ ଗୁଡ଼ି ଉଦ୍ଦଣ୍ଡ ନାଚ ନାଚିଲେ । ଆଉ ଥୋକେ କଳହୁଡ଼ୀ ରଣ୍ଡୀଙ୍କ ପରି କଂଗ୍ରେସିଆଙ୍କୁ ଖତେଇ ଛୁଗୁଲେଇ ହୋଇ ଗାଳିଗୁଲଜ ଆରମ୍ଭ କରିଦେଲେ —"ଆରେ ଉଦ୍‌ବାଇଜା ଦଳ ! ଆରେ କୁ ଆଡ଼େ ଲୁଚିଗଲରେ, ଆରେ ତମ ବାନ୍ଦରବଦନ ଟିକିଏ ଦେଖାଅରେ । ଆରେ ତମ ଇମର୍‌ଜେନ୍‌ସି ଆଉ ଟିକିଏ ଚଟାଣ କରରେ । ହଇରେ, ବେହିଆ ଥୋବରା ଦଳ, ତୁମେ ସବୁ ଗୁଣ୍ଡୁ ଫୁଲେଇ କହୁଥିଲନା—କେବଳ କଂଗ୍ରେସ୍ ଭାରତକୁ ଶାସନ କରି-ପାରିବ , ଆଉ ମଧ୍ୟ କରିବ । ସେ ଫୁଲାଗୁଣ୍ଡ କୁଆଡ଼େ ଗଲାରେ । ଆରେ ତୁଣ୍ଡରୁ କଥା ବାହାରୁନି ଯେ—"

ଭୀମସେନର ହିଙ୍ଗାର୍ଣ୍ଣ ବାଣୀ ଶୁଣି ଦୁର୍ଯ୍ୟୋଧନ ମାନସରୋବରରୁ ବାହାରି ଆସିଲାପରି, ଜଣେ ଦୁ'ଜଣ କଂଗ୍ରେସିଆ ଆଉ ସମ୍ଭାଳି ନପାରି

କାଠପାଣି ଲଗେଇଲେ—"ଆରେ ଯାଅ ଯାଆରେ—ଏତେ ପ୍ରଉଢ଼ି ଦେଖାଅନା ମ । ଏଇ ଗୋଟିକରେ ବାଜି ମାରନେଲେ ଆଲୁଅ ହୋଇ-ଯିବନା ମ । ବିଧାନସଭାରେ ସଂଖ୍ୟାଗରିଷ୍ଠତା ହାସଲ କଲେ ସିନା ଫୁଟାଣି-ଗୁଡ଼ାକ ସୁନ୍ଦର ଦିଶିବ । ଇଆଡ଼ୁ ଏତେ ଲଙ୍ଗଳା ମୁକୁଳା କାହିଁ ?"

ହାତହଲା ଖଣ୍ଡିଆ ଖଟେଇ ଭିତରେ ଦୁଇଦଳ ମୁହାମୁହିଁ ହୋଇ-ଗଲେ । ଗୋଟାଏ ଖଣ୍ଡିଆ ଜନତା ଚପଲ ହଠାତ୍ ଟେଙ୍ଗୋପର ଉପରକୁ ଉଡ଼ିଯାଇ ଗୋଟାଏ କଂଗ୍ରେସିଆ ମୁଣ୍ଡରେ ବାଜିଲା । ଲାଗିଗଲା ଗୋଳ ଯୁଦ୍ଧ । ଏ ଯୁଦ୍ଧରେ ଆଟମ୍‌ବମ୍ ହେଲା ଚେଲା, ଜୋତା, ଚପଲ ହେଲା ମିଶାଇଲ୍, ଛତା ହେଲା ଟର୍ପେଡୋ । ଦଶ ପନ୍ଦର ମିନିଟ୍ ଘୋର ଗୋଳଯୁଦ୍ଧ ପରେ ନାଲି ଟେଗଡ଼ିଆ ଧାଇଁଆସି ଅବସ୍ଥାକୁ ସମ୍ଭାଳି ନେଲେ; ହେଲେ କଳକଳା ପାଟି ଲାଗି ରହିଲା । ଶେଷରେ ଜନତା ମୁଣ୍ଡରେ ମୁକୁଟ ବନ୍ଧାହେବା ଆଗରୁ କଂଗ୍ରେସିଆଏ ଥାନ ଛାଡ଼ି ପଳେଇଲେ । ପଳେଇଲାବେଳେ କୁହାକୋହି ହେଉଥାନ୍ତି—"ହଉ ମ, ଏଇ ଥାନଟା ମାରି ନେଲେ ବୋଲି କଅଣ ସଂଖ୍ୟାଗରିଷ୍ଠତା ମାରିନେବେ ? ସବୁ ଥାନ ଗଣତି ସରୁ । କୁଆଡ଼େ ପଳେଇ ଗାତରେ ପଶିବାକୁ ବାଟ ପାଇବେ ନାହିଁ । ସେତିକିବେଳେ ସେମାନଙ୍କୁ ଗାତରୁ ଘୋଷାଡ଼ି ଆଣି, ତାଙ୍କ ମୁହଁରେ ପୋରୁଣୀପତ୍ରର ମକଚ ଘଷିବା ।"

ଏ କଥା ଜନତାଆଙ୍କ କାନରେ ଯେ ପଡ଼ିଲାନି, ଏମନ୍ତ ନୁହେଁ । କଥାଗୁଡ଼ାକ ତାଚ୍ଛଲ୍ୟରେ ଉଡ଼ାଇଦେଇ ସେମାନେ କହିଲେ—"ହଉଁବେ, ହଳୁଆଦଳ ବୁହିଁ ବସିଥାଅ ଷେଣ୍ଡେ ଛେଳିକୁ ।" ଦୁଇଦଳଯାକ ରେଡ଼ିଓ ପ୍ରଚାର କେନ୍ଦ୍ର ପାଖରେ ଠାକୁରଙ୍କ ପାଖେ ଅଧିଆ ପଡ଼ିଲା ପରି ଭୋକ ଶୋଷ ଭୁଲି ପଡ଼ିରହିଲେ । ଥାନ ଗଣତିରେ ଜନତାଆଏ ନାକବୁଡ଼ା ସଂଖ୍ୟା-ଗରିଷ୍ଠତା ହାସଲ କରିବାର ସମ୍ବାଦ ପ୍ରଚାରିତ ହୋଇଯିବା ପରେ, ସେମାନଙ୍କ ଆନନ୍ଦ କୋଳାହଳରେ ଥାନଟି ଫାଟିପଡ଼ିଲା । କଂଗ୍ରେସିଆଙ୍କର ରକ୍ତବୁଜଳ ଢୋକେଇବା ଛଡ଼ା ଅନ୍ୟ ଉପାୟ ନଥିଲା । ତଥାପି ତାଙ୍କ ଦଳର କେତେଜଣ ଫିମ୍ପୁଡ଼ି ଦେଖାଇ କହିଲେ—"ଆରେ, ଏଇ ଗୋଟାଏ ଥାନ ମାରିନେଲ ବୋଲି ଏତେ ଉତ୍ପାତିଆ ହୋଇଯାଉଛ କାହିଁକି ? ଆହୁରି ୧୪୬ଟା ଅଛି । ସହରଟାକୁ ମାରିନେଇ ଡେଉଁଥାଅ । ମଫସଲ ଥାନ-ଗୁଡ଼ାକର ଫଳାଫଳ ବାହାରିପଡ଼ୁ, ମୁହଁ ଆମ୍ବିଳା ହୋଇଯିବରେ ଆମ୍ବିଳା

ହୋଇଯିବ । ମୁହଁକୁ ହେଙ୍ଗୁ ଶୁଙ୍ଘିଲ ପରି କରୁଥିବ । ଥସ୍ ଧର, ଥସ୍ ଧର । ଜନତଆଏ ଏ କଥାରେ କ କାନ ଦିଅନ୍ତି । ଘାଟିରେ ଛଣି ବସେଇବାକୁ ସେମାନଙ୍କର ସମସ୍ତ ଅଣ୍ଟୁ ନଥାଏ ।

ସବୁ ସହର ମଫସଲର ଫଳାଫଳ ବାହାରିଗଲା । କଂଗ୍ରେସିଆଙ୍କ ଫଟାସି ଉଡ଼ିଗଲେ ବି ମୁହଁ ଉଡଙ୍ଗ ନ ଗୁଡ଼ି କହିଲେ—"ହଅମ ୧୧୦ଟା ଥାନ ସିନା ପାଇଗଲ, ମନ୍ତ୍ରିମଣ୍ଡଳ ଗଢ଼ା ହେଲାବେଳକୁ ସେ କହିବ ମୁଁ ମନ୍ତ୍ରୀ ହେବ, ସେ କହିବ ମୁଁ ମନ୍ତ୍ରୀ ହେବ । କାହାରି ସଙ୍ଗେ କାହାରି ପଡ଼ିବନି । ୧୧୦ ଜଣଯାକ କହିବେ ମନ୍ତ୍ରୀ ହେବାକୁ । ସେତିକେବେଳେ ଜନତା ଦଳର ଫାଟ ପଦାକୁ ବାହାରିଯିବ । କାଏ କୁଆଡ଼େ ଛିଟିକି ଦୂରରେ ପଡ଼ିବେ । ଗୋଟି ଗୋଟି ହୋଇ ଫେରି ଆସି ଆମର ଗୋଡ଼ ଧରିବେ ।"

କଂଗ୍ରେସିଆଙ୍କ ଉପରେ ଚଡ଼କ ପଡ଼ିଗଲା । ମନ୍ତ୍ରିମଣ୍ଡଳଟା ଗଢ଼ା ହୋଇଗଲା । ଜନତଆଏ ଛିଗୁଲେଇ ବଗୁଲେଇ କହିଲେ— "ଆହାହା, ବିଗିଡ଼ଦଳ କେତେ ଆଶା ନ କରିଥିଲେ ଶିକା ଛୁଣ୍ଡିବ ବୋଲି । ହାପ୍ସ ହାପ୍ସ ସବୁ ଫସକିଗଲା । ଆରେ, ଚାହିଁ ବସିଥାଅ, ଶିକା ଛୁଣ୍ଡିବ ।"

ତଥାପି କଂଗ୍ରେସୀ ବିଗିଡ଼ିମାନେ ଶିକାକୁ ଚାହିଁ ଚାହିଁ କହିଲେ— "ରହିଥାଅ ରହିଥାଅ, ଫାଟିବାକୁ ଟିକିଏ ଡେରି ଲଗିବ । ଭିତରେ ଭିତରେ ଗୋଷ୍ଠୀ ଗଢ଼ା ଚାଲିଛି । ପାଉଣ୍ଡାପାଉଣ୍ଡି କାମ ସରିଗଲେ ଦେଖିବ ଶୁଭିବ ଠୋଃ । ମନ୍ତ୍ରିମଣ୍ଡଳ ଫାଟି ସତରଫାଳ ହୋଇଯିବ ।"

ବିଧାନସଭା ବୈଠକ ଉପରେ ବୈଠକ ବସିଲା । ମନ୍ତ୍ରୀମାନଙ୍କ କଥା ଦୂରେ ଥାଉ, ସଭ୍ୟମାନଙ୍କ ଭିତରେ ଖିଙ୍କାରିଖିଙ୍କାରି ବି ଦେଖାଗଲାନି । କଂଗ୍ରେସିଆଙ୍କ ଭୁଣ୍ଡିକୁ ଆଉ କିଛି ପଇଟିଲା ନାହିଁ । ଖେଚଡ଼ା ଜନତଆ ଜଣେ ଦି'ଜଣ ଦେଖେଇ ଶିଖେଇ କହି ଲାଗିଲେ—"ଆରେ ହତାଶ ହୁଅନା, ମନରେ ଭାବିଲାଗ—ଆରେ ମୂର୍ଖଲୋକଙ୍କୁ ଓଡ଼ି, ଲୋକଙ୍କ ଟିହ୍‌କାରକୁ ଡରି କୌଣସିମତେ ଏଇ ପାଞ୍ଚବର୍ଷଟା ମାଟି କାମୁଡ଼ି କଟେଇ ଦେବା । ତା'ପରେ ଜନତାକୁ ଚିହ୍ନି ରହିବ ନାହିଁ । ଏମିତି ଭାବ ଭାବି ଶିକାକୁ ଚାହିଁଥାଅ; ଶିକା ୧୦ ବର୍ଷ ହେଉ, ୧୫ ବର୍ଷ ହେଉ ଦିନେ ନିଶ୍ଚେ ଛୁଣ୍ଡିବ । ଆଉ ତେତେ କଂଗ୍ରେସୀ-ବିଗିଡ଼ିଦଳ ପାଟି ବୁଆଡ଼ କରିବ ।"



## ॥ ଠକାଠକି ॥

ପିତାଶୁଣୀ ବସ୍ତିଟା ଗ୍ରେଟ ହେଲେ କଅଣ ହେବ, ଭୋଟର୍ ସଂଖ୍ୟା ହଜାରକୁ ଟପିଯାଇଛି । ସେଥିଲାଗି ଶାସକ ତଥା ବିରୁଦ୍ଧ-ଦଳଆଙ୍କ ଚପଟ ଏହି ବସ୍ତି ଉପରେ ସବୁଠାରୁ ବେଶି । ଶାସକଦଳ ଏମାନଙ୍କୁ ଥାପୁଡ଼ା ଥାପୁଡ଼ି କରି ରଖିବାରେ ଝାଳନାଳ ହୋଇ ଲାଗିପଡ଼ି-ଥାନ୍ତି । ଆଉ ବିରୁଦ୍ଧଦଳଆଏ, କେଉଁଠି ଟିକେ ଫାଙ୍କ ପାଇଲେ ମୁହଁ ଗଳେଇଦେଇ ଭୁସ୍‌କରି ପଶିଯିବେ, ସେଥି ତାକ୍‌ତରକରେ ଥାଆନ୍ତି । ଠିକ୍ ଯେମିତି ଓଲିଆ ଗାଈ କ୍ଷେତ ବାଡ଼ରେ ଏଠିସେଠି ମୁହଁ ମାରୁଥାଏ, କେଉଁଠି ବାଡ଼ରେ ଟିକିଏ ଫାଙ୍କ ଅଛି । ଫାଙ୍କଟିଏ ଦେଖିଲେ ଆଗ ଗୋଡ଼ଟି ଗଳେଇ ଦିଏ । ସେଇଟି ଗଳିଗଲେ, ତେଣିକି ଗଣ୍ଡିଟାକୁ ପ୍ରାଣମୂର୍ଚ୍ଛା ଭିଡ଼ି କରିଦିଏ; ଗଣ୍ଡିରେ କଣ୍ଟା ପଶୁ କି ଗଣ୍ଡିଟା ଚିରିଯାଉ ଲହୁଲୁହାଣ ହେଉ, ସେଥିକି ଖାତିର ନଥାଏ । ବିରୁଦ୍ଧଦଳ ସେହିପରି ଫାଙ୍କଟିଏ ଉଣ୍ଡିବାରେ ଲାଗିଥାନ୍ତି । ଦୁଇଦଳଙ୍କୁ ଭଲଭାବରେ ଜଣାଥାଏ ଯେ ପିତାଶୁଣିଆମାନେ ଯେଉଁ ଦଳଆଡ଼କୁ ଢଳିବେ, ତାଙ୍କ ଖାତେଇରେ ହଜାରେରୁ ଅଧିକ ଭୋଟ୍ ଗେହ୍ଲାଛୁଆପରି ଖୁନ୍ଦ ହୋଇଯିବେ; ହେଲେ ପିତାଶୁଣିଆଏ କେଉଁଆଡ଼କୁ ଢଳିବେ, ତାହା ଜାଣିବା କାଠିକର ପାଠ ଥିଲା । ତାହାସତ୍ତ୍ୱେ ଶାସକଦଳ ନିଶ୍ଚିତ ହୋଇ ରହିଥାନ୍ତି ଯେ ପିତାଶୁଣିଆଏ ସେମାନଙ୍କର ଏକପ୍ରକାର ଯଜମାନ । ସେମାନେ କେବେହେଲେ ତାଙ୍କୁ ଛାଡ଼ି ଅନ୍ୟତ୍ର ଯିବେ ନାହିଁ; ବିରୁଦ୍ଧଦଳଆଏ ୪୯ 'ନା' ଆଉ ୫୧'ହଁ' ଭିତରେ ଭାବୁଥାଆନ୍ତି ଶାସକଦଳକୁ ପିତାଶୁଣିଆଏ ଗୋଟିଏ ସୂତ୍ରଧର ମୁଣ୍ଡେଇଛନ୍ତି । ସେମାନଙ୍କର ମନ ଲଟା ଧଢିଯିବଣି । ଗୋଟାଏ ପରିବର୍ତ୍ତନ ନିଶ୍ଚୟ ଲୋଡ଼ୁଥିବେ । ଥରେ ନୁହଁ, ଦୁ'ଥର ନୁହଁ, ବାର ବାର ଥର ପୁଲିସ୍ ସେ ବସ୍ତିର ୫୬ ଜଣ ମେଣ୍ଟାଙ୍କୁ ହଜାପଟା କରିଦେଇଛି । ମନ୍ତ୍ରୀମାନଙ୍କ ପାଖକୁ ଯେତେ ଦଉଡ଼ା-

ଦଉଡ଼ କଲେ ବି କିଛି ଫଳ ହୋଇନ; ଓଲଟି ବସ୍ତି ଭିତରେ ଯେଉଁ ବେଶ୍ ମଦଦୋକାନଟି ଥିଲା, ତାକୁ ପୁଲିସ ଧ୍ୱଂସବିଧ୍ୱଂସ କରିଦେଇ, ମାଲିକ ହେଟା ସାମଲକୁ ମାମୁଦରକୁ ପଠେଇ ଦେବାର ବ୍ୟବସ୍ଥା କରି ଦେଲେ । ପିତାଶୁଣିଆଙ୍କ ଭିତରୁ କେତେଜଣ କହିବାର ଶୁଣାଯାଇଛି, “ଆରେ ଯା, ଯାହା ହୋ, କି ମନ୍ତ୍ରୀ ଦେଖେଇ ହେଉଛନ୍ତି ହୋ, ହେଟାହାକୁ ତ ରକ୍ଷା କରି ପାରିଲେନ । ଏମିତିଆ ମନ୍ତ୍ରୀ ଥାଇ କେତେ ନଥାଇ କେତେ ! ହେଟାଠା କେଡ଼େ ଉପକାରୀ ନଥିଲା । ନିତି ସନ୍ଧ୍ୟାରେ କୁଞ୍ଜା କୁଞ୍ଜାଏ ଅସଲି ମହୁଲି ଚଖାଉଥିଲା ତ ! ମନ୍ତ୍ରୀଙ୍କର ବା ପୁଲିସ୍‌ର ହେଥିରେ କଅଣ ଅଣେଇ ହୋଇ ଉଡ଼ୁଥିଲା ଯେ ! ସେମାନଙ୍କର ନାଆଁ ଧରିବନି ।” ଏ କଥାଗୁଡ଼ିକର କଅଣ କିଛି ଅର୍ଥ ନାହିଁ ! ଏଇଥିରୁ କଅଣ ବୁଝାପଡ଼ୁନି ପବନ କେଉଁଆଡ଼େ ବୋହିବାକୁ ଆରମ୍ଭ କଲାଣି । କଥା ହେଉଛି, ସବୁର୍ କଲେ ହେଲା । ସବୁର୍ ଗଛରେ ମେଓ୍ୱା ଫଳିବା କଥା ତ ସମସ୍ତେ ଜାଣନ୍ତି ।

ଏହିପରି ଦୁଇଦଳର ଲୋକେ ପିତାଶୁଣିଆଙ୍କ ବିଷୟରେ କଳ୍ପନା-ଜଳ୍ପନା ଚଳାଇ ଥିଲାବେଳେ, ନିର୍ବାଚନ ହଠାତ୍ ଆସି କବାଟ ଧୁଡ଼ୁ ଧୁଡ଼ୁ କଲା । ପିତାଶୁଣିଆଏ କବାଟ ଫିଟେଇ ଦେଖନ୍ତି ତ ନିର୍ବାଚନ ଠିଆ ହୋଇ ହସୁଛି ।

ହୋଉ ଗାଆଁ ହୋଉ ବସ୍ତିରେ କଅଣ ହେଲା କେଜାଣି, ପିତାଶୁଣି ଗାଆଁରେ ଏକ ଚମକ ଖୁହଁଖୁହଁ ଖେଳିଗଲା । ତା’ ପଛକୁ ପଛ ନିର୍ବାଚନ ଜର—ମ୍ୟାଲେରିଆ କହିଲେ ଚଳେ । ମ୍ୟାଲେରିଆରେ ପଡ଼ିଲେ ବଡ଼ କସମସ, ତା’ ପଛକୁ ଶୀତ, କମ୍ପ, ୧୦୪ ଡିଗ୍ରୀ ଜର । ଶେଷରେ ବୋହିବ ଝାଳ, ବଡ଼ ପଡ଼ିଯିବ ଥଣ୍ଡା, ବେଗୀ ହେବ ହାଲିଆ । ଏତେ ହାଲିଆ ଯେ ପାହୁଣ୍ଡେ ଚାଲିଲେ ହାମ୍ପେଇ ପଡ଼ିବ । ମୋଟରେ, ପ୍ରାର୍ଥୀ ଓ କର୍ମୀମାନଙ୍କୁ ଯେତେବେଳେ ନିର୍ବାଚନ ଜର ଘୋଟେ, ଠିକ୍ ଏହିପରି ଲକ୍ଷଣ ସବୁ ଦେଖାଯାଏ । ‘ନିର୍ବାଚନ ହେବ’ ଏହି ଖବରଟା ଶୁଣିବା ମାତ୍ରକେ ସେମାନଙ୍କ ବଡ଼ ମନ ଉଷୁମ ହୋଇଯାଏ । ନିର୍ବାଚନ ବେଳର ଧାଁଧପଡ଼, ପ୍ରତିପକ୍ଷର ଗାଳି, ତେଲ, ବୋଲୁଅ, କେବେକେବେ ହାତାହାତି, ତା’ ଉପରେ ପୁଲିସ୍ ଠେଙ୍ଗୁଣି ଓ ଘୋଷଡ଼ାର ଚିହ୍ନ ଆଖି ଆଗରେ ନାଚ

ଯିବା ଫଳରେ ବଡ଼ ଶାନ୍ତିରେ କଟେ । ତା'ପରେ ନିର୍ବାଚନ କଥା । ନିର୍ବାଚନର ଧୂମଧଡ଼ାକ ସମସ୍ତଙ୍କୁ ଜମେଇଦିଏ । ସମସ୍ତେ ଖିଆପିଆ ଓ ଆଉ ସବୁକଥା ଭୁଲି ନିର୍ବାଚନ କାମରେ ବୁଡ଼ିଯାଆନ୍ତି । କେତେବେଳେ ଆନନ୍ଦର କଥା ତ କେତେବେଳେ କ୍ରୋଧର କଥା, କେତେବେଳେ ବା ଦୁଃଖ ବା ଗ୍ଲାନିର କଥା । ଭୋଟ୍ ସରିଗଲେ ସମସ୍ତେ ଫାଙ୍ଗାଳି ପଡ଼ିଯାଆନ୍ତି । ଶ୍ୱାସ ମେନ୍‌ମେନ୍ ହୋଇ ବୋଧହୁଏ, ଅତ୍ୟଧିକ ପରିଶ୍ରମ ପରେ ଟିକିଏ ବିଶ୍ରାମ ମିଳିଲେ ଶ୍ୱାସ ଯେମିତି ବୋଧହୁଥାଏ; ଠିକ୍ ସେମିତି । ତା' ପରେ ପ୍ରାର୍ଥୀମାନଙ୍କର ମନେପଡ଼େ କେତେ ଧନ ଭଣ୍ଡାରୁ ଖସିଯାଇଛି । ବିଚରା କି ହାରିଲାବାଲା, କି ଜିତିଲାବାଲା ହାଲିଆ ହୋଇଯାଆନ୍ତି । ମଣିଷର ବଳ ହେଲା ପଇସା । ସେତିକ ଭଣ୍ଡାରୁ ଚାଲିଯିବା ଅର୍ଥ ବଳ ଚାଲିଗଲା । ସେ ନିଜକୁ ଏତେ ଦୁର୍ବଳ ମନେକରେ ଯେ କିଛିଦିନ ଘରେ କଟିବା ଧରେ । ଏଥିରୁ ଜଣେ ବେଧଡ଼କ କହିଦେଇପାରିବ, ନିର୍ବାଚନ ଜର ନଦେଖିଲେ ମ୍ୟାଲେରିଆ ଜର ଦେଖ ।

ଅବେଳରେ ଅସ୍ୱାଭାବିକ ନିର୍ବାଚନଟା ମାଡ଼ିଆସିଥିବାରୁ ପିଚାଶୁଣି ଆଏ ଟିକିଏ ହଡ଼୍‌ବଡ଼େଇ ଲେ ସତ; କିନ୍ତୁ ହାରିଲି ଖାଇଲେ ନାହିଁ । ଖବର ମିଳିବାର ତି ତିନ ଦିନ ପରେ ଠାକୁରଘରେ ସଭା ବସେଇଲେ ।

ଅଧିକାରୀ ପ୍ରଥମେ ମନ୍ତ୍ରୀଙ୍କ ଶପଥପାଠ ପରି ସମସ୍ତଙ୍କୁ ସଭା ନିଷ୍ପତ୍ତିର ଗୋପନୀୟତା ରକ୍ଷା କରିବାକୁ ଶପଥପାଠ କରାଇ ନେଲେ । "ମୁଁ ମା ପିଚାଶୁଣୀଙ୍କ ଧଣ୍ଡା ଛୁଇଁ ନିୟମ କରୁଛି ଯେ, ମୁଁ ସଭାରେ ଆଲୋଚନା ହୋଇଥିବା ବିଷୟ କାହାରି ପାଖରେ ପ୍ରକଟ କରିବି ନାହିଁ । ସଭାରେ ଯାହା ନିଷ୍ପତ୍ତି ହେବ, ତାହା ଅକ୍ଷରେ ଅକ୍ଷରେ ପାଳିବି । ଅନ୍ୟ ଯିଏ ଯେତେ ଲାଞ୍ଚ ଦେଲେ ବି ନିଜ ମତ ବଦଳାଇବି ନାହିଁ । ଯିଏ ଯାହା ଦେବ ତାହା ଖାଇବୁ; କିନ୍ତୁ ଆମ ସଭା ଯାହାକୁ ଠିକ୍ କରିବେ ତାକୁଇ ଭୋଟ୍ ଦେବୁ ।"

ଶପଥପାଠ ପରେ ଅଧିକାରୀ କହିଲେ, "ଏଥର ଶାସକ ଦଳକୁ ଭୋଟ ଦେବା କି ବିରୋଧୀ ମେଣ୍ଟକୁ ଭୋଟ୍ ଦେବା ତାହା ବିଚାର-ବିମର୍ଶ କର ।" ଜଣେ ଅତି ଉତ୍ତେଜିତ ହୋଇପଡ଼ି କହିଲା—"ଗତ ତିରିଶି ବର୍ଷ

ହେଲା ଆମେ ଗୋଟିଏ ଦଳକୁ ଭୋଟ୍ ଦେଇ ଆସିଲେଇଁ । ଆମର ସେ ଦଳଟା କ ଅଲୁଅ କଲେ ହେ ! ଆଜ ତା ନାଁ ଧରନା । ସେମାନଙ୍କର ଘର ଗଉଁ ହୋଇଗଲେଣି । ସେମାନେ ଆମକୁ ସେମାନଙ୍କ ବାଡ଼ିତଳେ ଉଡ଼ିଥିଲ ଭଳ ମନେ କରୁଛନ୍ତି । ସତେକ ଯେମିତ ଆମ ବଡ଼ ସାଆନ୍ତ ! ଭୋଟ୍-ବେଳେ ଘର ଘର ଡାକ କାନ୍ଧରେ ହାତ ପକେଇ ଦେବେ । ଭୋଟ୍‌ପରେ ଆଜ ଦେଖା ନାହିଁ ? ଓଲଟି ଦେଖାକର ଦୁଃଖ ଜଣେଇବାକୁ ଗଲେ, କୋଟିର ବାଡ଼ ପାଟରୁ ଚଣ୍ଡିଆ । ନା, ତାଙ୍କୁ ଆଉ ଭୋଟ୍ ଦେବାନ !”

ଅଉ ମୋହରର କହିଲା, “ଓହୋ ! କେଡ଼େ ଜାଲିଆ, ବଦମାସ ସେଗୁଡ଼ାକ । ଆଗେ ଦୁର୍ନୀତି ନିବାରଣ ବିଭାଗ ଅପମିଶ୍ରକୋରୀମାନଙ୍କୁ ପକଉଥିଲେ ବୋଲି, ସେହି ଦଳର ମନ୍ତ୍ରୀମାନେ ସେହି ବିଭାଗ ହାତରୁ କ୍ଷମତା କାଢ଼ିନେଲେ । ପ୍ରକାଶ୍ୟରେ ଅପମିଶ୍ରକୋରୀଙ୍କୁ ଅପମିଶ୍ରଣ କରିବାକୁ ବାଟ ଛାଡ଼ି, ସେମାନଙ୍କଠାରୁ ଦ’ହାତିଆ ଟଙ୍କା ଖାଇଲେ । କେଡ଼େ ଜାତିଦ୍ରୋହୀ, ଜନଦ୍ରୋହୀ ଏଗୁଡ଼ାକ । ଟଙ୍କା ପାଇଁ ଏମାନେ ଗୋଟିଏ ଜାତିକୁ ପଙ୍ଗୁ କରିଦେବାକୁ ପଛଉ ନାହାନ୍ତି । ସେ ପାପୀ, ଦୁଷ୍ଟନ-ଗୁଡ଼ାଙ୍କ ନାଁ ଧରିବାର ନୁହେଁ ।”

ଆଉ ଜଣେ କହିଲା—“ହାଲ୍‌କୁ ଯେଉଁ ଦଳ ମୁଣ୍ଡ ଟେକୁଛି, ସେ କୋଉ ଭଲ ? ନରୋତ୍ତମ ଦାସ ଯାହା କହୁଛି, ସବୁ ଅକ୍ଷରେ ଅକ୍ଷରେ ସତ । ସେମାନେ କଅଣ ସ୍ୱର୍ଗରୁ ଖସି ପଡ଼ିଛନ୍ତି । ସମସ୍ତେ ଏକା ଲଉର ମଞ୍ଜି । ଏ ଦଳର ଲୋକେ ବରଂ ଭଲ; କନ୍ତୁ ନେତାଏ ଅସଲ ଚୋରି ।”

ସଭାରେ ଦୁଇଦଳଙ୍କର ଏହିପରି ପିଣ୍ଡ ବଢ଼ାଗଲା ।

ଯାହାର ଯେଉଁ ଦଳ ପ୍ରତି ରାଗ ଥିଲା, ସେମାନେ ତାକୁ ଜଣକ ଶୋଧାଶୋଧି କରି ହାଲିଆ ହୋଇପଡ଼ିଲେ । ରାଗର ତାଉଟା ଏତେ ବଢ଼ିଯାଇଥିଲା ଯେ ଉଦ୍ଦିଷ୍ଟ ବ୍ୟକ୍ତିମାନେ ଯଦି ଆଗରେ ଆଆନ୍ତେ, ତେବେ ସଙ୍ଗେ ସଙ୍ଗେ ସେମାନେ ଖୋମିନୀ ଅର୍ଡ଼ର ପାଶ୍ କରି ଦେଇଥାଆନ୍ତେ । ସମସ୍ତେ ଟିକଏ ଶାନ୍ତ ହୋଇଯିବା ପରେ ଅଧିକାରୀ ଲୋକଙ୍କର ଆରମ୍ଭ କଲେ, “ଦେଖ, ଏବେ ଆମେ ଜାଣିପାରୁ ଦୁଇଦଳଯାକରେ

ଗୋଳମାଳିଆ, କଳାପୋଷିଆ, ଅବଶ୍ଯାସିଆ, ଲୋକେ ଭରପୂର ହୋଇ ରହିଛନ୍ତି । ଦୁଇ ଦଳରେ ଅଳ୍ପ ଯେଉଁ କେତେକ ଭଲ ଲୋକ ଅଛନ୍ତି, ସେମାନଙ୍କ କଥା ଶୁଣୁଛି କିଏ ? ଏଥର କିଏ ସେ ଗାଦିରେ ବସିବ ତାହା ଜଣାପାଉନି । ଗୋଟାଏ ଦଳ ଖଣ୍ଡ ତ ଆର ଦଳଟା ଦଗାବାଜ୍ । ଯାହାକୁ ଭୋଟ୍ ଦେବ, ଏକା କଥା । ତେଣୁ କରି ଆମେ ଆମର ପୂର୍ବୁବା ପୂର୍ବୁବ ସେହି ଖଣ୍ଡଦଳକୁ ଦେବା । କିନ୍ତୁ ଖବରଦାର ! ଏ କଥା କେହି ପ୍ରକଟ କରିବ ନାହିଁ । ସେମାନଙ୍କ ଲୋକଙ୍କୁ ଚୁପ୍‌ଚୁପ୍ କରି କାନରେ କହିଦେବ—ଦେଖ, ଆମର ଠିକ୍ ହୋଇଛି ଆମେ ସମସ୍ତେ ଆପଣଙ୍କୁ ଭୋଟ୍ ଦେବୁ । କିନ୍ତୁ ଆମେ ବାହାରେ ଦେଖେଇ ହେବୁ ଯେ, ଆମେ ଆପଣଙ୍କ ଉପରେ ରାଗିଛୁ ଆଉ ନୂଆ ଦଳକୁ ଭୋଟ୍ ଦେବୁ ବୋଲି ମହାପ୍ରସାଦ ଛୁଇଁ ନିୟମ କରିଛୁ । ନୂଆ ଦଳଠୁ ଟଙ୍କା ଖାଇବୁ, ଆପଣଙ୍କୁ ଭୋଟ୍ ଦେବୁ । ଆପଣ ଆମର ଏ ଷ୍ଟାଇଲ୍‌କୁ ଭୁଲ୍ ବୁଝିବେ ନାହିଁ ।"

"ନୂଆ ଦଳର ଲୋକଙ୍କୁ ବି ଶୁଆ କହିଲା ପରି ସେମିତି କହି-ଦେବ । ବାସ୍ ! ଆମେ ଦି' ଦଳଙ୍କ ପାଖରେ ଭଲ ହୋଇ ରହିବା । ନୂଆ ଦଳଟା ବାରଜାତି ତେରଗୋଳି ମିଶି ଗଢ଼ିଛନ୍ତି । ନଈ ବଢ଼ିରେ ଭାସି-ଯାଉଥିବା କାଠ ଉପରେ ନେଉଳ-ସାପ ଯେମିତି ପରସ୍ପରକୁ ଆକ୍ରମଣ ନ କରି ଚୁପ୍‌ଚାପ୍ ରହୁଥାଆନ୍ତି, ଏ ବାରଜାତି ତେରଗୋଳିମାନେ ନିର୍ବାଚନ ନଈ ପାରହେବା ଲାଗି ଏକାଠି କୁଣ୍ଡିଆକୁଣ୍ଡି ହୋଇ ବସିଛନ୍ତି । ଜିତୁଛନ୍ତି କି ନା ସନ୍ଦେହ । ଜିତିଲେ ବି ଗାଦିରେ ବସିଲାବେଳକୁ କାମୁଡ଼ା-କାମୁଡ଼ି ହୋଇ ତଳେ କଚାଡ଼ି ହୋଇ ନ ପଡନ୍ତୁ ! ଆମେ ଆମର ଆଗ ଦଳକୁ ଭୋଟ୍ ଦେବା । ସେମାନଙ୍କ ସଙ୍ଗେ କିଛି ହେଲେ ଜାଣ-ଚିହ୍ନଣ ଅଛି । ଦୈବାତ୍ ଯଦି ନୂଆ ଦଳ ଗାଦିକୁ ଆସିଯାଆନ୍ତି, ତେବେ ଆମେ ଗୋଟାକପଣେ ତାଙ୍କର ହୋଇଯାଇ କହିବା—"ଆମେ ସମସ୍ତେ ମେଣ୍ଟ ହୋଇ ଆପଣଙ୍କୁ ଭୋଟ୍ ଦେଇଛୁ ।" ସମସ୍ତଙ୍କ ମନକୁ କଥାଟା ପାଇଗଲା ।

ନିର୍ବାଚନର କବାଟ ଖୁଡ଼ୁ ଖୁଡ଼ୁ କରିବା କାମ ସରିଗଲା । ସେ କବାଟ ପେଲି ଭୂସ୍‌କରି ଘର ଭିତରେ ପଶିଗଲା । ଲାଗିଗଲା ହୋ-ହୋ,

ଦୁମ୍‌ଦାମ, ଭୁମ୍‌ଭାସ, ଜିପ୍‌ମାନଙ୍କର ଘୋର ଘର୍ଘର ଗର୍ଜ୍ଜନ; ବଡ଼ପାଟିଆ-ଗୁଣ୍ଡାଙ୍କର ଘଡ଼ଘଡ଼ିଆ ପାଟି ନିର୍ବାଚନ ମଣ୍ଡଳୀକୁ ଉଠେଇଲା ପକେଇଲା । ଝିଲହାଣ୍ଡିରେ ଟାଉଟରମାନଙ୍କ ଗୋଡ଼ ପଶିଗଲା । ପ୍ରଚାରକମାନଙ୍କ ତଣ୍ଡି ଘାଗଡ଼ା ପଡ଼ିଗଲା । ତଥାପି ଶଲେଇବାଲେ କୋଡେଇ ନଥାଏ । ଭୋଟର୍-ମାନଙ୍କ ଅବସ୍ଥା ଗାଆଣ ଗାଇଲାନି । ଜଣେ ପାକଲେଇ ପୁକ୍‌ଲେଇ ଦୁଆର ମୁହଁ ନଉଉଁଣ୍ଡୁ ଆଉ ଜଣେ ତା' ଉପରକୁ ଡେଇଁପଡ଼ୁଥାଏ । ଭୋଟର-ମାନେ ଭାବିବାକୁ ଲଗିଲେ ଯେ ସେମାନଙ୍କର ସବୁ କଣ୍ଟୁ କାମ, ଏପରିକି ଖାଇବା-ପିଇବା, ଶୋଇବା ଆଦି କାମ ଛାଡ଼ିଦେଇ, କେବଳ ପ୍ରଚାରକ-ମାନଙ୍କ କଥାରେ କାନ ଦେବାକୁ ପଡ଼ିବ । ୩୦ ବର୍ଷୟର ପ୍ରାର୍ଥୀ, ପ୍ରଚାରକ ଓ କର୍ମୀମାନେ ଗଣତନ୍ତ୍ର ଓ ନିର୍ବାଚନ ବିଷୟରେ ବକ୍ତସବୁ ପଢ଼ି ପଢ଼ି ଏପରି ସାଧୁ ପାଲଟିଯାଇଥିଲେ ଯେ, ଧୂଳପଦାଲଙ୍କ ନାକରୁ ବୁଢ଼ାଣିଂଘାଣି ବାହାରି ପଡ଼ିଲା । ଯୁଦ୍ଧରତ ଦୁଇ ଦଳର ପ୍ରଚାରକ ଓ କର୍ମୀଙ୍କୁ ଅଲଗା ଅଲଗା କରି ରଖିବାକୁ ସେମାନେ ଖଣ୍ଡିଆମଣ୍ଡିଆ ହେବାକୁ ଲାଗିଲେ । ଦୂରଦୂରାନ୍ତରରୁ ଛେଳି କୁକୁଡ଼ାମାନେ ସ୍ୱ ପ୍ରଚାର କାର୍ଯ୍ୟରେ ସାହାଯ୍ୟ କରିବାକୁ ଅଣା ଯାଇଥିଲେ । ସେଇଠୁଁ ସେମାନେ ଆଉ ଘରକୁ ନ ଫେରି ସିଧାସଳଖ ସ୍ୱର୍ଗକୁ ଚାଲିଗଲେ । କାନ୍ଥ ବାଡ଼ ସବୁ ଘଡ଼ିକେ ଘଡ଼ି ଭିନ୍ନ ଭିନ୍ନ ପୋଷ୍ଟରରେ ମଣ୍ଡିତ ହୋଇ ହରଦମ୍ ବେଶ ବଦଳେଇବାରେ ଲାଗିଲେ । ଭୂରିଭୋଜନ ପାଉଥିବା ମନ୍ଦିରର ଦେବତାମାନେ ତଥା ଅପନ୍ତରାରେ ଗଛମୂଳେ ପଡ଼ିଥିବା ମର୍‌ଭୁକା ଦେବଦେବୀମାନେ ପୂଜା ପାଇ ମଜ୍‌ଗୁଲ ହୋଇଗଲେ । ଗବେଦ୍ଧା ଓ ବାଦ୍ୟକାରମାନଙ୍କର ଆକାଶରୁ ବର୍ଷା ହେଲା । ନିର୍ବାଚନ ଜର ଏକାବେଳକେ ୧୧୦ ଡିଗ୍ରୀ ହୋଇଗଲା ।

ପିତାଶୁଣିଆଙ୍କ ଘୋଷା ପାଠ ଶୁଣି ଶାସକଆମାନେ ଭାବିଲେ—ସେମାନେ ଠିକ୍ କହୁଛନ୍ତି । ସେମାନେ କାଳ କାଳ ଧରି ସେମାନଙ୍କୁ ଏକମେଣ୍ଟ ହୋଇ ଭୋଟ ଦେଇ ଆସିଅଛନ୍ତି । ସେମାନଙ୍କ ସଙ୍ଗରେ ଗୋଟିଏ ବନ୍ଧୁବାନ୍ଧବପଣିଆ ଯୋଖି ହୋଇଗଲାଣି । ସେମାନେ ଯେତେ-ହେଲେ ତାଙ୍କର ଯଜମାନ । ଏଣୁ ସିଏ ଯେତେ ପ୍ରଲୋଭନ ଦେଖାଉ ନା କାହିଁକି, ସେମାନେ ତାଙ୍କ ଛଡ଼ା ଆଉ କାହାକୁ ଭୋଟ୍ ଦେବେନି ।

ନୂଆଦଳଆ ବି ପିତାଶୁଣିଆଙ୍କ ଶୁକପାଠ କଥା ଶୁଣି ଭାବିଗଲେ ପିତାଶୁଣିଆଏ ଠିକ୍ କହୁଛନ୍ତି । ଏତେ ଦିନ ଯାଏ ଶାସକଆଙ୍କୁ ଭୋଟ୍ ଦେଇ ଆସିଲେ; କିନ୍ତୁ ସେମାନେ ତାଙ୍କ ପାଇଁ କଅଣ କଲେ ? ଶାସକଆମାନେ ନିଜ ନିଜର ଦୁଇ ଦୁଇଟା ତିନି ତିନିଟା କୋଠା ବାଡ଼େଇ ଦେଇଛନ୍ତି; ହେଲେ ପିତାଶୁଣିଆଙ୍କର ଯେଉଁ ସ୍ଥିତିକୁ ସେଇ ସ୍ଥିତି । ସେମାନେ କଅଣ ମଣିଷ ନୁହନ୍ତି ? ଶାସକଆମାନେ ଭୋଟ୍ ନେଇସାରି ନାକରେ ତେଲପକାଇ ଯେ ଶୋଇପଡ଼ୁଛନ୍ତି ଆଉ ଅତି ସ୍ୱାର୍ଥପର ଭାବରେ ନିଜ ନିଜର କେବଳ ଉନ୍ନତି କରି ଲାଗିଛନ୍ତି, ତାହା ବୁଝିବା ପିତାଶୁଣିଆଙ୍କର ଆଉ କଅଣ ବାକି ଅଛି ? ସେମାନେ ବି ଅଲବତ୍ ଭାବୁଥିବେ ଯେ, ଏତେଦିନଯାଏ ଶାସକଆଙ୍କୁ ଦେଇ ଫଳ ଦେଖିଲେ, ଏଥର ନୂଆ ଦଳକୁ ଦେଇ ଦେଖିବା । ଏଥର ପିତାଶୁଣିଆଏ ନିଶ୍ଚିତ ଭାବରେ ସେମାନଙ୍କୁ ଭୋଟ୍ ଦେବେ ।

ଦୁଇ ଦଳଯାକ ଏହିପରି ନିଶ୍ଚିତ ଭାବରେ ଭୋଟ୍ ପାଇବେ ବୋଲି ମନରେ ଆଣ୍ଠୁବାନ୍ଧି ବସି ରହିଲେ । ଭୋଟ୍ ବାକ୍ସ ଫିଟିବା ପରେ ଦୁଇଦଳ ଖୁସ୍ । ଶାସକଆଏ ପିତାଶୁଣିଆଙ୍କର ସବୁ ଭୋଟ୍ ପୋଛୁପାଛୁ ପାଇଥିଲେ ଆଉ ନୂଆଦଳଆ ଅନ୍ୟ ଓ୍ୱାର୍ଡ଼ର ସବୁ ଭୋଟ୍ ମାରିନେଇ ଗାଦିରେ ବସି-ଗଲେ । ପିତାଶୁଣିଆଏ ନୂଆଦଳଙ୍କ ଲୋକ ସାଜି ବିଜୟ ପଟୁଆରରେ ସବା ଆଗରେ ବାନାବୈରଖ ଧରି, ଜୟ ଜୟକାର ଓ ଜିନ୍ଦାବାଦ୍ ଧ୍ୱନି ଦେଇ ଚାଲିଲେ । ନୂଆ ଦଳର କାରପଟ୍‌ଦାରମାନେ ପିତାଶୁଣିଆଙ୍କର ଆନ୍ତରିକତା ସେମାନଙ୍କର ବୁଥ୍ ବାକ୍‌ସରୁ ବେଶ୍ ବୁଝିସାରିଥିଲେ । ପିତାଶୁଣିଆଏ ଡାଳେ ଡାଳେ ଯିବା ଦେଖି ସେମାନେ ପତରେ ପତରେ ଯିବା ଆରମ୍ଭ କଲେ ।

ମହା ଆଟୋପର ସହ ନୂଆ ଦଳର ମନ୍ତ୍ରୀମାନେ ଗାଦିରେ ବସିଲେ । ଦେଶସେବା, ଜନସେବା କରିବାକୁ ଚାରିଆଡ଼ ଅଣ୍ଡାଳି ଲାଗିଲେ । ଗୋଟିଏ କିଏ ଯଦି ଆଗରେ ହାବୁଡ଼ିଯିବ, ତାଙ୍କୁ ମାଡ଼ିବସି ସେବା କରି ପକେଇବେ । ଅନାର୍ଯ୍ୟ ଲୋକଗୁଡ଼ାକ କେହି ହାବୁଡ଼ିଲେ ନାହିଁ । ଉପାୟ ନ ପାଇ ମନ୍ତ୍ରୀମାନେ ସ୍ୱକର ମୁଣ୍ଡି ଖୋଲିଦେଲେ ।

ପହିଲ ଦଫାରେ ୪୦ଟା ପିଅନ ପୋଷ୍ଟ ଖାଲି ହେଲା । ୪୦ ହଜାରରୁ ବେଶି ଦରଖାସ୍ତ ପଡ଼ିଲା । ପିତାଶୁଣୀ ବସ୍ତିର ୪ଟା ନିକମା ଟୋକା ତାହିଁରେ ଥିଲେ । ଭୋଟ୍‌ବେଳେ ସେମାନେ ମନ୍ତ୍ରୀଙ୍କର ବହୁତ କାମ କରିଥିଲେ ବୋଲି ବହୁବାର ତାଙ୍କୁ କହିଥିଲେ । ସାକ୍ଷାତକାର ପରେ ସେମାନେ ମନ୍ତ୍ରୀଙ୍କୁ ଅଲଗା ଅଲଗା ଭେଟିଲେ । ଶୁଆ ପାଠ ପଢ଼ିଲାପରି ମନ୍ତ୍ରୀ ସମସ୍ତଙ୍କୁ ଗୋଟିଏ ଉତ୍ତର ଦେଲେ, ଦେଖ, ମୁଁ କାହା ପାଇଁ ସୁପାରିଶ କରେନି, ଯାହାର ଯୋଗ୍ୟତା ଥିବ, ତାହାର ପାଇବା ଉଚିତ । ମୋର ସେଥିରେ ହସ୍ତକ୍ଷେପ କରିବା ଉଚିତ ହେବନି । ତୁମ କଥା ଭାଙ୍ଗି ପାରୁନି । ଗଜାନନ ବାବୁଙ୍କ ପାଖକୁ ଲେଖି ଦେଉଛି । ସେ ପାରୁପର୍ଯ୍ୟନ୍ତ ଚେଷ୍ଟା କରିବେ । ମନ୍ତ୍ରୀଙ୍କଠାରୁ ଚିଠି ନେଇ ଗୁପ୍ତରେ ଅଲଗା ଅଲଗା ମୁକରରି କରିବା ହାକିମଙ୍କୁ ଭେଟିଲେ । ହାକିମ ବି ପ୍ରତ୍ୟେକଙ୍କୁ ନିର୍ଭର ପ୍ରତିଶ୍ରୁତି ଦେଇ ବିଦାୟ କରିଦେଲେ ।

ତଳ ହାକିମ ବିବ୍ରତ ହୋଇ ଉପର ହାକିମଙ୍କୁ କହିଲେ, "ଆଜ୍ଞା, ଏ କି ଅଦ୍ଭୁତ କଥା ! ମନ୍ତ୍ରୀ ତାଙ୍କର ସମର୍ଥକ ୨୫ ଜଣଙ୍କୁ ପିଅନ ଚାକିରିରେ ରଖିବାକୁ ନିଜେ କହିଦେଇ ଗଲେ । ସେ ବି ଭଲକରି ଜାଣିଛନ୍ତି ଯେ, ବାକି ୩୫ଟି ଥାନ ପାଇଁ ଆଉ ଆଉ ମନ୍ତ୍ରୀଙ୍କ ବୋଲକରାମାନେ ଆଗରୁ ତାଲିକାଭୁକ୍ତ ହୋଇସାରିଛନ୍ତି । ଏପରି ସ୍ଥଳେ ମନ୍ତ୍ରୀ ଆଉ ୪ଜଣଙ୍କୁ ଲେଖି ପଠାଉଛନ୍ତି କିପରି ?"

ଉପର ହାକିମ ହସି ହସି କହିଲେ, "ସବୁ ଠିକ୍ ଅଛି । ଏମିତିଆ ଚିଠି ଆହୁରି ଅନେକ ଆସିବ । ସେଥିରେ ଘାବରେଇବାର କିଛି ନାହିଁ । କେଉଁ କାଳିରେ ଲେଖା ହୋଇଛି ସେଇଟା ଆଗେ ଦେଖିବ । ଯଦି ନେଳିଆ କାଳିରେ ଲେଖା ହୋଇଥିବ, ତେବେ ସେ ଲେଖାକୁ ଗୁରୁତ୍ୱ ଦେବ । ଯଦି ବାଇଗଣିଆ କାଳିରେ ଲେଖା ହୋଇଥିବ, ତେବେ ପତ୍ର-ବାହକକୁ ହଁ-ହଁ କହି ବିଦାୟ ଦେବା ପରେ ସିଧାସଳଖ ଅଳିଆଟୋକେଇ ଭିତରକୁ ପକେଇ ଦେବ । ସବୁ ମନ୍ତ୍ରୀ ଏକାଠି ବସି ଏଇଟା ଠିକ୍ କରିଛନ୍ତି ଆଉ ଆମକୁ ଜଣେଇ ଦେଇଛନ୍ତି । ଫୋନ୍‌ରେ ବି ସେମିତି । ଫୋନ୍‌ରେ ଯଦି ସେ କହିବେ—ମୁଁ ଅମୁକ ଦାସ କହୁଛି, ତେବେ ସେସବୁ କଥା

ଏ କାନରେ ପୂରେଇ ସେ କାନରେ କାଢ଼ିଦେବ । ଯଦି ସେ କହିବେ, ମୁଁ ଅମୁକ ମନ୍ତ୍ରୀ କହୁଛି, ତେବେ ତାଙ୍କୁ ମୁଣ୍ଡରେ ରଖିବ । ଏହି ୪୦ଟା ପିଅନ ଚାକିରି ପାଇଁ ୪୦୯ ବାଇଗଣିଆ କାଗଜର ଚିଠି ଆଉ ଅମୁକ ଦାସଙ୍କ ଠାରୁ ୮୦୦ ଫୋନ୍ ଡାକରା ପାଇବ ।"

ପିଚାଶୁଣୀର ୪ଟାଯାକ ନକମା ଟୋକା ମନେ ମନେ ଗୁଡ଼ମୁଆଁ ଖାଇ ଲାଗିଲେ ଯେ, ସେମାନେ ମନ୍ତ୍ରୀଙ୍କୁ ଭେଟ୍ ନଦେଇ ସୁଦ୍ଧା ତାଙ୍କୁ ଡାହା ଠକ ଚାକିରିଟକ ପାଇଗଲେ ! ତେଣେ ମନ୍ତ୍ରୀ ଭାବୁଥାନ୍ତି—ଠକ ପିଚାଶୁଣିଆଏ ଆମକୁ ବୋକା ଠଉରେଇଛନ୍ତି । ଆରେ ତୁମେ ସମସ୍ତେ ତ ଆମ ଚିହ୍ନରେ ମୋହର ମାରିଲ, ସେ ମୋହର ଚିହ୍ନ ସବୁ ଲିଭେଇଲା କିଏ ? ବାକ୍ସ ଭିତରେ କଅଣ ଭୂତ ପଶିଯାଇ ଲିଭେଇ ପକେଇଲା ? ତୁମେ ଯେମିତିଆ ଭେଟ୍ ଦେଇଥିଲ, ଆମେ ତୁମକୁ ସେମିତିଆ ଚାକିରି ଦେଲୁ । ଆରେ ତୁମେ ଡାଳେ ଡାଳେ ଗଲେ, ଆମେ ପତ୍ରରେ ପତ୍ରରେ ଯିବୁ । ତୁମେ ଆମକୁ ଠକୁଥିବ, ଆମେ ତୁମକୁ ଠକୁଥିବୁ । ଠକାଠକି ଏମିତି ଚାଲିଥିବ ।



## ॥ ଭେଣ୍ଡି ବେପାର ॥

ବୋଳଖାଙ୍କିଆ ଦଳ ଯେତେ ପ୍ରକାର ଚେଷ୍ଟାକଲେ ବି ଚୁଙ୍ଗୁଡ଼ିଆ ଦଳଙ୍କୁ କ୍ଷମତାରୁ ହଟେଇ ପାରିଲେ ନାହିଁ । କାରଖାନ୍‌ଦାରମାନଙ୍କର ମନରେ ଗୋଟାଏ ବଡ଼ ଅବଶୋଷ ଆସିଗଲା । ସେମାନେ ମୁଣ୍ଡରେ ହାତ ଦେଇ ଭାବିବାକୁ ଲାଗିଲେ—ଚୁଙ୍ଗୁଡ଼ିଆଏ କଅଣ ଗାଦିକୁ ଇସ୍ତମରାର ପଟା କରି-ନେଲେ । ଯାବତ୍ ଚନ୍ଦ୍ରାର୍କେ ସେମାନେ କ୍ଷମତାରେ ଥାଇ ଆଖୁ ଦୋରୁଅ ପିଉଥିବେ, ଆଉ ଆମେ ଫୋପଡ଼ା ହୋଇଥିବା ସିଠାଚକ କେବଳ ଶୁଙ୍ଘୁଥିବୁ । ଏଇଆ କ'ଣ ଭଗବାନଙ୍କ ଇଚ୍ଛା । ଦଳେ ସବୁଦିନ ପାଇଁ ଖାଉଥିବେ, ଆଉ ଦଳେ ସବୁ ଦିନ ପାଇଁ ଚାହିଁଥିବେ ଓ ଉହ୍ଵାଳବିକଳ ହେଉଥିବେ । ନା-ନା, ଭଗବାନଙ୍କର ଏପରି ଇଚ୍ଛା କେବେହେଲେ ହେବ ନାହିଁ । ସେମାନେ ଭଗବାନଙ୍କୁ ସନ୍ଦେଶ, ରବଡ଼ି ଦେଇ ପୂଜା କଲେ କଅଣ ହେଲା, ଆମେ ବି ଗୁଡ଼ମୁଆଁ, ମାଣ୍ଡିଆ ଜାଉ ଦେଇ ପୂଜୁଛୁ । ଆମେ ବେଶି ଭକ୍ତିରେ ପୂଜୁଛୁ । ଶ୍ରୀକୃଷ୍ଣ ଦୁର୍ଯ୍ୟୋଧନଠାରୁ ପଲଉ, ପାୟସ, ରସାବଳି, ରାଜଭୋଗ ନ ଖାଇ, ପାଣ୍ଡବମାନଙ୍କଠାରୁ ପଖାଳ ଭାତ, ସଜନା ଶାଗ ଖାଇଥିଲେ । ରାମଚନ୍ଦ୍ର ଶବରୁଣୀର ଅଇଁଠା କୋଳି ବି ଖାଇଦେଇଥିଲେ । ତେଣୁ ଭଗବାନ ନିଶ୍ଚୟ ଚୁଙ୍ଗୁଡ଼ିଆଙ୍କ ଭବ୍ୟ ମିଷ୍ଟାନ୍ନକୁ ପସନ୍ଦ ନକରି, ଆମ ଗୁଡ଼ମୁଆଁ ଓ ମାଣ୍ଡିଆ ଜାଉକୁ ଆଦରରେ ଖାଉଥିବେ । ଏଣୁ ଚୁଙ୍ଗୁଡ଼ିଆଙ୍କର ଗାଦି ମାଡ଼ି ବସିବାରେ ଭଗବାନଙ୍କର କୌଣସି ହାତ ନାହିଁ । ଏହା ପଛରେ ଅନ୍ୟ କାରଣ ନିଶ୍ଚୟ ଅଛି । ନିର୍ବାଚନ ବହୁତ ଆଗରେ ଦେଖାଗଲାଣି । ଘନେଇ ଆସିବାକୁ ଅଳ୍ପଦିନ ବାକି । ଇଆଡ଼ୁ ସେସବୁ କାରଣର ସନ୍ଧାନ ନେଇ ତାର କାଟପାଣି ନକଲେ ଠିକଣା ସମସ୍ତ ବେଳକୁ ଅଠାଠିକ୍ ହୋଇଯିବ । ପୁଣି ପାଞ୍ଚ ବର୍ଷ ପାଇଁ ଆମେ ହେଙ୍ଗୁ ଶୁଙ୍ଘୁଥିବା ।

ବୋଳଝାଞ୍ଜିଆ ଦଳଙ୍କର ଏକ ଜରୁରୀ ତଥ୍ୟ ନିର୍ଦ୍ଧାରଣ ବୈଠକ ବସିଲା । ଦଳପତି ଆରମ୍ଭ କଲେ—"ଆମ ଦୁର୍ଗତି ପାଇଁ ଆମେ ସ୍ୱୟଂ ଦାୟୀ । ଏଥିପାଇଁ ଭଗବାନଙ୍କୁ ବା ଅନ୍ୟ କାହାକୁ ଦାୟୀ କରିବା ଏକ ଖରାପ କଥା । ଆମେ ନିଜ ଦୋଷ ଦୁର୍ବଳତା ଖୋଜିବାକୁ କେବେହେଲେ ଚେଷ୍ଟା କରୁନୁ । ନିଜ ଦୋଷ ଖୋଜି ପାଇବା ବଡ଼ କଷ୍ଟକର କଥା । ଦିନବେଳା ସମସ୍ତେ ସବୁ କିଛି ଦେଖିପାରନ୍ତି; କିନ୍ତୁ ପେଚା ଓ ବାଦୁଡ଼ିଙ୍କୁ କିଛି ଦିଶେ ନାହିଁ । ଆମେ ଅନ୍ୟମାନଙ୍କ ଦୋଷଗୁଡ଼ାକ ସ୍ପଷ୍ଟ ଦେଖିପାରୁ । ଅନ୍ୟମାନେ ଆମ ଦୋଷ ସ୍ପଷ୍ଟ ଦେଖିପାରନ୍ତି, କିନ୍ତୁ ନିଜେ ନିଜର ଭୁଲ ଦେଖିପାରୁନା । ଅନ୍ତରର ସହିତ ବହୁ ପରିଶ୍ରମ କଲେ ଏହା ଅବଶ୍ୟ ଦିଶିବ ।"

ଜଣେ କହିଲେ—"ହଉ, ତେବେ ଆପଣ ବତାଇ ଦିଅନ୍ତୁ ନା ଆମ ଦଳର ଭୁଲ୍ କେଉଁଠି ରହି ଯାଉଛି ! ଆମେ ଜାଣିଗଲେ ସେଥିପ୍ରତି ସତର୍କ ରହିବା ।"

ଆଉ ଜଣେ କହିଲେ—"ହଅବା, ଲୁଗୁଚୁପା କଅଣଟାଏ ଅଛି ଯେ । ଆମର ଅସଲ କଥା ହେଲା ଧନବଳ ନାହିଁ । ଶିଙ୍ଗୁଡ଼ିଆ ଦଳ ବହୁ-ଦିନ କ୍ଷମତାରେ ରହିବା ଫଳରେ ଭଣ୍ଡାର ଘରେ ଟଙ୍କା ଖୁନ୍ଦି ଦେଇଛନ୍ତି । ଟଙ୍କା ତାଙ୍କ ପଛେ ପଛେ ଗୋଡ଼େଇଛି । ମନଇଚ୍ଛା ଟଙ୍କା ବାଣ୍ଟିଦେଉଛନ୍ତି; ଭୋଟ୍‌ତକ କିଣି ନେଇ ଯାଉଛନ୍ତି । ଆମ ପାଖରେ ସେମିତିଆ ଟଙ୍କା ଥିଲେ, ଆମେ ବି ଗାଦି ଦଖଲ କରିପାଆନ୍ତୁ ।"

ଦଳପତି ପ୍ରତିବାଦ କରି କହିଲେ—"ସେଇଟା ଠିକ୍ କଥା ନୁହେଁ । ତାହା ହୋଇଥିଲେ ଶିଙ୍ଗୁଡ଼ିଆ ଦଳର ପ୍ରାର୍ଥୀମାନେ ତ ସମସ୍ତେ ଜିତି ଆସୁଥାଆନ୍ତେ । ତାଙ୍କ ଦଳରୁ ତ ପୁଣି ମେଣ୍ଢା ମେଣ୍ଢାମାନେ ଚଳପଡ଼, ପସାରୁଣୀ ଶୁଙ୍ଘିଲା ପରି ମୁହଁ କରି ମାସ ମାସ ଧରି ଗାତରେ ଲୁଚୁଛନ୍ତି । ଟଙ୍କାଟା ଆଂଶିକ କାରଣ ହୋଇପାରେ ; କିନ୍ତୁ ଏକମାତ୍ର କାରଣ ନୁହେଁ ।"

ଆଉ ଜଣେ କହିଲେ—"ଧନଟା ଆଂଶିକ କାରଣ ମୁଁ ମାନୁଛି । ବଡ଼ କାରଣ ହେଲା—ସରକାରୀ କଳର ବ୍ୟବହାର । ସରକାର ଗଢ଼ି ସାରିବା ପରେ ମନ୍ତ୍ରୀମାନେ ଆଉ ଲୋକଙ୍କ ସହିତ ସମ୍ପର୍କ ରଖନ୍ତିନି ।

ସେମାନେ ସମ୍ପର୍କ ରଖନ୍ତି ଟାଉଟରମାନଙ୍କ ସହ । ଲୋକଙ୍କ ସହିତ ସମ୍ପର୍କ ରଖନ୍ତି ସରକାରୀ କର୍ମଚାରୀମାନେ । ଆମ ସମ୍ବିଧାନ ସେଇ ରଙ୍ଗୁଡ଼ିଆ ଦଳର ବଡ଼ ବଡ଼ କାରପଟ୍‌ବାରମାନେ କରିଛନ୍ତି । ସେମାନେ କ୍ଷମତାକୁ ଯାବତ୍ ଚନ୍ଦ୍ରାର୍କେ କବଜାରେ ଜକଟି ମକଟି ଧରି ରଖିବେ, ତା'ର ଉପାୟ ଖଞ୍ଜି ଦେଇଥିଲେ । ନିର୍ବାଚନ ହୋଇ ନୂଆ ସରକାର ଗଢ଼ାହେବା ପର୍ଯ୍ୟନ୍ତ ପୁରୁଣା ମନ୍ତ୍ରିମଣ୍ଡଳ କାମ ଚଳେଇଥା'ନ୍ତି । ଏମାନଙ୍କ ହାତରେ କ୍ଷମତା ରହିଲେ ନିରପେକ୍ଷ ନିର୍ବାଚନ ହେବ ବା କିପରି ? ସବୁ ଦଳଙ୍କୁ ସମାନ ଆସନରେ ରଖି ନିର୍ବାଚନ ଫୁଲ୍‌କାକୁ ଛାଡ଼ିଦେବା ଉଚିତ । ଜଣଙ୍କ ହାତରେ କ୍ଷମତା ରହିବ, ଆଉ ଦଳ ଫାଙ୍କା—ଏଇଟା ନିରପେକ୍ଷତା ନା ଭଣ୍ଡାମି ?"

ଜଣେ କହିଲା—"ହଁ ହଁ ହୋ, ବ୍ରିଟେନରେ ନିର୍ବାଚନ ପୂର୍ବରୁ ଥିବା ସରକାର ଇସ୍ତଫା ଦିଏ, ଆଉ ସବୁ କ୍ଷମତା ରାଣୀଙ୍କ ହାତକୁ ଚାଲିଯାଏ । ସମସ୍ତେ ସମାନ ସୁଯୋଗ ପାଇ ନିର୍ବାଚନ ଲଢ଼ନ୍ତି ।"

ଦଳପତି କହିଲେ—"ଏଠି ସେତିକି ହୋଇଗଲେ, ସରକାରୀ କଳକୁ କାମରେ ଲଗେଇବ କିଏ ? ଲୋକମାନଙ୍କ କାମ ସରକାରୀ କର୍ମଚାରୀମାନଙ୍କ ପାଖରେ । କାମଚଳା ମନ୍ତ୍ରୀମାନଙ୍କ ଇଙ୍ଗିତ ପାଇ କର୍ମଚାରୀମାନେ ଲୋକଙ୍କ ଉପରେ ପ୍ରଭାବ ପକାଇ ଲୋକଙ୍କ ଭୋଟ୍‌ଗୁଡ଼ାକୁ ମନ୍ତ୍ରୀଙ୍କ ଆଡ଼େ ମୁହାଁଇ ଦିଅନ୍ତି । ତଥାପି ଏଇଟା ଆଂଶିକ କାରଣ । ରଙ୍ଗୁଡ଼ିଆ ଦଳ ଏବାଟେ କିଛି ଭୋଟ୍ ମାରି ନିଅନ୍ତି ।"

ଆଉ ଜଣେ କହିଲେ—"ତେବେ ଆଉ କୋଉବାଟେ ସେମାନେ ବେଶି ଭୋଟ୍ ପାଉଛନ୍ତି ? ନିଶ୍ଚୟ କୋଉବାଟେ ପାଇ ଯାଉଛନ୍ତି । ତା' ନ ହେଲେ ଗାଦିରେ ତାଙ୍କର ଡେରି ମାଡ଼ିଲା କିପରି ?"

ଦଳପତି କହିଲେ—"ସେମାନେ ଏଡ଼େ ଚତୁର ହେଲେଣି ଯେ ତାଙ୍କର ଆଉ ବେଶି ଭୋଟ୍ ଦରକାର ହେଉନି । ଏବେ ସେମାନେ ଭୋଟ୍ ପାଇଲାବାଲାଙ୍କୁ ଦରକାର କଲେଣି । ଯିଏ ଭୋଟ୍ ପାଇଲା, ତାକୁ ନେଇଗଲେ କାମ ସରେ । ଆଉ ଭୋଟରଙ୍କ ପଛେ ଗୋଡ଼େଇବେ କାହିଁକି ?"

ପୂର୍ବ ବ୍ୟକ୍ତି କହିଲେ—"ହେଲା ହେଲା, ବଢ଼ିଆ ଏକ ଘୋଡ଼ା ବେପାର ନା ସେମିତିଆ କଅଣ ଏକ ବେପାର ଆରମ୍ଭ କରିଛନ୍ତି ।"

ଦଳପତି କହିଲେ—"ଏ ହେଁ, ସେଇଟାକୁ ଘୋଡ଼ାବେପାର କୁହ ନାହିଁ । ଘୋଡ଼ାକୁ ଅପମାନ ହେବ । ସେଇଟାକୁ ଭେଡ଼ିବେପାର କୁହ । ଘୋଡ଼ାକୁ ତା' ଇଚ୍ଛା ବିରୁଦ୍ଧରେ କିଛି କରେଇବାକୁ ଚେଷ୍ଟାକଲେ ସେ ଡେଇଁବ, ନାତ ମାରିବ । ହିଁ-ହିଁ-ହିଁ ରଡ଼ି ଦେଇ ପ୍ରତିବାଦ କରିବ । କିନ୍ତୁ ଭେଡ଼ିକୁ ଯୁଆଡ଼େ ଅଡ଼େଇବ, ସେ ସେଇଆଡ଼େ ପ୍ରତିବାଦର ଚିହ୍ନ ନ ଦେଖେଇ ଚାଲିଯିବ । ମଝିରେ ମଝିରେ କେବଳ ଭେଁ ଭେଁ ରଡ଼ି ଦେଉଥିବ । ସେଇଟା ତା'ର ପ୍ରତିବାଦ କି ଅନୁମୋଦନ ତାହା ଜାଣି ହେବନି । ଦଳରେ ଯେଉଁ ଦି'ଗୋଡ଼ିଆ ଭେଡ଼ିତକ ଥାଆନ୍ତି, ସେଇମାନଙ୍କ ଯୋଗୁଁ ଆମେ ହନ୍ତସନ୍ତ ହେଉ । ଟିଙ୍ଗୁଡ଼ିଆ ଦଳଙ୍କ ଉପରେ ବିଗିଡ଼ି ଲୋକେ ଆମକୁ ଭୋଟ୍ ଦିଅନ୍ତି । ବିରୁଦ୍ଧ ପକ୍ଷ ତ ହାତଫାଙ୍କ, ଟିଙ୍ଗୁଡ଼ିଆଙ୍କୁ ବାଟ ମିଳିଯାଏ । ଆମ ଦଳରେ ଥିବା ଭେଡ଼ିମାନଙ୍କ ଆଗରେ କେଚାଏ କେଚାଏ ଘାସ ଢାଳନ୍ତି । ବାସ୍ ! ସେମାନେ ଭେଁ ଭେଁ ରଡ଼ିଦେଇ ତାଙ୍କ ପଛେ ପଛେ ଗୋଡ଼େଇ, ତାଙ୍କ ଗୁହାଳ ଭିତରେ ପଶିଯା'ନ୍ତି । ସେ ଭେଁ ଭେଁ ରଡ଼ିର ଅର୍ଥ ହେଉଛି—"ମୁଁ ନିର୍ବାଚନ ଶେଷ ପର୍ଯ୍ୟନ୍ତ ବୁଝିଥିଲି ଯେ, ବୋଳଖାଞ୍ଜି ଦଳରେ ରହିଲେ ଭଲ ଦେଶସେବା କରିହେବ । କିନ୍ତୁ ଏବେ ଦେଖୁଛି, ବୋଳଖାଞ୍ଜି ଦଳରେ ରହି ଦେଶସେବା ତ ଦୂରର କଥା, ଦେଶର କୁଟାଖିଏ ବି ଉଠେଇ ହେଉନି । ମୁଁ ଏବେ ଟିଙ୍ଗୁଡ଼ିଆ ଦଳକୁ ଚାଲିଲି । ଦେଶସେବା ପାଇଁ ସେଠାରେ ଅକଳନ୍ତି କ୍ଷେତ୍ର ପଡ଼ିଛି । ସେଠାରେ ଯେଉଁମାନେ ଆଗରୁ ରହିଛନ୍ତି, ସେମାନେ କେଡ଼େ ସୁନ୍ଦର ସୁନ୍ଦର କୋଠାସବୁ ତିଆରି କରି ଦେଶଟାକୁ ସଜେଇ ଦେଲେଣି ! ସେମାନେ ନିଜେ କିପରି ଗୋଲଗାଲ ହୋଇ ଦେଶକୁ ସୌନ୍ଦର୍ଯ୍ୟ ବିମଣ୍ଡିତ କରୁଛନ୍ତି ! ଆମେ ବୋଳଖାଞ୍ଜିଆ ଘରେ ରହିଛୁ । ଦେଶଟାକୁ ଟିକିଏ ହେଲେ ସୁନ୍ଦର କରିପାରିଲୁନି । ଦେଶଟାକୁ କଦର୍ଯ୍ୟ କରି ରଖିଛୁ ।"

ଆଉ ଗୋଟିଏ ରଡ଼ିର ଅର୍ଥ ହେଉଛି—"କାହିଁକି ମୁଁ ଆଉ ବୋଳଖାଞ୍ଜି ଦଳରେ ରହିବି ? ଦାନ ଖଇରାତ ପଇସାଟିଏ ବି କରି-

ପାରିଲନି । ଜମ୍ବୁର ଶହେଟଙ୍କା ମିଳିଲେ ସିନା ପଇସାଟାଏ ଦାନ କରନ୍ତି । ବ୍ୟବସାୟୀ, କଣ୍ଟ୍ରାକ୍ଟର ତ ସମସ୍ତେ ଟିଙ୍ଗୁଡ଼ିଆଙ୍କ ଉପରେ ଢାଳିଲେ । ପଇସାଧୂଆ ପାଣି ଟୋପାଏ ଆମ ଉପରେ ପଡ଼ିଲାନି । ଆମ ପୁଣ୍ୟ ଭାରତ-ଭୂମି ଦାନ ଖଇରାତର ଦେଶ । ମୋତେ ଖଇରାତ ଅଲବତ୍ କରିବାକୁ ହେବ । ମୁଁ ବୋଳଖାଞ୍ଜି ଛାଡ଼ି ଟିଙ୍ଗୁଡ଼ିଆକୁ ଗଲି ।”

ଆଜି ଗୋଟାଏ ଦୋଟାଏ ଭେଡ଼, ଯେଉଁମାନେ କି ଟିଙ୍ଗୁଡ଼ିଆଙ୍କ ଘାସ ଦେଖି ବୋଳଖାଞ୍ଜି ଦଳ ଛାଡ଼ି ପଳାଇଥାଆନ୍ତି, ଆଜି ଟିଙ୍ଗୁଡ଼ିଆଙ୍କ ପତନ ଓ ବୋଳଖାଞ୍ଜିଆଙ୍କ ଉତ୍ଥାନ ଆସନ୍ନ ଜାଣିପାରି, ପୁଣି ବୋଳ-ଖାଞ୍ଜିକୁ ଲେଉଟି ଆସନ୍ତି; ସେମାନଙ୍କ ରଡ଼ର ଅର୍ଥ ହେଲା—“ଆମର ସେ ଆସନ୍ନପ୍ରସବା ଥିବାରୁ ଉଦ୍‌ବେଗ ମନରେ ଥିଲାବେଳେ ଟିଙ୍ଗୁଡ଼ିଆବାଲା ମୋଠାରୁ ବସ୍ତାଏ ଚିନି ପରମିଟ୍ କରିଦେବେ କହି ଗୋଟିଏ କାଗଜରେ ଦସ୍ତଖତ୍ କରାଇନେଲେ, ଯେଥିରେ ତଥାକଥିତ ମୋ ଘୋଷଣାଟା ଲେଖି-ଦେଲେ । ଏବେ ଆମର ସେ ଖଲାସ ହୋଇଯାଇଥିବାରୁ ଆମ ମନର ଉଦ୍‌ବେଗଟା କମିଗଲା । ଆମେ ଏ ଜାଲ ଫିସାଦ ବୁଝିଗଲୁ । ଟିଙ୍ଗୁଡ଼ିଆ ଦଳ ପ୍ରଗତିଶୀଳ ଓ ବୋଳଖାଞ୍ଜି ପ୍ରତିକ୍ରିୟାଶୀଳ ବୋଲି ଆମ ନାଆଁରେ ଯେଉଁ ଘୋଷଣାପତ୍ର ପ୍ରକାଶ ପାଇଥିଲା, ତାହା ସତ୍ୟ ନୁହେଁ ବୋଲି ଏବେ ମୁଁ ବୁଝିପାରିଲିଣି । ଏବେ ମୁଁ ଏବଂ ସେ ଉଭୟ ବୋଳଖାଞ୍ଜି ଦଳଟା ଅତି ଶକ୍ତିଶାଳୀ ପ୍ରଗତି ଦଳ ବୋଲି ମନେକରୁଛୁ । ପୁଣି ଯଦି ସେମାନେ କେବେ ମୋତେ ଆଉ ଥରେ ଦସ୍ତଖତ କରିବାକୁ କହିବେ, ମୁଁ ଆଉ ତାହା କରିବି ନାହିଁ ବୋଲି ମୋ ଘରେ ‘ସେ’ ମୋତେ ଦୃଢ଼ଭାବରେ ତାଗିଦ୍ କରି ଦେଇଛନ୍ତି ।”

ଆଜି କେତେ ଭେଡ଼ଙ୍କ ରଡ଼ର ଅର୍ଥ ହେଉଛି—“ଆମ ବୋଳ-ଖାଞ୍ଜି ଦଳରେ ଠିକ୍ ହୋଇଥିଲା, ସଂଖ୍ୟାନ୍ୟୂନ ସମ୍ପ୍ରଦାୟ ଓ ହରିଜନଙ୍କ ପାଇଁ ସର୍ବଦା ଆଖିରୁ ଲୁହ ଗଡ଼ାଇବୁ । ମୁଁ ଦେଖିଲି ବୋଳଖାଞ୍ଜି ଦଳ ଅପେକ୍ଷା ଟିଙ୍ଗୁଡ଼ିଆ ଦଳ ସଂଖ୍ୟାନ୍ୟୂନ ସଂପ୍ରଦାୟ ଓ ହରିଜନଙ୍କ ପାଇଁ ସବୁବେଳେ ଲୁହ ଗଡ଼ାଉଛନ୍ତି । ଏତେ ଲୁହ ଗଡ଼ାଉଛନ୍ତି ଯେ ଫି’ଲୋକର ଲୁହ ଗୋଟାଏ ଡାଟିଆରୁ ଅଧିକ ହେବ ପଛେ କମ୍ ହେବନି । ବୋଳ-ଖାଞ୍ଜିଆଙ୍କ ଆଖିରୁ ଟୋପେ ହେଲେ ନିଗିଡ଼ୁନି, ସେଇ ଆଖିରେ ଥାଇ ଜୁଳୁଜୁଳୁ କରୁଛି; ତେଣୁ ମୁଁ ଟିଙ୍ଗୁଡ଼ିଆ ଦଳକୁ ଗଲି ।”

ଏମିତି ଦ'ଗୋଡ଼ିଆ ଭେଡ଼ଗୁଡ଼ାକ ଫି' ଥର ଆମ ଦଳରୁ ଭେଁ-ଭେଁ ରଡ଼ି ଛାଡ଼ି ଚିଙ୍ଗୁଡ଼ିଆ ଦଳ ଭିତରେ ପଶିଯାଉଛନ୍ତି । ସେମାନଙ୍କ ଅଇଁଠା ପତ୍ର ଚାଟି ଚାଟି ନିଜକୁ ବେଶ୍ ଭାଗ୍ୟବାନ୍ ମନେକରୁଛନ୍ତି । ଆମେ ସଂଖ୍ୟାନ୍ୟୂନ ପାଲଟିଯାଉଛୁ । ଥରେ ଆମେ କ୍ଷମତା ହାସଲ କରି-ପାରିଲେ, ଏ ଭେଡ଼ ବେପାରକୁ ଚଟାପଟ୍ ବନ୍ଦ କରି ଦିଅନ୍ତୁ । ଆଇନ୍ ଏମିତି ଖଞ୍ଜି ଦିଅନ୍ତୁ ଯେ, ଭେଡ଼ଙ୍କର ପଳେଇବାକୁ ଆଉ ଜୁ ରହନ୍ତାନି ।

ସେ ବର୍ଷ ସବୁ ଅଣଚିଙ୍ଗୁଡ଼ିଆଙ୍କ ଦଳ ବୋଳଖାଞ୍ଜି ଦଳ ଭିତରେ ସାମିଲ ହୋଇଗଲେ । କଥାରେ ଅଛି, ମଇଁଷି ଶିଙ୍ଗ ଫଟା, ସୁହିଲା ବେଳକୁ ଗୋଟା । ଘମାଘୋଟ ନିର୍ବାଚନ ଯୁଦ୍ଧରେ ଚିଙ୍ଗୁଡ଼ିଆ ଦଳର ରଥୀମାନେ ଟଳିପଡ଼ିଲେ । ଚିଙ୍ଗୁଡ଼ିଆ ଦଳଟା ଛତୁର୍ଛାକ ହୋଇ-ଗଲା । ଦ'ଦଳର ମୁଣ୍ଡିଆମାନଙ୍କ ପାଟିରୁ କେତେଦିନ କଥା ବାହାରିଲା ନାହିଁ । ୩୦ ବର୍ଷ ପାଖାପାଖି ନିରବଚ୍ଛିନ୍ନ କ୍ଷମତା ଓ ରାଜଲକ୍ଷ୍ମୀ ଭୋଗ କରିବା ପରେ ହଠାତ୍ କପର ମାଙ୍କଡ଼ଚାଟ୍ ମାରିଗଲେ, ସେ ବିଷୟରୁ ଭାବି ଚିଙ୍ଗୁଡ଼ିଆ ନେତାମାନେ ଭକୁଆ ହୋଇଗଲେ ଏବଂ ତାଙ୍କ ପାଟିରୁ କଥା ବାହାରିଲା ନାହିଁ । ବୋଳଖାଞ୍ଜିଆ ନେତାମାନେ ତ ପନ୍ତିଲେ ବିଶ୍ୱାସ କରି ପାରିଲେନି ଯେ ସେମାନେ ଏତେ ବେଶି ସଂଖ୍ୟାରେ ଜିତିଛନ୍ତି । ହଠାତ୍ ଦଶଲକ୍ଷ ଟଙ୍କାର ଲଟେରୀଟାଏ ଯେମିତି ପାଇଯାଇଛନ୍ତି । ଅବାକିଆ ଆନନ୍ଦରେ ସେମାନେ କାଠଭୂତ ପାଲଟିଗଲେ । ତାଙ୍କ ମୁହଁରୁ ବି କଥା ବାହାରିଲା ନାହିଁ । କିଛି ଦିନ ପରେ ଚିଙ୍ଗୁଡ଼ିଆଏ ଘରେ ଲୁଚି ବାହୁନିଲେ ଆଉ ବୋଳଖାଞ୍ଜିଆଏ ପଦାରେ ଗଜବାଜା ଉଡ଼ାଇ, ଫୁଲୁଟି ଉଆଁ ମାରି ଓ କୁହାଟ ଉପରେ କୁହାଟ ଛାଡ଼ି ଚଉଦିଗ କମ୍ପାଇ ଦେଲେ । ଦେଶର କେଉଁ ଜାଗାରେ ,ନିଟେଲ, ବିଶଲ୍ୟକରଣୀ ଓ ଆରୋଗ୍ୟକାରୀ ମଲମ ସବୁ ଲଗେଇବେ ତାହା ଗୁରିଆଡ଼େ କନ୍ଦି ବୁଲିଲେ ।

ଗାଦିରେ ବସିବାକୁ ଯାଉ ଯାଉ ଚୂଳରେ ମୁଣ୍ଡ ବାଜିଲା । ଯାହା ଟିକିଏ ଖଣ୍ଡୁଡ଼ି ହୋଇଯାଇଥିଲା, ସେଇଟା ଚଟାପଟ ଔଷଧ ଲଗାରେ ଭଲ ହୋଇଗଲା । ଗାଦିରେ ବସିସାରିବା ପରେ ମନେପଡ଼ିଲା ଭେଡ଼ ବେପାର ବନ୍ଦ କରିବା କଥା । ଦଳ ଭିତରେ ବହୁତ ଭେଡ଼ ଅଛନ୍ତି । ଘାସ ଦେଖାଇ କିଏ ଯେମିତି ଭେଡ଼ମାନଙ୍କୁ ପଛନ୍ତେ ନେଇ ନ ଯାଆନ୍ତି !

ଭେଡ଼ବେପାର ନିଷେଧ ଆଇନ୍‌ଟାକୁ ଚଟାପଟ୍ ପାଶ୍ କରାଇ ଦେବାକୁ ସଜବାଜ ହେଲେ । ସୁରୁଖା ନେତାଏ କହିଲେ ଥୟଧର, ଏତେ ତରତର ହୋଇ ଲାଭ ନାହିଁ । ଘାସ ଏବେ ଆମ ହାତରେ । ଚିଙ୍ଗୁଡ଼ିଆଙ୍କ ହାତରେ କଟୁ । କେତେକ ରାଜ୍ୟରେ ଚିଙ୍ଗୁଡ଼ିଆଏ ବେଶି ସଂଖ୍ୟାରେ ଅଛନ୍ତି । ତାଙ୍କ ଭେଡ଼ିମାନଙ୍କୁ ଆମେ ଆମଆଡ଼େ ଅଡ଼ାଇ ଆଣିପାରିବା ପରେ ଭେଡ଼ି ବେପାର ନିଷେଧ ଆଇନ୍ ଲାଗୁ କରିଦେବା । ସମସ୍ତେ ତାକ୍‌ତରଖ କଥାଟା ସମୁଝି ଯାଇ ଚୁପ୍ ରହିଲେ ଆଉ ଚିଙ୍ଗୁଡ଼ିଆ ଦଳର ମେଣ୍ଢା ଉପରେ ଚଢ଼ଉ ଆରମ୍ଭ କରିଦେଲେ । ମେଣ୍ଢା ଉଠିବା କଥା ନୁହେଁ, କ୍ଷଣରେ ହାତମାରି ସେ ମନେ ମନେ କହିଲା—"ଉତ୍ତମ ପୁଅ, କଂସାରି ଘର ପାରିକୁ କୁଳ ତାଉଁତାଉଁ କରୁଛ କ'ଣ ? ନିଜ ପଛଆଡ଼ ଆଗ ସମ୍ଭାଳ ।" ତୋଠାରୁ ସ୍ପେଶାଲ ଟ୍ରେନିଂ ପାଇ ପେଞ୍ଚୁଆ ଲୋକମାନେ ବୋଲଝାଞ୍ଜିଆ ମନ୍ତ୍ରୀମାନଙ୍କର ପାଖଲୋକ ବନିଗଲେ । ଗୋଟାଏ ବର୍ଷ ଯାଇଛି କି ନାହିଁ, ମନ୍ତ୍ରୀମାନେ ହୋ-ହୋ ଆରମ୍ଭ କରିଦେଲେ । ଜଣେ ଜଣକୁ କହିଲା—"ହେ, ତମ ପୁଅ କୋଟି କୋଟି ଟଙ୍କା ଖାଇଗଲା ।" ସେ ଉତ୍ତର କଲା, "ହଅମ, ତମ ଜୋଇଁ କଅଣ ସାଧୁ ପୁରୁଷ । ସେ ତ ଖାଇ ଖାଇ ଅଜଗଣ୍ଡିଆ ବନିଗଲାଣି ।" ଆଉ ଜଣେ ଆଉ ଜଣକୁ କହିଲା, "ହେ ତମ ପୁଅ ବହୁତ ଜନାକାରୀ କଲାଣି ।" କ୍ରମେ ସବୁ ମନ୍ତ୍ରୀଙ୍କ ନାଆଁରେ ଅଜଗବ କଥା ସବୁ ମୁଣ୍ଡ ଟେକିଲା ? ସେମାନଙ୍କ ବଡ଼ ମୁଣ୍ଡିଆ ଦ'ଜଣଙ୍କୁ ତଣ୍ଟିଆ ଲଗେଇ ଦେଲେ । ହାଉଁ ହାଉଁ ବେଶି ବଢ଼ିଯିବାରୁ, ଜଣକୁ ଭିତରେ ପୂରେଇ ଆଉ ଜଣକେ ପାଇଁ ଫାଟକ ବନ୍ଦ କରିଦେଲେ । ସେ ପଦାରେ ରକତ ଗୁଣ୍ଡଳ ଲୁହାଇବାରେ ଲାଗିଲା । ବୋଲକରାମାନେ ହିନରାତି କଠିନ ପରିଶ୍ରମ କରି ବୋଲଝାଞ୍ଜିଆଙ୍କୁ ଦୁଇଖଣ୍ଡ କରିଦେଲେ । ବଡ଼ ମେଣ୍ଢା ଦଳ ଆଉ ବଡ଼ ମେଣ୍ଢା, ଯାହାକୁ ତଣ୍ଟିଆ ଦେଇ ଫାଟକ ପାର କରାଇ ଦେଇଥିଲେ, ତା' ଦଳ ତଣ୍ଟିଆଖିଆ ମେଣ୍ଢା କ୍ଷମତା ହାତକୁ ନେଇ ବଡ଼ ମେଣ୍ଢାକୁ କେମିତି ଫାଟକ ପାର କରାଇ ଦେବ, ସେଇ ବାଟ ଖୋଜିବାରେ ଲାଗିଲେ । ଚିଙ୍ଗୁଡ଼ିଆ ମେଣ୍ଢା ଆଉ ତଣ୍ଟିଆଖିଆ ମେଣ୍ଢାଙ୍କ ଫୁସୁଲା ଫୁସୁଲାରେ ବଳେ ମନ୍ତ୍ରୀ ଓ ସରକାରୀ ସଭ୍ୟ ନିଜ ଦଳ ଛାଡ଼ି ନୂଆ ଦଳଟାଏ ଗଢ଼ିଲେ । ଚିଙ୍ଗୁଡ଼ିଆ ମେଣ୍ଢା ପୂରା ମଦତ୍ ଦେଇ କହିଲେ— "ଗଢ଼ ସରକାର, ମୋ ଦଳର ସମସ୍ତେ ତୁମ ପଛରେ ରହିବେ ।"

ବୋଳଝାଞ୍ଜି-ବଡ଼ ମେଣ୍ଢାର ଏତେବେଳେ ନିଦ ଭାଙ୍ଗିଲା । ମୁଣ୍ଡରେ ହାତ ଦେଇ ଭାବିଲା—"ସେଉଁଗୁଡ଼ାକୁ ଭେଡ଼ ରକ୍ଷକ ଓ ଭେଡ଼ ବେପାରୀ ଭାବିଥିଲି, ସେଗୁଡ଼ାକ ବି ଭେଡ଼ ପାଲଟିଲେ । ଆଗେ ସଭ୍ୟମାନେ ଭେଡ଼ ଆଚରଣ ଦେଖାଉଥିଲେ, ଏବେ ମନ୍ତ୍ରୀଗୁଡ଼ାକ ଭେଡ଼ ଆଚରଣ ଦେଖେଇଲେ । ଭେଡ଼ ବେପାର ନିଷେଧ ବିଲ୍‌ଟା ଆଗରୁ ପାଶ୍ କରି ଦେଇଥିଲେ, ଆଜି ଏପରି ଉଦ୍ଭଟବିକଳ ହେବାକୁ ପଡ଼ି ନଥାଆନ୍ତା ।

ତେଣେ ଟଙ୍ଗୁଡ଼ିଆ ଦଳର ସଭାରେ ତାଙ୍କ ମେଣ୍ଢା କୁଲୁରି ଉଠି କହିବାରେ ଲାଗିଥାଆନ୍ତି, "ଗିଧଡ଼୍, ବେକୁଫ୍‌ଗୁଡ଼ାକ ଗାଦିରେ ବସିଯାଇ କେତେ ଧମକ ଦେଖାଉଥିଲେ । ସେମାନଙ୍କର ପୁଣି ଏଡ଼େ ଆସ୍ପର୍ଦ୍ଧା, ମୋ ଦେହରେ ଟିପ ଲଗେଇ ଦେବେ । ବେହିଆ ଥୋବରିଗୁଡ଼ାଙ୍କ ସ୍ୱରୂପ ପଦାରେ ପକାଇ ଦେଇଛି । ଯିଏ କହୁଥିଲା ମୋତେ ବାଡ଼ି ଘାଆରେ ଛିବୁଳ୍ ମାରିବ, ସେ ଏବେ ଆସି ମୋ ଚପଲ ଚାଟୁଛି । ଯେଉଁମାନେ ମୋତେ ନିଶ୍ଚିହ୍ନ କରିଦେବେ ବୋଲି ପାଇକଗ୍ଧ ଭିଡ଼ିଥିଲେ, ସେମାନେ ଆସି ମୋ ପାଦ ମଞ୍ଜାଡୁଛନ୍ତି । ସେ ଛତରଖିଆଗୁଡ଼ାକ କ୍ଷମତା ପାଇଁ ଏତେ ତଳକୁ ଖସିଗଲେଣି ଯେ ସାରା ପୃଥିବୀର ରାଜମାନଙ୍କମାନେ ସେମାନଙ୍କ ଉପରକୁ ଛେପ ପକାଉଛନ୍ତି । ବୋଳଝାଞ୍ଜି ଆଙ୍କ ଗୋଟାଏ ଦଳକୁ ଗାଦିରେ ବସେଇ ଦେଇଛି; ଏବେ ଆର ଦଳକୁ ଧରି ଏମାନଙ୍କ ଟାଙ୍ଗରୁ ଘୋଷାଡ଼ି ନେଇ କଂସକଚଡ଼ା ଦେବି । ସରକାର ରଖେଇ ଦେବିନି । ଆଉ ଥରେ ନିର୍ବାଚନ ହେବାହିଁ ହେବ । ଘୋଡ଼ାମାନେ ଏ ନିଦା ବେହେଲ ଗୁଣମନ୍ତଗୁଡ଼ିଙ୍କୁ ଭଲ ଭାବରେ ଚିହ୍ନି ସାଇଛନ୍ତି । ନଗଦା ନଗଦ ନିର୍ବାଚନ ହେଲେ ଏଗୁଡ଼ାକ ହଇଜାରେ ଗଲାପରି ମୂଳପୋଛ ହୋଇଯିବେ । ନିର୍ବାଚନରେ ମୁଁ ପୁଣି ଆସିବି । ଗୋଟି ଗୋଟିକରି ସେମାନଙ୍କ କାନ ଧରି ପଚାରିବି— "କି ବାପଧନ, ରାଜନୀତି କେବେ କରିଥିଲ ? ଭେଡ଼ିବେପାର ନିଷେଧ ବିଲ୍ ନ ଆଣି ଅପେକ୍ଷା କରୁଥିଲ କାହିଁକି ? ଆସ ସମସ୍ତେ ମୋ ଗୋଡ଼ତଳେ ବସି ରାଜନୀତିର 'ଅ-ଆ' ଦଶବର୍ଷଯାଏ ପଢ଼ । ତା' ପରେ ନିର୍ବାଚନରେ ଠିଆହେବ ।"

●

## ॥ ଭୋଟ୍ ଗ୍ରୀଷ ॥

ଅବୋଲକରା ରାଜ୍ୟରେ ଭୋଟ୍ ଫଳାଫଳ ବାହାରି ପଡ଼ିବା ପରେ, ସବାଖିଆ ଦଳ ଆଉ ପଦାରେ ମୁହଁ ଦେଖାଇ ପାରିଲେ ନାହିଁ । ହାଲକ ଖାଇ କିଏ କେଉଁ ଗାତରେ ପଶି ଲୁଚିବ, ତାହା ଠିକ୍ କରି ପାରିଲେ ନାହିଁ । ସେମାନଙ୍କ ମୁହଁରୁ କଥା ବାହାରିଲା ନାହିଁ । ପାଟି ଆଫା ଆଫା ହୋଇଗଲା । ଗତ ତିରିଶ ବର୍ଷ ଧରି କେତେ ବେଧଡ଼କରେ ଆଖି କିଆରରେ ପଶି ଜେଡ଼େ ଆରାମରେ ଆଖି ବୁଜୁଥିଲେ । 'ହେ' ବୋଲି କହିବାକୁ ପୁଅଟାଏ ନଥିଲା । କୁଆଡ଼ୁ ଆସିଲା ଏ ପଞ୍ଚୁଆତି ଦଳ, ସବୁ ସାରିଦେଲା । କୋଉଦିନ ଏଇଟା ଜନ୍ମ ହେଲା, କୋଉଦିନ ହାତଗୋଡ଼ ଟାଣି କଲା କେହି ଜାଣିପାରିଲେ ନାହିଁ । ହଠାତ୍ 'ହୁଁମ୍' କରି ଗର୍ଜନ କରି ଗୋଟାଏ ଚଣ୍ଡିଆରେ ସବାଖିଆଙ୍କୁ ପୋତି ଦେଲା । ସଚିବମାନଙ୍କର କେତେ ସାର୍ ସାର୍, ଅନୁସରଣିଆଙ୍କର କେତେ ଆଜ୍ଞା ଆଜ୍ଞା, ଅନୁଷ୍ଠାନମାନଙ୍କଠାରୁ କେତେ ଫୁଲ ମାଳ, କଣ୍ଟ୍ରାକ୍ଟର ଓ ବ୍ୟବସାୟୀମାନଙ୍କଠାରୁ କେତେ ଦର୍ଶନୀୟୁକ୍ତ ପୂଜା, ମିଲ୍ ଓ ଖଣି ମାଲିକମାନଙ୍କଠାରୁ କେତେ ଭେଟି ଗୋଟାଏ ଦିନରେ 'ହୋ-ହା'ରେ ସବୁ କୁଆଡ଼େ ଉଭେଇଗଲା । ଆଜିକୁ ଏ ସବୁ ପଞ୍ଚୁଆତିଙ୍କ ଆଡ଼େ ମୁହାଁଇବ, ଆଉ ବାଲୁବାଲୁ କରି ଚାହିଁଥିବେ ସବାଖିଆଏ—ଓଃ ହୋ ହୋ, ଆଉ ସହି ହବନି, ଛାତି ଫାଟିଯିବ ।

ରାଜ୍ୟପାଳ ନରୋତ୍ତମ ଦାସ ଯେଉଁଦିନ ପଞ୍ଚୁଆତିଆଙ୍କୁ ସରକାର ଗଢ଼ିବାକୁ ଡାକିଲେ, ସେଦିନଠା ସବାଖିଆଙ୍କୁ ସନ୍ନିପାତ ହୋଟିଗଲାପରି ଲାଗିଲା । ସେମାନଙ୍କ ଭିତରୁ ଯେଉଁ କେତୋଟି ହଇଜା, ହାଡ଼ଫୁଟିରୁ ବର୍ତ୍ତି ଶପଥ ଉତ୍ସବକୁ ଯାଇଥିଲେ ସେମାନଙ୍କ ପିଣ୍ଡରୁ ପ୍ରାଣ ବାହାରି ଗଲାପରି ଲାଗିଲା । ଉତ୍ସବ ଶେଷରେ କେମିତି ପଳେଇ ଆସି ଗାତରେ ପଶିବେ,

ସେଥିପାଇଁ ବାହାର ସମ୍ବଳ ନାହିଁ । ସେମାନଙ୍କର ସୌଭାଗ୍ୟ ସେନ୍ଦ୍ରଢନ ଶ୍ୟାନସନ୍ଧ୍ୟା ପଡ଼ିଆରେ ଉପର କଣ୍ଠ ତଳ କଣ୍ଠ ଢଆହୋଇ ପୋଛା ହୋଇଗଲା ।

ଭାରସାମ୍ୟ ଜିନିଷଟା ବିଶ୍ୱବ୍ରହ୍ମାଣ୍ଡରେ ଏକ ବଡ଼ ଜିନିଷ । ସବା-ଖିଆଏ ପେଣ୍ଡକ ପେଣ୍ଡକ ତଳକୁ ଗଳିଗଲେ, ପଞ୍ଝୁଆଏ ପେଣ୍ଡକ ପେଣ୍ଡକ ଉପରକୁ ଉଠିଗଲେ । ଶପଥ ନିଆଗଲାବେଳେ ସବାଖିଆଙ୍କ ଗଣ୍ଡରୁ ସବୁ ରକ୍ତ ଶୁଖିଗଲା ଆଉ ପଞ୍ଝୁଆଙ୍କ ଗଣ୍ଡରେ କୁଆଡ଼ୁ କୁଆଡ଼ୁ ରକ୍ତ ଆସି ଠେଲାପେଲି ପଶିବାରୁ ତାହା ଫୁଲିଗଲା । ସେମାନଙ୍କ ମୁହଁ ସେତେମଟା ପଡ଼ିଗଲା ତ ଏମାନଙ୍କର ମୁହଁ ସଜ ଗୋଲାପ ପରି ଫୁଟିଉଠିଲା । ସେମାନଙ୍କର ତଣ୍ଟି ଶୁଖିଗଲା ତ ଏମାନଙ୍କର ତଣ୍ଟି ଓଦା ହୋଇଗଲା । ଭାରସାମ୍ୟଟା ଏହିପରି ଭାବରେ କାର୍ଯ୍ୟକାରୀ ହୋଇଗଲା ।

ପଞ୍ଝୁଆ ଦଳର ନେତା ଜନାର୍ଦ୍ଦନ ଦାସଙ୍କୁ ରାଜ୍ୟପାଳ ଶ୍ରୀ ନରୋତ୍ତମ ଦାସ ମନ୍ତ୍ରିମଣ୍ଡଳ ଗଢ଼ିବାକୁ ଡାକିଲେ । ସେ ତ ଆଗରୁ ତାଲିକା କରି ରଖିଥିଲେ । ତାହା ନେଇ ସେ ଧାଇଁଗଲେ । ରାଜ୍ୟପାଳ ଜଣ ଜଣ କରି ଶପଥ ପାଠ କରାଇଦେଲେ । ରାଜ୍ୟପାଳ ପୂର୍ବ କଥା ସବୁ ଭାବୁଥିଲେ, କି ଆଉକୁ କଅଣ ହେବ ସେ କଥା ଭାବୁଥିଲେ, ତାହା ତାଙ୍କୁ ହିଁ ଜଣା । ଜନାର୍ଦ୍ଦନ ଦାସ ଗାଦିନସୀନ ହେଲାବେଳେ ସବାଖିଆ ଦଳର ନେତାଙ୍କ ଅନ୍ତ ଦୁହିଁ ହୋଇଗଲା । ଶପଥ ପାଠର କଥାଗୁଡ଼ାକ ତାଙ୍କ କାନରେ ବିଲ୍‌କୁଲ୍‌ ପଶୁ ନଥାଏ । ସେ କେବଳ ଭାବି ଲାଗିଥାନ୍ତି, ବିଧାତା କ୍ୟା ନଭାରେ କାନ, ଆବେ ଦେନେଇ ଯାବେ ଦେନେଇ ମନ୍ତ୍ରୀ ଜନାର୍ଦ୍ଦନ । ତିରିଶି ବର୍ଷ କାଳ ଆମେ ସେ ଗାଦିକୁ ଆମ ଭାରିଜାଙ୍କଠାରୁ ଅଧିକ କରି ରଖିଥିଲୁ । ଏମିତି ପୁଣି ଦୁର୍ଭାଗ୍ୟ ହୋଟେ ! କାଲିକା ଲଣ୍ଡି ଦେନେଇ ପୁଣି ଆମରି ଆଖି ଆଗରେ ଛାତି ଫୁଲେଇ ଗାଦିରେ ବସିବ । ଆରେ ଛାତି ଫାଟିଯା । ହେ ବସୁଧା ତୁ ବି ଫାଟିଯା । ଆମେସବୁ—ନା-ନା—ସେମାନେ ସମସ୍ତେ ସେଥିରେ ଫାଟବାଟେ ତା ଭିତରେ ପଶିଯାଆନ୍ତୁ । ଜିଅନ୍ତା ସମାଧି ପାଆନ୍ତୁ ।

ଶପଥ ପାଠ କାମ ସରିବା ପରେ ମୁଖ୍ୟମନ୍ତ୍ରୀ ଜନାର୍ଦ୍ଦନ ଦାସ ଓରଫ ଦେନେଇ, ସବାଖିଆ ଦଳର ନେତାଙ୍କ ପାଖକୁ ଆସି ତାଙ୍କୁ ପ୍ରଣାମ

କଲେ ଓ ସଦ୍ଭୋଗ କାମନା କଲେ । ହୃଦୟ ଭିତରୁ ବାହାରୁଥିବା ବିଷର ସୁଅରେ ବନ୍ଧ ପକାଇ ଦେଇ ଓ ଜୋର୍‌ଜୁଲମ ସହ ଅପମିଶ୍ରିତ ହସ ପ୍ରକାଶ କରି କହିଲେ—"ଏଥରକ ଆପଣଙ୍କ ଉପରେ ଦେଶସେବାର ଗୁରୁଭାର ଲଦା ହେଲା । ଏଉଁକୁ ଦେଶ ଓ ଦଶର ସେବା କର । ଆମେ ଥକି ପଡ଼ିଥିଲୁ । ଆମକୁ ଟିକିଏ ଫୁରୁସତ ମିଳିଲା ।" ଏତକ କହି ପାଟି ବନ୍ଦ କରିବା ମାତ୍ରେ ବିଷ ସୁଅର ବନ୍ଧ ପୁଣି ଖୋଲିଗଲା—ହୁଁଃ, ନିଜର ଐଶ୍ୱର୍ଯ୍ୟ ଦେଖାଇ ମୋତେ କେମିତି ଝଲ୍‌ହଳଚକଳ କରିବ, ସେଥିଲାଗି ଭଣ୍ଡ ମୋ ପାଖକୁ ଦଉଡ଼ି ଆସିଥିଲା । ରହ ରହ, ତୋତେ ସହର ଘାଟରେ ପାଣି ନ ପିଆଇଛି ତେବେ ମୋ ନାଆଁରେ କୁକୁରଟାଏ ପାଳିବୁ । ଏଣେ ଜନାର୍ଦ୍ଦନ ଦାସେ ସଦ୍ଭୋଗ କାମନା କରି ଫେରିବାବେଳେ ଭାବି ଲାଗିଲେ—କୁଚକ୍ରୀ, ଶଠ; ଗୁରୁଭାର ଭରଣ ବର୍ଷଯାଏ ବୋହିଥିଲା । ମୁଣ୍ଡରେ ଭରଣିଟା ବଣ୍ଡି ହୋଇଯାଇଥିବ । ବଦମାସ୍ ଉଦ୍ଧାଥ । ତୋ ପାଇଁ ମୁଁ ଯଦି ଢ଼'ଗଣ୍ଡା କମିଶନ ନ ବସେଇଛି, ତେବେ ମୋ ନାଆଁରେ ଗୋଟିଏ କୁକୁର ପାଳିବୁ ।

ଶପଥ ପାଠ ଉତ୍ସବ ସରିଲା । ଗଣତନ୍ତ୍ରର ଦୁଇଜଣ ମୂର୍ତ୍ତିମନ୍ତ ଅବତାର ନିଜ ନିଜ ଡେରାକୁ ଚାଲିଗଲେ । ସବାଗିଆ ନେତା ନିଜ ଡେରାରେ କହିଲେ—"ଦେଶ ପକ୍ଷରେ ଏକ ଘୋର ବିପଦ ଆସିଗଲା । ଆମେ କେଡ଼େ ସୁରୁଖୁରୁରେ ଦେଶଟାକୁ ଆଗେଇ ନେଇ ଯାଉଥିଲୁ । ଲୋକଙ୍କୁ ଏଡ଼େ ଆରାମରେ ରଖିଥିଲୁ ଯେ କେହି ହେଲେ ଉଁ କି ଚୁଁ କରୁ ନଥିଲେ । ଖବରକାଗଜରେ ଆମ ବିରୁଦ୍ଧରେ କିଛି ବି ବାହାରୁ ନଥିଲା । ବେତାରରେ ଓ ପତ୍ରପତ୍ରିକାରେ ଆମର ଜୟ ଜୟକାର ବାହାରୁଥିଲା । ବଦମାସିଆ, ନିମକହାରାମ ଲୋକଗୁଡ଼ାକ ପରକଥାରେ ପଡ଼ି ଆମକୁ ତଡ଼ି ଦେଲେ । ପଞ୍ଚୁଆଣ୍ଡିଆଏ ଯାହା କେଞ୍ଚ ପକାଇବେ ତାହା ଆମକୁ ବେଶ୍ ମାଲୁମ୍ ଅଛି । ପାଞ୍ଚି ଜମଇ ଜମଉ ପାଞ୍ଚବର୍ଷ ଗଡ଼ିଯିବ । କାହାର କଥା କାହାର ସଙ୍ଗେ ମେଳ ଖାଇବନି । ଲୋକଙ୍କ ହଇରାଣବେଳେ ଆମେ ତଳେ ତଳେ ତାତିଲା ପାଣି ଟିକେ ଢାଳେଇ ଦେଉଥିବା । ପାଞ୍ଚଟା ବର୍ଷ ରହିଛନ୍ତି କି ନାହିଁ ଦେଖ ।"

ସବାଗିଆ ଡେରା ଭିତରେ, ପଞ୍ଚୁଆଣ୍ଡି ଦଳକୁ ଡେଇଁ ପଡ଼ିବାକୁ ଗୋଡ଼ ଟେକି ରହିଥିବା କେତେଜଣ ଏ ଭାଷଣର ଅବିକଳ ନକଲ

ପଞ୍ଚୁଆଣ୍ଡଙ୍କ ପାଖରେ ପେଶ୍ କରିଦେଲେ । ମୁଖ୍ୟମନ୍ତ୍ରୀ ସବାଖିଆଙ୍କୁ ଧିକ୍କାର କରି ନିଜ ଜେବ ଭିତରେ କହିଲେ—"ବେହିଆଙ୍କ ଅଧୀନରେ ବଥ ହେଲେ କହିମ୍ବ ଛୁଇ ହେଲି । କାହିଁକି, ତମେ ତ ଖବରକାଗଜ ପତ୍ରପତ୍ରିକା ମୁହଁରେ ପାନବଣ୍ଡା ଦେଲ । କିଏ ଯଦି ଜିଁ ଆଁ କଲା, ତାକୁ ଜେଲ୍‌ରେ ପୂରେଇଲ । ତୁମକୁ ସ୍ତୁତି କରିବାକୁ ଭଡ଼ାଟିଆ ଲୋକ ନିଯୁକ୍ତ କଲ । ବେଚାରି ଓ ସରକାରୀ ସଂସ୍ଥାମାନଙ୍କୁ ତୁମର ଗୁଣ କୀର୍ତ୍ତନ କରିବା କାମରେ ଲଗେଇଲ । ବ୍ରିଟିଶ୍ ସରକାର ଘୋର ଯୁଦ୍ଧବେଳେ ଯାହା କରିବାକୁ ସାହସ କରି ନଥିଲା, ତମେ ତ ଶାନ୍ତିବେଳେ ତାର ଡବଲ କାମ କରି ପକେଇଲ । ଆଉ କଅଣ ବାକି ରଖିଲ ଯେ ଏ ମୁହଁ ଭୁରୁଡ଼ି ଗାଲୁପେଲାରେ ଲାଗିଯାଇଛୁ । ରହିଥାଅ ରହିଥାଅ । କମିଶନ ବସେଇ ତମ ଇଜ୍ଜତ ମହତ ପଦାରେ ପକେଇ ଦେଉଛୁ ।"

ତେଣେ ଲୋକେ ମନ୍ତ୍ରୀମାନଙ୍କୁ ଦେଖିବାକୁ ଓ ସେମାନଙ୍କର ଶ୍ରୀମୁଖରୁ ପଦେ ଅଧେ କଥାମୃତ ଶୁଣିବା ପାଇଁ ଅଥୟ ହୋଇ ପାଟିତୁଣ୍ଡ କଲେ । ମନ୍ତ୍ରୀମାନେ ଖିଦ୍‌ଖାଦ୍ ହୋଇ ଲୋକଙ୍କ ପାଖରେ ଯାଇ ହାଜର ହୋଇଗଲେ । ଲୋକେ ଆନନ୍ଦରେ ଅଥୟ ହୋଇ ଆଉ କେଉଁ ଗାତରେ ଲୁଚିଥିବା ସବାଖିଆଙ୍କୁ ଗାଳିଗୁଲଜ କରି ପକେଇ ପାଟି ଫଟେଇ ଦେଲେ । ମୁଖ୍ୟମନ୍ତ୍ରୀ ହାତ ହଲେଇ ସମସ୍ତଙ୍କୁ ଶାନ୍ତ କରି ଦେଲେ ଆଉ ସମସ୍ତଙ୍କୁ ଧନ୍ୟବାଦ ଦେଇ ସଂକ୍ଷିପ୍ତ ଭାଷଣରେ କହିଲେ ଯେ, "ସବାଖିଆ ଦଳ ଯେପରି ଭାବରେ ଲୋକଙ୍କୁ ହଇରାଣ କରି ଦେଇଛନ୍ତି, ସେମାନେ ପ୍ରଥମେ ତା'ର ପ୍ରତିକାର କରିବେ । ଜନସାଧାରଣଙ୍କର ସ୍ୱାଧୀନତା ଫେରାଇ ଦେବେ । କଳାପୋତିଆଙ୍କୁ ମୂଳପୋଛ କରି ଦେବେ । ଦରଦାମ କମେଇ ଦେବେ । ଲୋକପୀଡ଼କ ଆଇନ୍ ପିଣ୍ଡରେ ନାଚ ମାରି ଚଢ଼ି ଦେବେ । ମୋଟ ଉପରେ ଜନସାଧାରଣଙ୍କୁ ସାଙ୍ଗେ ସାଙ୍ଗେ ରାବଣ ରାଜ୍ୟରୁ ଘୋଷାଡ଼ି ଆଣି, ରାମରାଜ୍ୟରେ ପୂରେଇ ଦେବେ । ଏତିକି ଆଗ କରିସାରି ଦମ୍ ନେବେ । ତା'ପରେ ଆଉ ଯାହା ଲୋକେ ଆନନ୍ଦରେ ଫୁଙ୍କି ଝିଙ୍କଆଁ ମାରି ଗୋଠ ଫେରନ୍ତା ଗୋରୁଙ୍କ ପରି ଘରକୁ ଫେରିଲେ । ପଡ଼ିଆଟା ଶୂନ୍‌ଶାନ୍ ହୋଇଗଲା ।

ଲୋକମଙ୍ଗଳ କାମ କପରି ସୁରୁ ହେବ ଆଉ କେଉଁ କାମଟାକୁ ଆଗ ହାତକୁ ନେବାକୁ ହେବ, ସେଇ ବିଷୟ ଠିକ୍ କରିବାକୁ ସରକାରୀ ଦଳଆଙ୍କ ଜବାଟଙ୍କଳା ବୈଠକ ବସିଲା । ସ୍ଥିର ହେଲା ଯେ, ଲୋକ-ମାନଙ୍କର ମଙ୍ଗଳ କରିବା ପୂର୍ବରୁ ଲୋକଙ୍କଠୁ ସବାଖିଆ ଦଳଙ୍କୁ ପ୍ରଥମେ ନିପାତ କରିଦେବାକୁ ହେବ । ତା' ନହେଲେ ସେମାନେ କିଛି କରେଇ ଦେବେନି । ଉଲଟି ଲୋକଙ୍କୁ ଆମ ବିରୁଦ୍ଧରେ ଟିହାଇବେ । ଦଳପତି ଚୁପ୍ ଚୁପ୍ କହିଲେ—"ବୁଝିଲ, ରାମଚନ୍ଦ୍ର ରାବଣଠାରୁ ରାଜନୀତି ଶିଖିଥିଲେ । ଆମକୁ ବି ସବାଖିଆଙ୍କଠାରୁ କିଛି କିଛି ମାରପେଞ୍ଚ ରୀତି ଶିଖିବାକୁ ପଡ଼ିବ । ଆଜିଠାରୁ ଆମେ ପୁଣି ପାଞ୍ଚ ବର୍ଷ ପରେ କିପରି ଭୋଟ୍ ସାଉଁଟିବା, ତାହାରି ଚେଷ୍ଟାରେ ରହିବା । ଲୋକହିତକର କାମ ପଛକୁ ଥାଉ । ଏଇଆଡ଼ୁ ଲୋକଙ୍କ ମଙ୍ଗଳ କରିଦେଲେ, ଶେଷ ଆଡ଼କୁ ସେମାନଙ୍କର ଆଉ ମନେ ରହିବ ନାହିଁ । ସେତେବେଳକୁ ସବୁ ମଙ୍ଗଳତକ ଝହଝଷା ହୋଇଯାଇଥିବ । ସେ ସବୁ କାମ ସ୍ବର ବର୍ଷ ଛଅ ମାସ ପରେ ହେବ । ଏବେ ଆମର ପହିଲା କାମ ହେବ ସବାଖିଆଙ୍କୁ ଲୋକଙ୍କ ଆଗରେ ଖଣ୍ଡ, ଦଗାବାଜ, ଓଟକେଇତ ପ୍ରମାଣ କରେଇ ସେମାନଙ୍କୁ ମାଟିରେ ମିଶେଇ ଦେବା । ଆଉ ଥିବେ, ନା ଭୋଟ୍‌ବେଳେ ଆମ ସାଙ୍ଗରେ ଲଢ଼ିବେ । ଏଣୁ ବସାଅ କମିଶନ ।"

ପଞ୍ଚୁଆତିଆଙ୍କ ଉତ୍ସାହ ଉଦ୍ଦୀପନା ଆଉ ଦେଖେ କିଏ । ଦେଶ-ତମାମ୍ ତ ପାଳଗଦା ହୋଇଥିଲା । ସେମାନେ ପାଇକଗୁ ଛଡ଼ି ତା' ଉପରେ ଲୁଣପାଣି ଛିଞ୍ଚି ଦେଇଗଲେ । ଝୁଣ୍ଟି ଝୁଣ୍ଟି ଛତୁ ଝରଆଡ଼େ ଫୁଟି ଉଠିଲା—ରାମା କମିଶନ ଛତୁ, ଦାମା କମିଶନ ଛତୁ, ଗୋପାଳିଆ କମିଶନ ଛତୁ ଆଉ ହରେକ୍ କିସମ ଛତୁ । ଏସବୁ ଛତୁର ଧାରାବାହିକ ବିବରଣୀ ଖବରକାଗଜ, ରେଡ଼ିଓରେ ବିଜ୍ଞାପିତ ହେଲା । ଜଣେ ପଞ୍ଚୁଆତିଆ ମନ୍ତ୍ରୀ ତରତର ହୋଇ ସବାଖିଆଙ୍କ ମେଣ୍ଢାମାନଙ୍କୁ ଜେଲ୍‌ରେ ଠୁଙ୍କି ଦେବାକୁ ବାହାରିଲେ । ପଞ୍ଚୁଆତିଆ ଦଳପତି ଜିଭ କାମୁଡ଼ି ପକାଇ କହିଲେ—"ଥୟ ଧର, ଏତେ ଦୂର ଆଗେଇ ଯାଅନା । ଗଲା ତିରିଶି ବରଷ ଧରି ଢହରେ ଛୁମ ଯେତେ, ସେତେ କମିଶନ ବସି ସାରିଲଣି । କେଉଁଠି କେହି ଜେଲ୍ ଗିବାକଥା ଶୁଣିଛ ? ପ୍ରକୃତରେ କମିଶନ ବସେଇବା

ଏକ ଲୋକ ଧପେଇ କାମ । ଲୋକଙ୍କ ଆଗରେ ବିପକ୍ଷବାଲାଙ୍କୁ କେବଳ ନିନ୍ଦା କରେଇ ଗୁଡ଼ିଦେବ । ଆଜ ଆମେ ତାଙ୍କୁ ଜେଲ୍‌ରେ ପୂରେଇ ଦେଲେ, କାଲି ସେମାନେ କ୍ଷମତାକୁ ଆସିଲେ ଆମକୁ ଜେଲ୍‌ରେ ପୂରେଇ ଦେବେ । ଯେତେହେଲେ ଆମେ ସମସ୍ତେ ତ ଏକା ଲାଉର ମଞ୍ଜି । ଲୋକଙ୍କୁ ବୋକା ବନେଇ ଆମେ ଭୋଟ୍ ଗୁଷ କରେସିବା । ଜନତା ବଲି ପଡ଼ୁଛି । ସେମାନେ ଆଜଯାଏ ଭୋଟ୍ ଗୁଷ କରି ଆନନ୍ଦରେ ରହିଲେ । ଆଉକୁ ବଲି ଆମ ହାତରେ ପଡ଼ିଲା, ଆମେ ଥୋଡ଼ାଏ ଦିନ ଭୋଟ୍ ଗୁଷ କରି ଅମଳ କରିବା । ଆମେ ତାଙ୍କୁ, ସେମାନେ ଆମକୁ ଜେଲ୍ ଦିଆଦେଇ ହେଲେ, ଉଭୟେ ମୂଳପୋଛ ହେବା । ମଜା ମାରିବେ ନାଲି ଝଣ୍ଡିଆଏ । ସେମାନେ ତ ପରିକିଆରିରୁ ଧାନ କାଟି ନେଇଯିବାରେ ଧୁରନ୍ଧର । ଥରେ ଆମ କିଆରିରେ ପଶିଗଲେ ଆଉ ତାଙ୍କୁ କେହି ହୁରୁଡ଼େଇ ପାରିବେ ନାହିଁ । ଏଣୁ ଜେଲ୍ ଫେଲ୍‌ର ନାଆଁ ଧରନା । ଉତ୍ପାଙ୍କୁ ଥିବ କିନ୍ତୁ ମାରିବନି ।"

କମିଶନ କମିଶନ ଉଡ଼ିଦେଇ ରେଡ଼ିଓ ଥକି ପଡ଼ିଲା । ଲୋକଙ୍କ କାନ ତାବ୍ଦା ହୋଇଗଲା । ଖବରକାଗଜବାଲାଙ୍କୁ ଅଇ ଦେଖାଇଲା । ଖୋଦ୍ କମିଶନବାଲାଙ୍କ ହାତ କାଗଜ ଘର୍ଷି ଘର୍ଷି କେମ୍ପା ହୋଇଗଲା । ଏଆଡ଼୍ ସୁର ଶବଦ ପଡ଼ି ଆସିଲାରୁ, ଲୋକେ ଚିଲାଇବା ଆରମ୍ଭ କରିଦେଲେ—ଦରଦାମ୍ କମାଅ, ଦୁର୍ନୀତି ରୋକ, ଅପମିଶ୍ରଣକୁ ଛଡ଼, ବିଶୃଙ୍ଖଳାକୁ ହଟାଅ ଇତ୍ୟାଦି ଇତ୍ୟାଦି । ବେଳ ଜଣ୍ଡି ସବାଖିଆଏ ବି ଲୋକଙ୍କ ଭିତରେ ପଶି ପଞ୍ଚୁଆଙ୍କୁ ଗାଳିଗୁଲଜ କଲେ । କେତେ ମନ୍ତ୍ରୀ ହାଉଳି ଖାଇ ଦରଦାମ୍ ଖସେଇବାକୁ କମର କଷିଲେ । ଅନ୍ୟମାନେ ତା'ର ବିରୋଧ କରି କହିଲେ, "ଏ ସବୁରେ ଇଅଡ଼ୁ ମାଡିଲେ, ନିଜ ହାତରେ ନିଜ ଗୋଡ଼ି କାଟିଲାପରି ହେବ । ଦରଦାମ୍ ଖସେଇ ଦେଲେ, ଭୋଟ୍‌ବେଳେ ବ୍ୟବସାୟୀମାନେ କୁଆଡ଼ୁ ଟଙ୍କା ଆଣି ଆମକୁ ଦେବେ ? ଠିକ୍ ଭୋଟ୍ ପୂର୍ବରୁ ଦରଦାମ୍ ଖସେଇବା । ଶୋଷରେ ଲୋକ ମଲାବେଳେ ତାକୁ ଯଦି ମୁନ୍ଦାଏ ପାଣି ଦେବା, ତେବେ ତା'ର ଆନନ୍ଦ ସବୁଠୁଁ ବେଶି ହେବ; ଆଉ ସେ ବି ତାହା ମନେରଖିବ, ଦେଲାବାଲାର କଥା ମାନିବ ।

ଘୋଟ୍ ଗ୍ରହର ଏହା ଏକ ବଡ଼ିଆ ପାଗଯୋଗ । ଲୋକଙ୍କ ନଜରକୁ ଅନ୍ୟ-ଆଡ଼େ ଟାଣିନେବାକୁ ହେବ ।”

ମନ୍ତ୍ରୀମାନେ, ଦରଦାମ୍‌କୁ ନ ଛୁଇଁ ଅନ୍ୟଆଡ଼େ ମୁହଁ ବୁଲେଇଲେ । ଲୋକେ ବି ପାଟି କରୁଥିଲେ—ଦୁର୍ନୀତି, ଦୁର୍ନୀତି । ମନ୍ତ୍ରୀମାନେ ତା’ର ଉପରକୁ କୁଦପଡ଼ ତା’ ତଣ୍ଟି ଚିପିଦେବାକୁ ସଜବାଜ ହେଲେ । ଦଳପତି ଏହାର ସୂଚକ ପାଇବାମାତେ ରଡ଼ି ଛାଡ଼ିଲେ—“ହାଁ-ହାଁ—ଏ କଅଣ କରୁଛ, ତମେ ସବୁ ଅପଦାର୍ଥଗୁଡ଼ାକ କାହିଁକି ମନ୍ତ୍ରୀ ହେଲ ? ମୁଣ୍ଡରେ ଟିକିଏ ହେଲେ ଦମ୍ଭ ନାହିଁ । ଦୁର୍ନୀତି ହେଲା ଘୋଟ୍ ଗ୍ରହର ସବୁଜ ଖତ । ଏ ଖତ ଲଗେଇବାର ଗୋଟାଏ ବାଗ ଅଛି । ଧାନ ଗ୍ରହ ଦେଖିଛ ? କିଆରରେ ଆଗ ଧନଚ୍ଛ ବୁଣି ବଢ଼ାନ୍ତି । ଧନଚ୍ଛ ବଢ଼ି ପାକଳେଇ ଆସିଲେ, ତାକୁ ହଳ କରି ମାଟିରେ ମିଶେଇ ଦିଅନ୍ତି । ତା’ପରେ ଧାନ ରୁଅନ୍ତି । ଫଳରେ ଧାନ ପ୍ରଚୁର ଫଳେ । ଆମେ ସେମିତି ଦୁର୍ନୀତିକୁ କିଆରିରେ ବଢ଼େଇବା । ଘୋଟ୍ ବେଳକୁ ଦୁର୍ନୀତିକୁ ଚଷି ଦେବା । ତା’ପରେ କିଆରିରେ ଗୋଟାଏ ଘୋଟ୍ ମଞ୍ଜି ପୋତିଲେ ଗୌଣିଏ ଘୋଟ୍ ଅମଳ ହେବ । ଲୋକେ ଆଶ୍ୱସ୍ତ ହୋଇ ଖାଲି ଗୀତା ଶ୍ଳୋକ ବୋଲିବାରେ ଲାଗିଯିବେ—“ଯଦା ଯଦାହି ଧର୍ମସ୍ୟ ଗ୍ଳାନିର୍ଭବତି ଭାରତ, ଅଭ୍ୟୁତ୍ଥାନ-ମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହଂ ।” ଠିକଣା ବେଳରେ ଦୁର୍ନୀତିଟାର ପ୍ରତିରୋଧ କରିଦେଲେ ଲୋକେ ଆମକୁ ଭଗବାନଙ୍କ ଅବତାର ବୋଲି ବିଶ୍ୱାସିବେ । ତେଣିକି କେତେ ଘୋଟ୍ ଦାଇବ ଦାଅ ।”

ମନ୍ତ୍ରୀମାନଙ୍କ ମନକୁ କଥାଟା ପାଇଗଲା । ଏଥିପାଇଁ ଶିକ୍ଷା କିଆରିକୁ ସେମାନେ ବେଶ୍ ପସନ୍ଦ କଲେ । ଏହା ଉପରେ ବୁଦ୍ଧିଜୀବୀଙ୍କର ବେଶ୍ ଦୃଷ୍ଟି ଥାଏ । ବୁଦ୍ଧିଜୀବୀଙ୍କ କଥା ଲୋକେ ଆଗ୍ରହରେ ମାନିବେ । ଏଠାରେ ଆଖିବୁଜା ଦୁର୍ନୀତି ବୁଣା ଚାଲିଲା । ଶିକ୍ଷାବିଭାଗ, ବିଶ୍ୱବିଦ୍ୟାଳୟ, ମାଧ୍ୟମିକ ବୋର୍ଡ଼ରେ ଦୁର୍ନୀତି ଗଛ ସବୁ ଏତେ ଗହଳିଆ ହୋଇ ବଢ଼ିଲେ ଯେ, ଜ୍ଞାନ ମଞ୍ଜି ପାଇଁ ସୂଚ୍ୟଗ୍ର ପରିମିତ ଥାନ ରହିଲା ନାହିଁ । ସମବାୟ, ପରିବହନ ଆଦି କିଆରିରେ ବି ଗହଳିଆ ଦୁର୍ନୀତି ବଢ଼ିଲାଗିଲା ।

ଚକ ଚିଲିକୁ ଅଖ ଚିଲା । ତହିଁରେ ବଳଦ ଦି’ଟା ହଡ଼ା ଆଜି ଶଗଡ଼ିଆକୁ ଧରିଁ ପେଲୁଛି । ଶାସନ ଶଗଡ଼ ଯେ କେତେବେଳେ ଓଲଟି

ପଡ଼ିବ କି କେଉଁ ଖମାରେ ଚଢ଼ି ଚୂରମାର ହୋଇଯିବ, ତାହା ଦେଖିବାକୁ ଲୋକେ ଡମା ଡମା ଆଖିରେ ଚାହିଁ ରହିଲେ । ମନ୍ତ୍ରୀ-ଉପମନ୍ତ୍ରୀମାନେ ମହା ହୁସିଆର, ବାହାରକୁ ଯେତେ ବାତଫୁରୁସି ଦେଖାନ୍ତୁ ନା କାହିଁକି, ପେଟ ଭିତରଟା ସମସ୍ତଙ୍କର ହାଲୁହାଲୁ ହେଲା । ପିମ୍ପୁଡ଼ି ଝିଣ୍ଟିକା କଥା ସମସ୍ତେ ପିଲାଦିନେ ପଢ଼ିଥିଲେ । ଠିକଣା ସମୟରେ ସେଇ କଥାଟି ସମସ୍ତଙ୍କର ମନେ-ପଡ଼ିଲା । ଖାଲିନାଲି ହୋଇ ସଞ୍ଚୟରେ ଲାଗି ପଡ଼ିଥିବା ପିମ୍ପୁଡ଼ିକୁ ଝିଣ୍ଟିକା କପଟ ଖେଳିବାକୁ ଡାକିଲା ଆଉ ପିମ୍ପୁଡ଼ି ଫିମ୍ପୁଡ଼ି ଦେଖାଇ କପଟ ଝିଣ୍ଟିକାକୁ କହିଲା—"ଆରେ ହଟ୍ ହଟ୍, ଏଇଟା ସଞ୍ଚୟ କରିବା ବେଳ । ଏତିକିବେଳେ ସଞ୍ଚୟ ନକଲେ ଭୋଟବେଳେ ଖାଇବ କଅଣ, ପିଲାଙ୍କୁ ଖୋଇବ କଅଣ ? ତୁ ଯା ଖେଳ, ମୁଁ ସଞ୍ଚୟରେ ଲାଗିପଡ଼ିବି ।"

ସମସ୍ତେ ଭାବିଲେ—ଓଃ ! ସେଇଟା ପିମ୍ପୁଡ଼ି ନୁହେଁ, ସେ ଆମ ଗୁରୁ । ଗୁରୁ ଉପଦେଶ ମାନିବା ନିହାତି ଦରକାର । କ୍ଷମତାରୁ ଗଲେ କୋଉଠୁ କିଛି ମିଳିବନି । ପୁଣି ଭୋଟ୍‌ରେ ଲଢ଼ିଲା ବେଳକୁ ଭୋଟରଙ୍କ ମୁହଁରେ ଅସରନ୍ତି ଖାଦ୍ୟ ଦେବାକୁ ପଡ଼ିବ । ଭୋଟ ବେଳକୁ ଭୋଟରଙ୍କ ଦାଉ ବେଢ଼ି ଉପରେ କୋରଡ଼ ପରି ହେବ । ଏଣୁ ନିଜକୁ ପିମ୍ପୁଡ଼ି ବନେଇବାକୁ ହେବ ।

ସତକୁ ସତ ଗୋଟିଆ ଗୋଟେଇ, ବୁହାବୋହି ଓ ସଞ୍ଚୟର ଧୁମ ଚାରିଆଡ଼େ ଲାଗିଗଲା । ଗଛରେ ଭୋଟ୍ ଫଳିଲା ବେଳକୁ ଏଗୁଡ଼ାକ ଖର୍ଚ୍ଚ ହେବ । ମନ୍ତ୍ରୀମାନେ ଯେତେହେଲେ କ୍ଷେତ ମାଲିକ,ସେମାନେ ନିଜ ହାତରେ ସବୁ କିଛି କରି ପାରିବେ ନାହିଁ । ସେଥିପାଇଁ ଭଲ ଭଲ ଚାଷୀ ଦରକାର । କେଉଁ ଚାଷୀକୁ କେଉଁଠାରେ ମୁତୟନ କଲେ ଚାଷକାମଟା ସୁରୁଖୁରୁରେ ହେବ ଆଉ ଭଲ ଅମଳ ବି ହେବ, ସେ ବିଷୟରେ ଧ୍ୟାନ ଦିଆଗଲା । ସରକାରୀ ଚାକିରିଆଙ୍କ ଭିତରେ ପୋଖତ ଚାଷୀମାନଙ୍କୁ ଖୋଜା ଲାଗିଲା । ଅଉଲ୍ ଅଉଲ୍ ନମ୍ବର କିଆରିମାନଙ୍କରେ ନାମଜାଦା ଅମଲାମାନଙ୍କୁ ରଖାଗଲା । ଭାଗଚାଷୀ ଆଇନ୍ ସେଠାରେ ବି ଲାଗୁ କରିଦିଆଗଲା । ସେମାନେ ଯାହା ଆଦାୟ କଲେ, ତହିଁରୁ ନିଜର ଅଧେ ରଖି, ବାକିତକ ମନ୍ତ୍ରୀମାନଙ୍କ ହାତରେ ସତ ଅଧରେ ଦେଇ ଆସିଲେ ।

ଏଣେ ସବାଖିଆଏ ରକତ ଚାଷୀଙ୍କ ଶୁଣେଇ ଶୁଣୁଥାଆନ୍ତି—ହଅନ, ଏମାନଙ୍କର ପିଉ କେତେ ଯେ କିଛି ନୂଆ ଚାଷ ପ୍ରଣାଳୀ ଦେଖେଇବେ । ଆମେ ଯାହା ସବୁ କରିଯାଇଥିଲୁ ସେଇଆ ତ କରୁଛନ୍ତି । ଗୋଟାଏ କିଛି ନୂଆ ଉପାୟ ତ ଏଯାଏଁ ଖଟେଇ ପାରିଲେ ନାହିଁ, ଯେଉଁଥିରେ କି ଆହୁରି ଅଧିକ ହ୍ୱେଟ୍ ଅମଳ ହୋଇପାରିବ । ସେଇ ବାଟରେ ତ ଆମେ ଶେଷରେ ଖତମ୍ ହୋଇଗଲୁ । ଥୟଧର, ଶୁଭ ଦିନ ମାଡ଼ି ଆସୁଛି । ଏମାନଙ୍କ ସାଙ୍ଗକୁ ଲୋକେ ବି କଏରେ କଏରେ ହେବାକୁ ଆରମ୍ଭ କଲେ । ବେଳ ଓଣ୍ଡି ଜଣ୍ଡି ସବାଖିଆଏ ଅସନ୍ତୁଷ୍ଟ ଲୋକଙ୍କ ଭିତରେ ଲୁଚିରହି ହରିଜନ ସମସ୍ୟା ପୋକ, ସାମ୍ପ୍ରଦାୟିକ ଦଙ୍ଗା ପୋକ, ସର୍ବୋଦୟ ଅନଶନ ଅର୍ଥାତ୍ ସବୁ ପ୍ରକାର ଲୋକଙ୍କ ଅନଶନ ବୋଇଲେ ଛାତ୍ର ଅନଶନକୁ ଶିକ୍ଷକ ଅନଶନ, ରୋଗୀ ଅନଶନକୁ ଡାକ୍ତର ଅନଶନ, ଖାଉଟି ଅନଶନକୁ ଦୋକାନଦାର ଅନଶନ, ମୂଲିଆ ଅନଶନକୁ ମାଲିକ ଅନଶନର ପୋକସବୁ ଆଣି ହ୍ୱେଟ୍ କିଆରିରେ ପୂରେଇ ଦେଲେ । ମନ୍ତ୍ରୀମାନେ ମନେ ମନେ ପ୍ରମାଦ ଗଣିଲେ ସତ; କିନ୍ତୁ ଦବିଗଲେ ନାହିଁ । ବଡ଼ିଆ ବଡ଼ିଆ କୀଟମାର ଔଷଧ ଠିକଣା ବେଳେ ପୋକଙ୍କ ଉପରେ ଛିଞ୍ଚି ଦେବାକୁ ପୁଲିସ୍‌ମାନଙ୍କୁ ଲଗେଇ ଦେଲେ ।

ମନ୍ତ୍ରୀମାନେ ହ୍ୱେଟ୍ କିଆରି ଉପରେ ଏତେ ଧ୍ୟାନ ଦେଲେ ଯେ ଅନ୍ୟ କେଉଁ ଆଡ଼କୁ ସେମାନେ ବିଲକୁଲ୍ ଚାହିଁଲେ ନାହିଁ । ବର୍ଷେ ଦି'ବର୍ଷ ବିତିଗଲା । ହ୍ୱେଟ୍ ଗଛ ଉପରେ ବିଶେଷ କିଛି ବିପଦ ଦେଖିପାରିଲେ ନାହିଁ । ଲୋକେ ବହୁତ ଦୁଃଖ କଷ୍ଟ ସହିଲେ ବି ନିଜ ହାତରେ ଗଢ଼ିଥିବା ଜିନିଷକୁ ଭାଙ୍ଗିଦେବାଟା ପସନ୍ଦ କଲେ ନାହିଁ । ହଠାତ୍ କିନ୍ତୁ ଖୋଦ୍ ମନ୍ତ୍ରୀମାନଙ୍କୁ 'ଓଡ଼ିଆ ରୋଗ' ଧରିଲା । ଦିନେ ଏକ କାଇଦା ପ୍ରଭାତରେ ଦେଖାଗଲା—ମନ୍ତ୍ରୀମାନେ ରୋଗରେ ବାଇଆ ହୋଇ ଗାଳି ଦିଆଦେଇ ହେଉଛନ୍ତି । ଜଣେ କହୁଛି, "ହେ ହେ, ତୋ ପୁଅ ଗୁଣ୍ଡାଏ ଗିଳି ପକେଇଲାଣି ।" ଆଉ ଜଣକ ବାଡ଼ି ଉଠେଇ ଚାଲିଛି—"ଚୁପ୍‌କର, ତୁଠା କୋଉ ଭଲ, ତୋ ଝିଅ ଜୋଇଁ ସବୁ ଦିନ ଗଣ୍ଡ ଗିଳିବାରେ ଲାଗିଛନ୍ତି ।" ଆଉ ଜଣେ ଅନ୍ୟ ଜଣକୁ କହୁଛି—"ହେ ହେ, ତୋ ପୁଅଟା ବଡ଼େ ଜନାକାସି କେସ୍ କଲାଣି, ତାକୁ ସମ୍ଭାଳ ।" ଆଉ ଜଣେ ରଡ଼ି କରୁଛି, "ହେଇଟି ତୋ ପୁଅ

ଶ୍ବେଷ ଆମଦାନୀ କରୁଛ ଦେଖ ।” ଜଣେ ଷ୍ବଗରେ ପାଣପାଇ ଓ ବାଡ଼ରେ ବାଡ଼ଏ ବାଡ଼ଏ ପକାଇ ଦ’ ଜଣଙ୍କୁ ସେଠାରୁ ତଡ଼ଦେଲ । ସେ ଦ’ଜଣ ଗାଳଗୁଲଜ କର କହୁଥାଆନ୍ତ—“ରହ ରହ, ଆମେ ଆମ ଫଉଜ ସଜେଇ ଆସୁଛୁ; ତୋ କଗମତ କେତେ ଦେଖିବା ।”

ଲୋକେ କାନରେ ହାତଦେଇ କୁହାକୁହି ହେଲେ—“ହେ ଭଗବାନ ! ଖୃଷ୍ଟଙ୍କୁ ଉଇ ସିନା ତଳଆଡ଼ୁ ଖାଏ, ଉପରଆଡ଼ୁ ଖାଇବା କଥା ଦେଖିବା ତ ଦୂରର କଥା, ଆମେ ଶୁଣି ନଥିଲୁ । ହେ ଭଗବାନ ! ରକ୍ଷାକର !”



# ॥ ଦ୍ୱୟୋର୍ବାଦେ ॥

ଅଗାଦଳ ହାତରେ ବହୁତଦିନଯାଏ କ୍ଷମତା ରହିବାରୁ ସେମାନେ କ୍ରମେ ସ୍ୱେଚ୍ଛାଚାରୀ ହୋଇ ଉଠିଲେ । ପ୍ରକୃତରେ ଦେଖିବାକୁ ଗଲେ ଖଗାଦଳହିଁ ସେମାନଙ୍କ ବିରୁଦ୍ଧ ଦଳ ଥିଲେ । ତାଙ୍କ ଚାଲିଚଳଣ, ଚିନ୍ତାଧାରା ଓ କାମ ଅଗାଦଳଠାରୁ ଭିନ୍ନ ଥିଲା । ହେଲେ ଲୋକେ ସେମାନଙ୍କୁ ବେଶି ମହତ୍ ଦେଉ ନଥିବାରୁ ସେମାନେ ଅଗାଦଳକୁ ହଲାଇ ପାରୁନଥିଲେ । ଏ ଦୁଇଦଳକୁ ଛାଡ଼ିଦେଲେ ଆହୁରି ଖାଉଜେଡ଼େ ଦଳ ଥିଲେ । ସେମାନେ ହେଲେ ଶିଙ୍ଗୁଡ଼ିଆ, ବୋଳଝାଞ୍ଜି, ବାଲାଡ, ଗୁଣ୍ଡି, କଜଳା ଇତ୍ୟାଦି ଇତ୍ୟାଦି । ଏମାନଙ୍କ ଜନ୍ମସ୍ଥାନ ଥିଲା ଅଗାଦଳ । କିଏ ଚଡ଼ା ଖାଇ ଦଳଟିଏ ଗଢ଼ିଲା ତ କିଏ ରୁଷି ପଳେଇଆସି ଆଉ ଗୋଟାଏ ଦଳ ଗଢ଼ିଲା । କାହାରି ସଙ୍ଗେ କାହାରି ପଡ଼ୁନଥିଲା । କଳି ହେଉଥିଲା ସେମାନଙ୍କର ବେଉସା । ଆଜି ଅଗା ସାଙ୍ଗରେ କଳି ତ କାଲି ଖଗା ସାଙ୍ଗରେ, ପଅରିଦିନ ନିଜ ନିଜ ଭିତରେ । ଅଗାଦଳ ଏଗୁଡ଼ାଙ୍କର ହାଲତ୍ ଦେଖି ନାକରେ ତେଲ ପକାଇ ବସିଥାନ୍ତି । ମନ ଭିତରେ ଖଗାଦଳ ପ୍ରତି ଭୟ ଯେ ଟିକିଏ ଉଙ୍କି ମାରୁନଥାଏ ତା ନୁହେଁ, ହେଲେ ସେଥିପ୍ରତି ବେଶି ଧ୍ୟାନ ଦେଉନଥିଲେ ।

ପାଣିଟା ବହୁତ ଦିନଯାଏ ଗୋଟାଏ ଜାଗାରେ ରହିଲେ ପଚି ସଢ଼ିଯାଏ, ଗନ୍ଧାଏ । ଅଗାଦଳର ଅବସ୍ଥା ଠିକ୍ ସେଇଆ ଧରିଲା । ସେମାନେ ଭାବିଲେ ଯେ ସେମାନଙ୍କୁ ବୁଢ଼ା ଆଙ୍ଗୁଠି ଦେଖାଇବାକୁ ତାଙ୍କ ଉପରେ ଇନ୍ଦ୍ର, ଚନ୍ଦ୍ର, ବରୁଣ କେହି ନାହାନ୍ତି । ଟିକି ଟିକି ଦଳଗୁଡ଼ାକ କେହିହେଲେ ତାଙ୍କ ସମକକ୍ଷ ନୁହଁନ୍ତି । ସବୁଗୁଡ଼ାକ ନଅଙ୍କିଆ । ସେମାନେ ଭୋଟର୍‌ମାନଙ୍କୁ ଏମିତି ପଇସା ଚଟେଇ ଦେଇଛନ୍ତି ଯେ, ଏମାନେ ଭୋଟର୍‌ମାନଙ୍କ ପାଖ ମାଡ଼ିବା ମାତ୍ରେ, ପଇସା ଆଣ, ଖାସି ଆଣ,

ମଦ ପିଆ ଆଣ ବୋଲି ଚଳେଇବେ । ସେ ରଡ଼ ଶୁଣି ଘୁଡଆଁରେ ସେମାନେ ପଳେଇ ଆସିବେ ।

ଉଚ ପାହ୍ୟା ହାକିମଙ୍କ ଉଚ୍ଛୃଙ୍ଖଳ ପୁଅ ଯେମିତି ତାଣ୍ଡବ ଲୀଳା ଲଗେଇ ଦିଏ, ଏମାନେ ସେମିତି ଅତ୍ୟାଚାର ଆରମ୍ଭ କରିଦେଲେ । ଯିଏ ତାଙ୍କ ବିରୁଦ୍ଧରେ କହିଲା ତାକୁ ଜେଲ୍, କାହାକୁ ବରଖାସ୍ତ, ବସ୍ତିରପତିଙ୍କ ମୁହଁରେ ପାନଚୂଣ, କାହା ଘର ଭଙ୍ଗ, କାହାକୁ ଜବରଦସ୍ତ ଖାସ୍ସୁ, ଏମିତି ଉଦ୍ଦଣ୍ଡିଆ କାମ ଚଳେଇଲେ । ଟିକି ଦଳମାନଙ୍କର ଶେଷରେ ଚେତା ପଶିଲା । ସମସ୍ତେ ଏକଜୁଟ୍ ହୋଇ ଗୋଟାଏ ବଗାଦଳ ଗଢ଼ିଲେ । ଖୁବ୍ ଧନ୍ଧଡ଼ାକ ଲଗେଇ ନୂଆ ବଗାଦଳ ଅଗାଙ୍କୁ ଠେଲି କୂଅ ଭିତରକୁ ଗଳେଇ ପକେଇଲେ ଆଉ ନିଜେ ମୋଢ଼ ଗାଦିରେ ବସିଲେ । ପ୍ରତ୍ୟେକେ ମନେ ମନେ ଭାବିଲେ ଯେ ତା'ର ବାହୁବଳ ଯୋଗୁଁ ଅଗାଦଳ ହାରିଲା । ଏକ ମେଳ ହୋଇ ଲଢ଼ି ଜିତିଥିବା କଥା ସମସ୍ତେ ଭୁଲିଗଲେ । ମନେ ମନେ ଠିକ୍ କଲେ ଘେରାଓର୍ ମାନଙ୍କ କଥା ପଛେ ବିଚାର କରାଯିବ, ଆଗ ଅଗା-ଦଳଙ୍କ ଦର ଭାଙ୍ଗି ସେମାନଙ୍କୁ ଖୋବଣ ଦିଆଯିବ । ବାସ୍ ଅଗାଦଳ ଯାହା ଯାହା କରିଥିଲେ ତାକୁ ଭାଙ୍ଗିବାରେ ଲାଗିଗଲେ । ସେମାନେ ଯେଉଁ ଚୋରମାନଙ୍କୁ ଜେଲ୍‌ରେ ଠୁଙ୍କିଥିଲେ, ତାଙ୍କୁ ଖଲାସ କରି ଭଲ ଜାଗାରେ ବସେଇଲେ । ସେମାନେ ଯେଉଁ ସାଧୁମାନଙ୍କୁ ପୂଜା କରୁଥିଲେ ସେମାନଙ୍କୁ ଜେଲ୍‌ରେ ଠୁଙ୍କିଲେ । ମୋଟ ଉପରେ ଅଗାଦଳ କେଉଁଠି ଛୁଙ୍କିଛନ୍ତି, କେଉଁଠି ବଦ୍‌ବାୟୁ ଛାଡ଼ିଛନ୍ତି, ସେହି ଥାନସବୁ ଖୋଜିବାରେ କାଳ ବିତାଇଲେ । ଘେରାଓର୍‌ଙ୍କ କଥା ପଚାରେ କିଏ ? କିନ୍ତୁ ଦିନ ଆଗମନରେ କଟିଯିବାରୁ ପୁଣି ସେହି କଳିଖୋଇ ମୁଣ୍ଡରେ ପଶିଲା । ସମସ୍ତେ ସମସ୍ତଙ୍କର ଗୋଇ ଖୋଳି ନିଜକୁ ଶୁଦ୍ଧ ସୁବର୍ଣ୍ଣ ଭାବେ ଜାହିର କଲେ ଓ ପରସ୍ପର ପାଇଁ ଗାତ ଖୋଳିଲେ ।

ଅଗାଦଳ ଏତିକ ଜଣ୍ଡୁ ଥିଲେ । ସେମାନେ ଛଦ୍ମବେଶରେ ଗାତ ଖୋଳାରେ ସାହାଯ୍ୟ କଲେ, ଫଳରେ ବଗାଦଳର ନୂଆ ଘରଟି ସତରେ ଫାଳ ହୋଇ ଭୁଶୁଡ଼ି ପଡ଼ିଲା । ପୁଣି ଘର ଭିଆରି ଆରମ୍ଭ ହେଲା । ବଗାଦଳ କିନ୍ତୁ ଅଲଗା ଅଲଗା ହୋଇ ଘର ଗଢ଼ିବାକୁ ବସିଲେ । ଅଗାଦଳର

ଟାଉଟର୍‌ମାନେ ଏଘର ମାଉସୀ ସେଘର ପିଉସୀ ହୋଇ ନାରଦମୁନିଙ୍କ ସାହାଯ୍ୟ ନେଲେ । ବଗା ଦଳ ଥିଲେ ଥିଲେ ହଠାତ୍ ଶୋଧାଶୋଧିର ଅଣଚାଶ ପବନ ଛୁଟାଇ ଦେଲେ । କିଏ କହିଲା,"ହେ, ତୋ ପୁଅ କଳା-ପୋତଇ କରୁଛି ।" ଆଉ ଜଣେ କହିଲା—"ହଇରେ, ନିଜ ପଛଆଡ଼ ଦେଖ, ତୋ ଝିଅ କେତେ କଳାପୋତେଇ କରୁଛି ଦେଖ ।" ଆଉ ଜଣେ କହିଲା, "ଆରେ ହେ, ତୋ ପୁଅ ସତର ନମ୍ବର ଜନାକାଣ୍ଡ କେସ୍ କଲାଣି, ହେଇ ତା' ଫଟୋ ଦେଖ ।" ନୂଆ ହୋଇ ତିଆରି ହୋଇଥିବା ଘର ଭିତରେ ପେଲାପେଲି ଆରମ୍ଭ ହୋଇଗଲା । ଘର ଅଜାଡ଼ ହୋଇ ପଡ଼ି ମାଟିରେ ମିଶିଗଲା । ଅଗାଦଳଙ୍କର ଏତିକି ଦରକାର ଥିଲା । ଅଳପ ହେଲେ ବି ସେମାନଙ୍କର ମେଣ୍ଟ ଠିକ ଥିଲା । ସେମାନେ ବଗାଦଳଆଙ୍କ ମୁଣ୍ଡକୁ ଏକାବେଳେକେ ବିଗାଡ଼ି ଦେଲେ । ଫଳରେ ପୁଣି ଯେତେବେଳେ ବଛାବଛି ଆରମ୍ଭ ହେଲା ବଗାଦଳ ପୁଣି ସତର ଫାଳ ହୋଇ ଅଲଗା ଅଲଗା ଲଢ଼ିଲେ । ପ୍ରତ୍ୟେକ ଭାବୁଥାଆନ୍ତି ଯେ ତାଙ୍କର ପାଇଁ ବଗାଦଳ ଜିତିଥିଲା । ଏକଜୁଟ୍ ହୋଇଥିବାରୁ ଯେ ସେମାନେ ଜିତିଥିଲେ ତାହା ପୂରା-ପୂରି ପାସୋରି ଗଲେ । ଅଗାଦଳ ସେମାନଙ୍କୁ ଝାଡୁଆ ଓଳେଇଲା ପରି ଗାଦିରୁ କାଢ଼ିକୁ ଓଳେଇ ଦେଇ ହୃତ ଗୌରବକୁ ପୁଣି ଫେରିପାଇଲେ । ବଗାଦଳ ଏକାବେଳେକେ ନିଶ୍ଚିହ୍ନ ହୋଇଗଲା । ଅଗାଦଳଆଏ ପେଟ ଭିତରେ ଖାଲି କୁତୁକୁତୁ ଥିଲେ । ଗଗତକ ପେଟ ଭିତରୁ ଉବୁକ ଉଠିଲା । ପଦ୍ମିଲେ ପଦ୍ମିଲେ କହୁଥିଲେ ଆମେ ପ୍ରତିଶୋଧପରାୟଣ ନୋହୁଁ । ପାଟି କଥା ପାଟିରେ ରହିଲା । ହନୁମନ୍ତ ଲଙ୍କାଗଡ଼ ଧ୍ୱଂସ କଲାପରି ବଗାଙ୍କର ଯେଉଁଠି ଯେତେ ଘରଥିଲା, ସବୁ ଭାଙ୍ଗି ମାଟିରେ ମିଶେଇଦେଲେ । ଲୋକମାନେ ବଗାଙ୍କ ଅମଳରେ ବହୁତ କଷ୍ଟ କଷ୍ଟ ପାଇଲେ, ସେଇଥିଲାଗି ସେମାନେ ବଗାଙ୍କୁ ହଟେଇଛନ୍ତି ବୋଲି କହିଲେ । ହେଲେ ବଗାଙ୍କ ଉପରେ ରାଗଟା ଟକମକ ହୋଇ ଫୁଟୁ-ଥିଲା; ତେଣୁ ସେମାନେ ଲୋକଙ୍କ କଥା ଭୁଲି ଆଗ ବଗାଙ୍କ ଉପରେ ରାଗ ଛୁଟେଇବାକୁ ଲାଗିଲେ । ବଗାଏ କେଉଁଠି କଅଣ କରିଛନ୍ତି, ଚାଲିଲା ତା'ର ତଲାସ୍ । ବଗାଏ ଯେଉଁମାନଙ୍କୁ ବରଖାସ୍ତ କରିଥିଲେ ସେମାନେ ସେମାନଙ୍କୁ ପାଗ୍ରେଟି ଆଣି ପୁଣି ଚାକିରିରେ ପୂରେଇଲେ । ଯେଉଁମାନେ ଚାକିରିରେ ଥିଲେ, ସେମାନଙ୍କୁ ବରଖାସ୍ତ କଲେ । ଲୋକହିତକର ହୋଇ-ଥାଉ ପଛକେ ଯାହା ସବୁ ବଗା କରିଥିଲେ ତାକୁ ଭଙ୍ଗାଗଲା ।

ଅନ୍ତ ସ୍ଥାନମାନଥା ହୋଇ ବଗାଦଳ ଛତରଫାଳ ହୋଇ-ଯାଇଥିଲେ । ପରସ୍ପରକୁ ଦୋଷ ଦେବା ଛଡ଼ା ଆଉ କିଛି କରିବାର ନଥିଲା । ସେମାନେ ଏକ ହୋଇ ଜିତିଥିଲେ । ଅନେକ ହୋଇ ହାରିଲେ । ଏ କଥା ସେମାନଙ୍କ ମୁଣ୍ଡରେ ପଶିଲା ନାହିଁ ।

ଏ ସବୁ ଦେଖି ଖଗାଦଳ ଆନନ୍ଦରେ କୁରୁଳି ଉଠୁଥାନ୍ତି । ତାଙ୍କ ମେଣ୍ଟା ଚୁପ୍‌ଚୁପ୍ କହିଲା—ଆରେ, ବଗା ଲୋକଙ୍କୁ ଭୁଲ ଏମିତି କଳି କରୁଥାଆନ୍ତୁ । ପରସ୍ପର ଘର ଭାଙ୍ଗିବାରେ ଲାଗିଥାଆନ୍ତୁ । ଲୋକେ ଶେଷରେ ଅସ୍ତବ୍ୟସ୍ତ ହୋଇ ଆମକୁ ଲୋଡ଼ିବେ । ଥରେ ଆମ ହାତକୁ କ୍ଷମତା ଆସିଗଲେ, ପୃଥିବୀରେ ଏମିତି କେହି ନାହିଁ, ଯିଏକି ଆମ ହାତରୁ ପୁଣି କ୍ଷମତା ଛଡ଼ାଇ ନେବ । ଚାଲ ଆମେ ସମସ୍ତେ ନଖ ଘଷିବା । ଅଗା-ବଗାଙ୍କର କଳି ଯେମିତି ଜବ୍‌ବର ଲାଗେ, ତା'ର ଉପାୟ କରିବା । ସେମାନେ ବୁଣିବେ ଆମେ ଦାଇବୁ; ସେମାନେ ରାନ୍ଧିବେ ଆମେ ଖାଇବୁ, ସେମାନେ କଳି କରିବେ ଆମେ ଲଫା ଉଠେଇବୁ । ଶାସ୍ତ୍ର କହୁଛି—"ଦ୍ୱୟୋର୍ବିବାଦେ ତୃତୀୟସ୍ୟ ଲାଭମ୍ ।"



# ॥ ଅପାର୍ଥିବ ନିର୍ବାଚନ ॥

ଦନୁଜମର୍ଦ୍ଦନ ଆଚାର୍ଯ୍ୟ, କାହ୍ନୁ ଚରଣ ମହାନ୍ତି ଓ ସନାତନ ପ୍ରଧାନ ଓରଫ୍ ଯଥାକ୍ରମେ ଦନେଇ, କହ୍ନେଇ ଓ ସନେଇ ତିନି ମିଶି ବଣ ଭିତରେ ଲୁଚିଛପି ନସରପସର ହୋଇ ପଳାଉ ଥାଆନ୍ତି । ପୁଲିସ ସେମାନଙ୍କ ପିଛା ଧରିଥିଲେ । ହେଲେ ସେମାନେ ପୁଲିସକୁ ଭୁଆଁ ବୁଲେଇଦେଇ ଜଙ୍ଗଲ ଭିତରେ ପଶି ଅନ୍ତର୍ଦ୍ଧାନ ହୋଇଗଲେ । ପୁଲିସବାଲାଏ ଭାବିଲେ ଏ ତିନିଟା ଯାକ ପକ୍କା ଟାଉଟର୍ । ନିର୍ବାଚନ ପ୍ରାର୍ଥୀମାନଙ୍କର ଅଙ୍କୁଶ-କୃମି ବା ହୁକ୍‌ୱାର୍ମ । ଅଙ୍କୁଶ କୃମି ମଣିଷ ପେଟକୁ ଗଲେ ଯେପରି ନିର୍ବିଘ୍ନରେ ତା'ର ରକ୍ତ ଶୋଷି ଶୋଷି ତାକୁ ଧଳା କରିଦିଏ, ଏମାନେ ଠିକ୍ ସେମିତି ନିର୍ବାଚନ ପ୍ରାର୍ଥୀମାନଙ୍କଠାରେ ଲାଗିରହି ସେମାନଙ୍କର ରକ୍ତଠାରୁ ଦାମିକା ଜିନିଷ, ନାନା ଅବୈଧ ଉପାୟରେ ସଞ୍ଚିତ ଧନଟିକ ଶୋଷି ନିଅନ୍ତି । ଆହୁରି ମଧ୍ୟ ସେମାନେ ଭୋଟର୍‌ମାନଙ୍କ ଡାହାଣୀ ଆଲୁଅ (ୱିଲ୍ ଦ'ୱିସ୍ପ୍) । ରାତିରେ ଡାହାଣୀ ଆଲୁଅ ଯେପରି ପଥହରା ପଥିକମାନଙ୍କୁ ଭୁଲ ବାଟରେ ନେଇଯାଏ, ଏମାନେ ଠିକ୍ ସେହିପରି ଭୋଟର୍‌ମାନଙ୍କୁ ପଟେଇପାଟେଇ ଦୁର୍ନୀତିଗ୍ରସ୍ତ ପ୍ରାର୍ଥୀମାନଙ୍କ ଆଡ଼କୁ ବାଟ କଢ଼େଇ ନେଇଯାଆନ୍ତି । ପୁନଶ୍ଚ ଏମାନେ ଜନସାଧାରଣଙ୍କ ନିକଟରେ ବର୍ଷାଦିନିଆ ରାତି-ବେଙ୍ଗ । ରାତି-ବେଙ୍ଗମାନେ ବର୍ଷାଦିନ ରାତିରେ ଏକଜୁଟ୍ ହୋଇ ଏମିତି କଟର୍ କଟର୍ ଶବ୍ଦ କରନ୍ତି ଯେ, ଲୋକେ ରାତିରେ ଭଲ ଭାବରେ ଶୋଇ ପାରନ୍ତିନାହିଁ । ସେହିପରି ଏ ଟାଉଟର୍ ଗୋଷ୍ଠୀ ନିର୍ବାଚନବେଳେ ଗୋଟିଏ ଗୋଟିଏ ବଡ଼ପାଟିଆ ଧରି ଏମିତି ପାଟିଭୁଣ୍ଡି ଆରମ୍ଭ କରନ୍ତି ଯେ, ଲୋକେ ଅସ୍ତବ୍ୟସ୍ତ ହୋଇଯାଆନ୍ତି । ଆହୁରି ମଧ୍ୟ ଶାନ୍ତିରକ୍ଷକମାନଙ୍କ ପାଖରେ ଏମାନେ ମହାଦେବଙ୍କ ବୁଲାଷଣ୍ଢ । ବୁଲାଷଣ୍ଢ-ମାନେ ବେପରୱାୟୁ ଭାବରେ ବାଡ଼ ଭାଙ୍ଗି ସମସ୍ତଙ୍କର ବିରକ୍ତିଭାଜନ

ହେଲେ ସୁଦ୍ଧା କେହି ସେମାନଙ୍କୁ ମହାଦେବଙ୍କ ବିରକ୍ତିଭାଜନ ହେବା ଭୟରେ ପ୍ରକାଶ୍ୟରେ ବି'ଲ୍ୱର ଠେଙ୍ଗା ପକେଇବାକୁ ସାହସ କରନ୍ତି ନାହିଁ । କେବଳ ହୋ-ହୋ କରି ଅଡ଼େଇ ଦିଅନ୍ତି । ଅବଶ୍ୟ ଯଦି କେହି ଆଖ-ପାଖରେ ନଥାନ୍ତି, ତେବେ କଷିକରି ବି'ଲ୍ୱର ଠେଙ୍ଗା ପକେଇ ଥାଆନ୍ତି । ଠିକ୍ ସେହିପରି ଏ ଟାଙ୍ଗଠର୍‌ମାନେ ଅପର ଦଳର ଲୋକଙ୍କ ଉପରେ ଚଢ଼ଉ କରି ଦିଅନ୍ତି, ସେମାନଙ୍କ ସହ ଧସ୍ତାଧସ୍ତି କରନ୍ତି । ସେମାନେ ପୂର୍ବମନ୍ତ୍ରୀଙ୍କ ଲୋକ । ପୂର୍ବମନ୍ତ୍ରୀ ପୁଣି ନୂଆମନ୍ତ୍ରୀ ହୋଇପାରନ୍ତି । ଏହି ଭୟରେ ଶାନ୍ତିରକ୍ଷକମାନେ କେବଳ ହୋ-ହୋ କରନ୍ତି । ନିଜେ ମାଡ଼ ଖାଆନ୍ତୁ ପଛକେ ଦୁଇଦଳ ମଝିରେ ପଶି ଦୁହିଁଙ୍କୁ ଅଲଗା କରି ଦିଅନ୍ତି । ଅତି ବେଶି ହୋଇଗଲେ, ବନ୍ଧୁଆଡ଼କୁ ବନ୍ଧୁଁ ବି' ଠେଙ୍ଗା ଯେ ନ ଦିଅନ୍ତି ଏମନ୍ତ ନୁହେଁ । ଠିକ୍ ଏମିତିଆ ପରିସ୍ଥିତିରେ ପୁଲିସବାଲାଏ ଦନେଇ, କହେଇ, ସନେଇ ଉପରେ ବି'ଲ୍ୱର ଠେଙ୍ଗା ଦେବାକୁ ସେମାନଙ୍କ ପଛରେ ଗୋଡ଼ାଇ ଥିଲେ । ଗୋଟିଏ ଗାଉଁଲିଆ ନିର୍ବାଚନ କେନ୍ଦ୍ରରେ ଏମାନେ ଏତେ ଦୁର୍ଦ୍ଦଣ୍ଡ ହୋଇ ଉଠିଲେ ଯେ, ଦୁନିଆଁରେ ତାଙ୍କ ଉପରକୁ ଆଉ କିଏ ଅଛନ୍ତି ବୋଲି ସେମାନଙ୍କୁ ଜଣାଗଲା ନାହିଁ । ଫଳରେ ତିନିହେଁ କେନ୍ଦ୍ରରେ ତାଣ୍ଡବ ନୃତ୍ୟ ଆରମ୍ଭ କରିଦେଲେ । ଚଣ୍ଡୀ ଚାମୁଣ୍ଡାମାନଙ୍କୁ ଧରି ଏମାନେ କେନ୍ଦ୍ର ଭିତରେ ଧସେଇ ପଶିଲେ । କେନ୍ଦ୍ରରେ ଥିବା କର୍ମଚାରୀମାନଙ୍କୁ ବାଡ଼େଇ ଭୋଟ ବାକ୍ସକୁ ନେଇ ପଳେଇଲେ । କାଣ୍ଡଟା ଘଟେଇ ପାରିବାରେ ସେମାନଙ୍କର ତେତା ଚଟିଲା । କେନ୍ଦ୍ର ଜଗିଥିବା ନଡ଼ବଡ଼ିଆ ଝସ୍ତ ପୁଲିସ, ତା'ଉପରକୁ ଥାନାର ଲଠିଆଳ ପୁଲିସ, ତା'ଉପରକୁ ବନ୍ଧୁକଧାରୀ ରିଜର୍ଭ ଫୋର୍ସ, ତା' ଉପରକୁ ସୈନ୍ୟସାମନ୍ତ; ସେମାନଙ୍କ ମୁଣ୍ଡରେ ଗୋଟିକ ପରେ ଗୋଟିଏ ପଶିଲେ । ଗୁନିଆଁରେ ତିନିହେଁ ଭୋଟ୍ ବାକ୍ସଟାକୁ ଗାଁ ରାସ୍ତାରେ ଫୋପାଡ଼ି ଦେଇ, ଅମଡ଼ା ମାଡ଼ି ବଣ ଭିତରକୁ ପଳେଇଲେ । ପୁଲିସବାଲାଏ ଭାବିଲେ ସେମାନେ ଗାଁ ଭିତରେ ଲୁଚିଯାଇଛନ୍ତି, ତେଣୁ ସେମାନେ ଗାଁ ଧୁଣ୍ଡାଳିବାକୁ ଲାଗିଲେ । ସେମାନେ ଏଇ ସୁବିଧାରେ ବଣ ଭିତରକୁ ପଳେଇଗଲେ । ବଣ ଭିତରେ ଏକ ପ୍ରକାର ହଜିଗଲେ । ଧାଇଁ ଧାଇଁ ଶେଷରେ ଗୋଟାଏ ପାହାଡ଼ ପାଖରେ ପହଞ୍ଚିଲେ । ପାହାଡ଼ ଢଳରେ ଗୋଟାଏ ଝରଣା ଦେଖି ତିନିହେଁ ଅଞ୍ଜୁଳା କରି ପେଟେ ପେଟେ ପାଣି

ପିଇଗଲେ । ସାଷ୍ଟମ ହୋଇ ଭାବିଲେ, ଭାରତବର୍ଷରେ ଯେଉଁଠି ଗୋଟିଏ ଝରଣା ଥିବା ପାହାଡ଼ କି ପର୍ବତ ଥିବ, ସେଠି ଅଲବତ୍ ଜଣେ ବାବାଜି ଆଶ୍ରମ କରି ରହିଥିବ । ତେଣୁ ନିକଟରେ ନିଶ୍ଚୟ ଜଣେ ବାବାଜିର ଆଶ୍ରମ ଥିବ । ସତକୁ ସତ ଗୋଟିଏ ଗୁମ୍ଫା ଦେଖାଗଲା । ତା' ଭିତରୁ ବାବାଜି ଜଣେ କଠଉ ମାଡ଼ି ବାହାରି ଆସିଲେ । ତିନିହେଁ ଲମ୍ବ ଲମ୍ବ ହୋଇ ଗୋଡ଼ତଳେ ପଡ଼ିଗଲେ । ବାବାଜି ଆଶୀର୍ବାଦ କରି କହିଲେ—ଆସ୍ତୁ ଆସ୍ତୁ ବେଟା, ଯାଅ ଗାଧୁଆପାଧୁଆ କରି କିଛି ପ୍ରସାଦ ସେବନ କର, ଆଜି ସାଷ୍ଟମ ହୁଅ । ତୁମ୍ଭେମାନେ ବହୁତ କ୍ଳାନ୍ତ ହୋଇପଡ଼ିଛ । ଏତିକି ଶୁଣିବାମାତ୍ରେ ତିନିହେଁ ଧରପଡ଼ା ହୋଇ ଗାଧୋଇ ପଡ଼ିଲେ, କୁରୁତା ପିନ୍ଧା ଲୁଗା ଶୁଖେଇଲେ । ଲୁଗା ପିନ୍ଧି ଗୁହାକୁ ଗଲେ । ବାବାଜି କଦଳୀ, ସପୁରି, ପିଜୁଳି, ଆମ୍ବ ପ୍ରସାଦ ବାଢ଼ିଦେଲେ । ପରମ ତୃପ୍ତି ପାଇ ତିନିହେଁ ଥକାମାରି ବସିଗଲେ । ଗଛ ଛାଇରେ ବଢ଼ିଆ ନିଦ ହୋଇଗଲା । ଉଠିଲା ବେଳକୁ ଦିନ ରତରତ । ବାବାଜିଙ୍କୁ ଦେନେଇ ପଚାରିଲା—"ବାବା ! ରାତିରେ ଏଠି କୋଉଠି ଆଶ୍ରୟ ନେବା ?" ବାବାଜି କହିଲେ—"ଏଠି ଭଗବାନ ଯଥେଷ୍ଟ ପଥର ଚଟାଣର ଶେଯ ଦେଇଛନ୍ତି । ଗଛର ଆବରଣ ଦେଇଛନ୍ତି । ଯୋଉଠି ପାରେ ସେଇଠି ଗଡ଼ିଯାଅ । ପାଖରେ ବହୁତ ଫଳଗଛ, ଅମୃତ ପରି ଝରଣା ପାଣି, ଖରା ବର୍ଷାରୁ ବଞ୍ଚିବାକୁ ଗଛ ପଥର କୋରଡ଼ ଅଛି । ଆଉ ଅଧିକ କ'ଣ ଦରକାର ? ଆଉ ଅଧିକ ରହିବା ଅର୍ଥ ଲୋଭ । ଏଇଟା ଆସିଗଲେ ବେଟା ତଳକୁ ତଳକୁ ।"

ମୁଣ୍ଡ କୁଣ୍ଡେଇ କୁଣ୍ଡେଇ କହ୍ଲେଇ ପଚାରିଲା—"ବାବା, ଆପଣ ଯାହା କହିଲେ ତାହା ଠିକ୍ ଯେ, ହେଲେ ଏ ବାଘଭାଲୁ ଜାଗାରେ ରାତିରେ ପଦାରେ ଶୋଇଲେ ସେମାନଙ୍କ ପାଟିରେ ଜୀବନଟା ଯିବନାହିଁ ତ ?"

ବାବାଜି ମୁରୁକିହସା ଦେଇ କହିଲେ—"ବଣରେ କେବଳ କ'ଣ ବାଘ ଭାଲୁ ଅଛନ୍ତି । ଲୋକାଳୟରେ କ'ଣ ଦି'ଗୋଡ଼ିଆ ବାଘ ଭାଲୁ ନାହାନ୍ତି, ସେମାନେ କ'ଣ ଲୋକଙ୍କୁ କାଲୁବାଲୁ କରି ମାରୁନାହାନ୍ତି ? ସେଠି ତ ତୁମେମାନେ ତାକତରଖରେ ଚଳୁଛ । ଏଠି ସେମିତି ହୁସିଆରରେ ଚଳିବ । ବେଳେବେଳେ ସେଠି ଯେମିତି ଦୁର୍ଘଟଣା ହେଉଛି, ଏଠି ସେମିତି ହବ; ସେଥିପାଇଁ ଏତେ ଡର କାହିଁକି ? ଆଶ୍ରମ ଆଗରେ ଏଇ ଯୋଉ ବଡ଼

ଫାଙ୍କା ଥାନଟି ଅଛି, ତାର ଲାଗି ବାଘ ଭାଲୁ ଏଠାକୁ ପ୍ରାୟ ଆସନ୍ତି ନାହିଁ। ଭୟ କରିବାର କିଛି କାରଣ ନାହିଁ। କଦାଚିତ ଯଦି ଭୟ ହୁଏ କି ବିପଦର ଆଶଙ୍କା ଦେଖାଦିଏ, ତେବେ ମୋ ଗୁମ୍ଫା ଭିତରକୁ ପଶିଯାଇ ପଥର କବାଟଟାକୁ ଆଉଜେଇ ଦେବ। ଆଜି ସାରାରାତି ମୁଁ ଆଉ ଗୋଟିଏ ଗୁମ୍ଫାରେ ଧ୍ୟାନମଗ୍ନ ରହିବି।"

ଏହା କହି ବାବାଜି କମଣ୍ଡଳୁ ଧରି ଚାଲିଗଲେ। ଏ ତିନିହେଁ ବିପଦ ଦେଖାଯିବା ଆଗରୁ ଗୁହା ଭିତରେ ପଶିଗଲେ। ରାତି ବଢ଼ି ଚାଲିଲା।

ରାତି ଅଧବେଳକୁ ଗୋଟିଏ ସିଁ-ସିଁ ଶବ୍ଦ ଶୁଭିଲା। ତା ସଙ୍ଗେ ସଙ୍ଗେ ସେ ଫାଙ୍କା ଥାନଟା ବିରାଟ ଟର୍ଚ୍ଚ ଆଲୁଅରେ ଆଲୋକିତ ହୋଇ-ଗଲା। ଗୋଟାଏ ବିରାଟ ଗୁହାଥାଳିଆ ଭଳିଆ ବସ୍ତୁ ଧୀରେ ତଳକୁ ଖସିଲା। ତା ପେଟ ଭିତରୁ ଚାରିଟା ଚକଲଗା ଗୋଡ଼ ବାହାରି ପଡ଼ିଲା। ବସ୍ତୁଟା ଚାରିଗୋଡ଼ ଭୂଇଁରେ ଲଗାଇ ଠିଆହେଲା। ଚାରି ପାଞ୍ଚଜଣ ସୁନ୍ଦର ବାଙ୍କୁଆ ଜୁଆନ ତା'ଭିତରୁ ତଳକୁ ଓହ୍ଲାଇ ଆସିଲେ। ସେମାନେ ପରସ୍ପର ଓଡ଼ିଆରେ କଥାବାର୍ତ୍ତା ହେଉଥିବାର ଦେଖି, ଏ ତିନିଜଣଙ୍କର ବିସ୍ମୟର ସୀମା ରହିଲା ନାହିଁ। ସମସ୍ତଙ୍କର ପାଟି ମେଲା ହୋଇଗଲା। କଥା ବାହାରିଲା ନାହିଁ। ସେମାନଙ୍କ କଥାବାର୍ତ୍ତାରୁ ପରସ୍ପର ବୁଝିଗଲେ ଯେ ସେମାନେ ଏ ପୃଥିବୀର ବାସିନ୍ଦା ନୁହନ୍ତି। କେଉଁ ଏକ ଭଦ୍ରାନାମକ ଗ୍ରହରୁ ଏଠିକି ଆସିଛନ୍ତି। ବଳେଇ କହ୍ନେଇକୁ ପଚାରିଲା—"ହଇରେ, ଆମ ସୂର୍ଯ୍ୟଙ୍କର ଭଦ୍ରା ବୋଲି ଗୋଟାଏ ଗ୍ରହ ଅଛି କିରେ ?" କହ୍ନେଇ ବିରକ୍ତ ହୋଇ କହିଲା—"ଭାଇ ସେ ଭୂଗୋଳ ପ୍ରଶ୍ନ ମୋତେ ପଚାରନା। ସେଇ ଭୂଗୋଳ ଲାଗି ମୋ ପୋଥିରେ ଡୋରି ବନ୍ଧା ହେଲା। କିଛି ବୁଝିପାରି ନପାରିବାରୁ ଶେଷରେ ଗଞ୍ଜାମିଲରେ ପଶିଲି।" ସନେଇ କହିଲା—"ମୋର ବି ସେଇ ଅବସ୍ଥା।" ବଳେଇ କହିଲା—"ସେମାନେ ନିଶ୍ଚୟ ପୁଲିସ୍ ନୁହନ୍ତି। ଭଦ୍ରଲୋକ ଭଳି ଜଣାଯାଉଛନ୍ତି, ଚାଲ ଯିବା ତାଙ୍କ ସଙ୍ଗେ କଥାବାର୍ତ୍ତା କରିବା।"

ତିନିହେଁ ଉଠି ସେମାନଙ୍କ ଆଡ଼କୁ ଚାଲିଲେ। ସେମାନେ ଏମାନଙ୍କୁ ଦେଖି ସମସ୍ତେ ଆନନ୍ଦରେ ସ୍ୱାଗତମ୍, ସ୍ୱାଗତମ୍ ଧ୍ୱନି ଦେଲେ। ତିନିହେଁ ହାତ ଯୋଡ଼ି ନମସ୍କାର ନମସ୍କାର କହିଲେ। ତା'ପରେ ସମସ୍ତେ

କୁଣ୍ଠି ଅକୁଣ୍ଠେଇ ହେଲେ । ଏମାନେ ପଚାରିଲେ, "ଆପଣମାନେ ତେବେ ଓଡ଼ିଆ ?"

"ଖାଲି ଓଡ଼ିଆ ନୋହୁଁ, ନିର୍ଧୂମ ଓଡ଼ିଆ, ଜବରଦସ୍ତ ଓଡ଼ିଆ । ଆମର ଏକ ଗଣତାନ୍ତ୍ରିକ ସରକାର ମଧ୍ୟ ଅଛି ।"

"ଅଚ୍ଛା, ଆପଣଙ୍କ ସରକାରରେ କେତେଜଣ ମନ୍ତ୍ରୀ ଅଛନ୍ତି ?"

"ନିକଟରେ ନିର୍ବାଚନ ହେବ, ତେଣୁ ପୂର୍ବ ସରକାର ଭଙ୍ଗିଦିଆ-ଯାଇଛି । ସବୁ କ୍ଷମତା ରାଷ୍ଟ୍ରପତିଙ୍କ ହାତରେ ରହିଛି । ଆପଣ ଚାଲନ୍ତୁ ନା ଆମ ନିର୍ବାଚନ ଦେଖି ଆସିବେ ।"

"ଯାଆନ୍ତୁ ଯେ; ପାନ କଟୁଆ, ଚଳଣାପତ୍ର, ପୋଷାକ କିଛି ନାହିଁ । ଯିବୁ କେମିତି ?"

"ଓଃ ! ଏ ଅତି ସାମାନ୍ୟ କଥା । ସବୁକିଛି ଆମ ଯାନ ଭିତରେ ମହଜୁଦ ଅଛି । ଆସନ୍ତୁ ଆସନ୍ତୁ, ଯାନ ଭିତରକୁ ଆସନ୍ତୁ ।"

ତିନହେଁ ସେମାନଙ୍କ ସଙ୍ଗେ ଯାନ ଭିତରକୁ ଗଲେ । ସେମାନେ ଅତି ଆଦରରେ ପୋଷାକପତ୍ର ଓ ଜଳଖିଆ ଦେଲେ । ସବୁ ପ୍ରାୟ ଓଡ଼ିଆ ପିଠାପଣା, ହେଲେ ଯଥେଷ୍ଟ ବେଶି ସୁସ୍ୱାଦୁ ।

ତିନହେଁ ଖିଆକୁ ଶେଷ ହେବାରୁ ଯାନଟି ଘୂରିଘୂରି ଉପରକୁ ଉଠିଲା । କିଛି ସମୟ ପରେ ଦନେଇ ପଚାରିଲା—"ଯାନଟା ଭୂଇଁରୁ ତ ଉଠିଲା । ଆପଣଙ୍କ ଗ୍ରହ ଆଡ଼େ ଆଗଉନାହିଁ କାହିଁକି ? ସେଠାରେ ପହଞ୍ଚିବାକୁ କେତେ ମାସ ଲାଗିବ ?"

ଜଣେ କହିଲା—"ଆମ ଯାନଟି ଏବେ ସେକେଣ୍ଡକୁ ଏକଶହ ଅଶୀହଜାର ମାଇଲ୍ ବେଗରେ ଯାଉଛି । ଆପଣଙ୍କ ଗ୍ରହଠାରୁ ଆମ ଗ୍ରହର ଦୂରତା ଷାଠିଏ କୋଟି ଅଶୀ ଲକ୍ଷ ମାଇଲ୍ । ମାତ୍ର ଘଣ୍ଟାକର ବାଟ ।" ଏହା ଶୁଣି ଦନେଇର ମୁଣ୍ଡ ବୁଲେଇଦେଲା । କହ୍ନେଇ, ସନେଇ ହାଁ କରି ନିର୍ବାକ୍ ହୋଇଗଲେ । ଜଣେ ଗୋଟିଏ ଶିଶିରୁ ୩ଟି ବଟିକା କାଢ଼ି ୩ ଜଣଙ୍କ ମୁହଁରେ ଗୁଞ୍ଜିଦେଲା । ୩ ଜଣଙ୍କର ମାନସିକ ଭାରସାମ୍ୟ ପୁଣି ସଙ୍ଗେ ସଙ୍ଗେ ଫେରିଆସିଲା ।

ଜଣେ ତାଙ୍କ ଗ୍ରହକୁ ରେଡିଓ ସାହାଯ୍ୟରେ ଜଣାଇଦେଲା ଯେ, ସେମାନେ ତିନିଜଣ ବିଶିଷ୍ଟ ଅତିଥିଙ୍କୁ ପୃଥିବୀରୁ ନେଇ ଯାଉଛନ୍ତି । ସେଠାରୁ

ଖବର ମଧ୍ୟ ପାଇଲେ ଯେ, ରାଷ୍ଟ୍ରପତି ଏହା ଶୁଣି ଅତି ପ୍ରୀତ ହୋଇଛନ୍ତି ଆଉ ଏମାନଙ୍କୁ ମହା ଆଡ଼ମ୍ବରରେ ଅଭ୍ୟର୍ଥନା କରି ପାଛୋଟି ନେଇଯିବାକୁ ଆଦେଶ ଦେଇସାରିଲେଣି ।

ଯାନଟି ଠିକ୍ ଘଣ୍ଟାକ ପରେ ଭଦ୍ରା ଗ୍ରହରେ ଅବତରଣ କଲା । ଏକ ବିରାଟ ଜନତା ସେମାନଙ୍କୁ ପାଛୋଟି ନେଇଯିବାକୁ ପ୍ରସ୍ତୁତ ହୋଇ ରହିଥିଲେ । ଏମାନେ ଯାନରୁ ଓହ୍ଲାଇବା ମାତ୍ରେ ରାଷ୍ଟ୍ରପତିଙ୍କ ମୁଖ୍ୟ ସଚିବ ତିନିଙ୍କ ବେକରେ ଫୁଲମାଳ ପକାଇ ଗାଡ଼ିରେ ଅତିଥି ଭବନକୁ ନେଇ-ଗଲେ । ତିନିହେଁ ମନେ ମନେ ଭାବୁଥାଆନ୍ତି—ପୃଥିବୀରେ ଶହେଥର ଜନ୍ମ-ମରଣ ହେଉଥିଲେ ବି ଏ ଆଦର ମିଳନଥାନ୍ତା ।

ଏକ ସାଧାରଣ ସଭାରେ ତିନି ଜଣଙ୍କୁ ବିପୁଳ ଅଭ୍ୟର୍ଥନା ଦିଆଗଲା । ରାଷ୍ଟ୍ରପତି ସମ୍ବର୍ଦ୍ଧନା ଦେଇସାରି କହିଲେ—"ଆମ ଦେଶରେ ଆପଣମାନଙ୍କଠାରୁ ଗୋପନ ରଖିବାର କିଛି ନାହିଁ । ଏଠାରେ ଆପଣମାନେ ଅବାଧ ବିଚରଣ କରିପାରିବେ । ସବୁ କିଛି ଦେଖିପାରିବେ, ପଚାରି ବୁଝି-ପାରିବେ ଏବଂ ସ୍ୱାଧୀନ ଭାବରେ ନିଜର ମତ ପ୍ରକାଶ କରିପାରିବେ ।

ସରକାରୀ ଅତିଥିଶାଳାରେ ତିନି ଜଣ ବେଶ୍ ଆରାମରେ ରହିଥିଲା ବେଳେ, ମାସକ ପରେ ନିର୍ବାଚନ ହେବବୋଲି ଜାଣିଲେ । ଦିନେଇ କହିଲା, "ହଇରେ କହ୍ନେଇ ! କେମିତିଆ ନିର୍ବାଚନଟାଏ ହବ କିରେ ? କାହିଁ ପ୍ରଚାରର ସୁର୍ ଶବଦ ନାହିଁ, କାନ୍ଥରେ ପ୍ରାଚୀରପତ୍ର ନାହିଁ । ଯେଉଁମାନେ ନିର୍ବାଚନରେ ଠିଆ ହୋଇଛନ୍ତି, ସେମାନଙ୍କର ଦେଖା ଦର୍ଶନ ବି ନାହିଁ । ଏଠି ବୋଧହୁଏ ନିର୍ବାଚନର ଏକ ଖେଳ ହେଉଛି ।"

ପରଦିନ ସମସ୍ତେ ନିର୍ବାଚନ କାର୍ଯ୍ୟାଳୟକୁ ଯାଇ ଜାଣିପାରିଲେ ଯେ, ଏ ଦେଶରେ ମାତ୍ର ଦୁଇଟି ଦଳ—ବାଆଁ, ଡାହାଣ । ପ୍ରତ୍ୟେକ ନିର୍ବାଚନ ମଣ୍ଡଳୀରେ ଉଭୟ ଦଳ ଜଣେ ଲେଖାଏଁ ପ୍ରାର୍ଥୀ ଠିଆ କରନ୍ତି । ଅଧିକ ପ୍ରାର୍ଥୀ ଠିଆ ନହେବା ପାଇଁ କିଛି ଆଇନ୍ କଟକଣା ନାହିଁ; କିନ୍ତୁ ଦଳ ଜଣକୁ ଠିକ୍ କରିବା ପରେ ଅନ୍ୟ କେହି ଠିଆ ହୁଅନ୍ତି ନାହିଁ । ପ୍ରାର୍ଥୀପତ୍ର ଦାଖଲର ଶେଷ ସମୟ ଆଉ ମାତ୍ର ପାଞ୍ଚ ଦିନ ବାକି ।

ଏତିକି ଶୁଣି ଫେରିବା ପରେ ତିନି ଜଣଙ୍କର ପ୍ରଚଣ୍ଡ ନିର୍ବାଚନ ଗଳ୍ପ ଆରମ୍ଭ ହୋଇଗଲା । ଲୋକମାନଙ୍କୁ ପଚାରି ବୁଝିଲେ ଯେ, ଏଥରକ

ଡାହାଣ ଦଳର ଜିତିବାର ସମ୍ଭାବନା ବେଶି । ତିନି ଜଣଯାକ ବାଉଁଆ ଥିଲେ । ତେଣୁ ବାଉଁଆ ଦଳକୁ କେମିତି ଜିତେଇବେ ତାର ପେଞ୍ଚ-ପାଞ୍ଚରେ ଲାଗିପଡ଼ିଲେ । ବାଉଁଆ ଦଳର ପ୍ରଧାନ କାର୍ଯ୍ୟାଳୟକୁ ଯାଇ କର୍ମକର୍ତ୍ତାମାନଙ୍କୁ ଜିତାପଟର ସୂତ୍ର ସବୁ ବତେଇଲେ । ଦନେଇ କହିଲା, "ଆଜ୍ଞା, ମୁଁ ଯାହା ଜାଣିପାରୁଛି ଡାହାଣ ଦଳ ବାଜି ମାରି ନେବ । ଆପଣ ଗୋଟାଏ କାମ କରନ୍ତୁ, ପ୍ରତ୍ୟେକ ମଣ୍ଡଳୀରେ ଡାହାଣ ଭଳିଆ ଦଶ ବାରଜଣ ପ୍ରାର୍ଥୀ ଠିଆ କରାଇ ଦିଅନ୍ତୁ । ତାହାହେଲେ ଡାହାଣିଆ ଭୋଟ୍‌ଗୁଡ଼ାକ ବାଣ୍ଟି ହୋଇଯିବ । ବାଉଁଆ ଅକ୍ଳେଶରେ ହେଣ୍ଡି ମାରି ଚାଲି ଆସିବ ।" କର୍ମକର୍ତ୍ତା କଥାଟାକୁ ନାପସନ୍ଦ କରି କହିଲେ—ଏଇଟା ଅସାମାଜିକ କାର୍ଯ୍ୟ ବୋଲି ସମସ୍ତେ କହିବେ ।

କହେଇ କହିଲା—"କାହିଁକି ? ଆମ ଭାରତ ବର୍ଷରେ ଗୋଟିଏ ଗୋଟିଏ ନିର୍ବାଚନ ମଣ୍ଡଳୀରେ ୩୧/୩୨ ଜଣ ପ୍ରାର୍ଥୀ ଠିଆ ହୁଅନ୍ତି । ଏହା ଶୁଣିବା ମାତ୍ରେ ୨/୩ ଜଣ କର୍ମକର୍ତ୍ତା ହାଁ କରି ବେହୋସ ହୋଇଗଲେ । ସେମାନଙ୍କ ମୁହଁରେ ପାଣି ଛିଞ୍ଚି ସେମାନଙ୍କୁ ସାଷ୍ଟମ କରାଗଲା । ପରେ ସେ କହିଲେ ଯେ, ଜଣକରୁ ଦି'ଜଣ କଥା ଆମେ ଚିନ୍ତା କରିପାରୁନା । ୩୧/୩୨ କହିଦେବାରୁ ଅତି ବିସ୍ମୟରେ ଆମ ହୋସ୍ ବୁଡ଼ିଗଲା ।"

ଦନେଇ କହିଲା—"ହଉ, ସେ କଥା ନ ହେଲେ ନାହିଁ, ନିର୍ବାଚନ ରାତିରେ ଭୋଟର୍‌ମାନଙ୍କ ଭିତରେ ଅମୋଘ ଅସ୍ତ୍ର ଚଳେଇ ଦିଅ ।"

"ସେଇଟା କେମିତିଆ ଜିନିଷ" ବୋଲି ବାଉଁଆ କର୍ମକର୍ତ୍ତା ପଚାରିବାରୁ ଦନେଇ କହିଲା —"ରାତି ଅଧରେ ଭୋଟର୍‌ମାନଙ୍କ ଭିତରେ ଥିବା ମେଣ୍ଢାମେଣ୍ଢା ଲୋକଙ୍କୁ ମୋଟା ଟଙ୍କା ଦେଇ ବଶୀଭୂତ କରିଦେବାକୁ ହୁଏ । ସକାଳୁ ନିର୍ବାଚନ । ଟଙ୍କା ରାତିରେ ସେମାନଙ୍କ ମନକୁ କାବୁ କରିନିଏ । ସେମାନଙ୍କ ମନକୁ ବଦଳେଇବା ପାଇଁ ଆଉ ସମୟ ମିଳେ ନାହିଁ । ଆମ ଦେଶରେ ଏଇଟା ବଢ଼ିଆ କାମ ଦେଖେଇଛି । ଏଠି ମଧ୍ୟ ସେଇଆ ହବ ।"

ଏହା ଶୁଣି କାର୍ଯ୍ୟାଳୟର କର୍ମକର୍ତ୍ତା ସମସ୍ତେ ମୁଖକୁଞ୍ଚିତ କଲେ । ଜଣେ ଏକାବେଳେ କଥାଟାକୁ ନାପସନ୍ଦ କରି କହିଲେ—"ଏ ସବୁ

କଥା କଳ୍ପନାଗତ । ଯାହାକୁ ଟଙ୍କା ଯାଚବ ସେ ସାଂଷଣ ରାଗିଯାଇ କହିବ—କଅଣ ମୋ ବିବେକକୁ ତୁମେ ଟଙ୍କା ଦେଇ କିଣିବ ? ମୋତେ ଏପରି ଭାବରେ ଅପମାନିତ ଓ ଲାଞ୍ଛିତ କରିବାକୁ ତୁମର ଏଡ଼େ ଦୁଃସାହସ ହୋଇଛି ! ତୁମେ ଏଡ଼େ ଅସାମାଜିକ ଜୀବ ! ପ୍ରଥମ ଥର ପାଇଁ ଛାଡ଼ିଦେଲି । ଫେର୍‌ବାର କହିଲେ ପୁଲିସ୍ ହାତରେ ଧରେଇ ଦେବି ।"

ତିନହେଁ ଆଉ ଅଧିକ ପାଟିତୁଣ୍ଡ ନକରି ଅତିଥିଶାଳାକୁ ଚାଲି ଆସିଲେ ଓ ଗୁପ୍ତରେ ମନ୍ତ୍ରଣା ଚଳେଇଲେ । ବଢ଼େଇ କହିଲା—"ଏଠା ଲୋକେ ଆମକୁ ସବୁ କଥା ଲୁଚଉଛନ୍ତି । ଆମେ ବିଦେଶୀ, ପୁଣି ତାଙ୍କର ଅତିଥି । ତେଣୁ ଆମ ପାଖରେ ନିଜର ଠେକ ଦେଖାଉଛନ୍ତି । ଚାଲ ବାଉଁଆ ପ୍ରାର୍ଥୀମାନଙ୍କ ପାଖକୁ ଯିବା । ସେମାନଙ୍କୁ ବାଟ ବତେଇ ଯେ କୌଣସିମତେ ଜିତେଇ ଦେବା । ସକାଳୁ ସକାଳୁ ତିନିଜଣଯାକ ବାହାରି ହୋଇ ତିନି ଜଣ ବାଉଁଆ ପ୍ରାର୍ଥୀଙ୍କ ପାଖକୁ ଗଲେ । ବଢ଼େଇ ଜଣେ ବାଉଁଆ ପ୍ରାର୍ଥୀଙ୍କୁ କହିଲା—"ଆଜ୍ଞା, ମୁଁ ଦେଖୁଛି ଆପଣ ଠିକଏ ହେଲେ ଚିନ୍ତିତ ଦେଖାଯାଉ ନାହାନ୍ତି । ନିର୍ବାଚନ ଆଉ ଅଳ୍ପଦିନ ରହିଲା ଅଥଚ ଆପଣ ଏକୁଟିଆ, ଚୁପ୍‌ଚାପ୍ ବସି ରହିଛନ୍ତି । ଆପଣଙ୍କ କର୍ମୀ କାହାନ୍ତି, ପ୍ରଚାରକ କାହାନ୍ତି, ବଡ଼ପାଟିଆ କାହାଁ ? ଏ ସବୁ ବହୁ ଆଗରୁ ଯୋଗାଡ଼ କରିବା ଦରକାର । ଏତିକ ଯୋଗାଡ଼ ନକରି ଆପଣ ଜିତିବାକୁ ଆଶା କରୁଛନ୍ତି କିପରି ? ଆଉ ଆପଣ ନିର୍ବାଚନ ଇସ୍ତାହାର ଛାପିଲେଣି ?"

ପ୍ରାର୍ଥୀ ଜଣକ ଅବାକ୍ ହୋଇଯାଇ କହିଲେ—"ନିର୍ବାଚନ ବେଳେ ଏ ସବୁର ଦରକାର କଅଣ ? ଆମର ଏଠି କାମରେ ପ୍ରଚାର ହୁଏ, କଥାରେ ନୁହେଁ । ଯିଏ କାମ କରିଥିବ ବା କରୁଥିବ, ଲୋକେ ତାକୁ ମନେ ରଖିବେ । ଯିଏ ବେଶି ଭଲକାମ କରିଥିବ, ଲୋକେ ତାକୁଇ ଭୋଟ୍ ଦେବେ । ପାଟିରେ ପ୍ରଚାର କରିବା ଅର୍ଥ ଭୋଟର୍‌ମାନଙ୍କୁ ଠକିବା । ଏହା ଏଠାରେ ଅତି ଘୃଣ୍ୟ ବିବେଚିତ ହୁଏ ।"

ବଢ଼େଇ ଠିକଏ ଦବିଯାଇ କହିଲା—"ପ୍ରଚାର ନହେଲେ ନାହିଁ—ମାତ୍ରବରିଆ ନିର୍ବାଚନ ଇସ୍ତାହାରଟାଏ ଛାପି ବାଣ୍ଟିବା ତ ନିହାତି ଦରକାର । ସେତିକାକ ଛାପିଲେଣି ନା ନାହିଁ ?"

“କେବଳ ସରକାର ତାହା ଛାପନ୍ତି । ଆମ ଦଳ କଅଣ କଅଣ କରିବ, ତାହା ଦଳର ମୁଖ୍ୟ ଲେଖି ସରକାରଙ୍କୁ ଦେଇଦିଅନ୍ତି । ସରକାର ତାହ ଛାପି ବାଣ୍ଟି ଦିଅନ୍ତି । ଇସ୍ତାହାରର ଗୋଟିଏ ପାଖରେ ବାଉଁଆ ଆଉ ଆର ପାଖରେ ଡାହାଣିଆଁ ଦଳର କାର୍ଯ୍ୟକ୍ରମ ଛପି ଥାଆନ୍ତି । ସେଇଥିରୁ ଲୋକେ ପଢ଼ି ପସନ୍ଦମୁତାବକ ଭୋଟ୍ ଦିଅନ୍ତି ।”

ଦନେଇ କହିଲା—“ଦେଖନ୍ତୁ, ଆପଣମାନେ ନିର୍ବାଚନ ବିଷୟରେ ଆମଠାରୁ ତେର୍ ପଛରେ ପଡ଼ିଛନ୍ତି । ଆପଣଙ୍କ ନିର୍ବାଚନଟା ସାଦାସିଧା । ଅଲଣା ରାଜନୀତିରେ କି କାମ ହୁଏ ? ରାଜନୀତିରେ ପଲ୍‌ଟିକସ୍ ପୂରେଇବାକୁ ହୁଏ ।”

ପ୍ରାର୍ଥୀ ପଚାରିଲେ—“ସେ ପୁଣି କଅଣ ? ରାଜନୀତି କହିଲେ ବୁଝିଲି; କିନ୍ତୁ ପଲ୍‌ଟିକସ୍‌ଟା କଅଣ ? ତାକୁ ରାଜନୀତିରେ ପୁଣି ପୂରେଇବ କେମିତି ?”

ଦନେଇ ହସିଦେଇ କହିଲା—“ସେଇଟା ବଡ଼ ଗୁମର କଥା । ଧରନ୍ତୁ ଆପଣ ସେମିତି ଯାହା ଯାହା କରିବେ ବୋଲି ଲେଖିଲେ, ସେମାନେ ବି ସେମିତି ଯାହା ଯାହା କରିବେ ଲେଖିଦେଲେ । ଲୋକେ ହୁଏତ ଆପଣଙ୍କ ଭଲ କଥାକୁ ପସନ୍ଦ ନକରି ସେମାନଙ୍କର ମନ୍ଦ କଥାକୁ ପସନ୍ଦ କରିବେ । ଘୁଷୁରି ତ ପୁଣି ପାଚିଲା କଦଳୀ ଖାଇବାକୁ ଭଲ ପାଏନି । ଆପଣଙ୍କର ଉଚିତ ହେଉଛି ବିପକ୍ଷ ଦଳର ସବୁ ଗୋଇ ଖୋଳି ଇସ୍ତାହାରରେ ପ୍ରକାଶ କରିବା, ସେମାନଙ୍କ ବ୍ୟକ୍ତିଗତ ଜୀବନର କଳାଦାଗ ସବୁ ପ୍ରକାଶ କରିବା । ତାହାହେଲେ ସିନା ଲୋକେ ସେମାନଙ୍କୁ ଘୃଣାକରି ଆପଣଙ୍କୁ ଭୋଟ୍ ଦେବେ ।”

ପ୍ରାର୍ଥୀ ହଠାତ୍ ଉଠିଯାଇ ଗୋଟାଏ ଶାନ୍ତିକ ବଟିକା (ଟ୍ରାନ୍‌କ୍ୱିଲାଇଜର୍) ଖାଇଦେଇ ଆସି ବସିଲେ ଏବଂ କହିଲେ—“ଆମେ ସେ ସବୁ ଲେଖିଲେ ସେମାନେ ବି ସେମିତି ଲେଖିବେ । ପରସ୍ପରର ବ୍ୟକ୍ତିଗତ ଛିଦ୍ର ପଦାରେ ପକାଇ ଉଭୟେ କଅଣ ନର୍କକୁ ଯିବୁ ? ନିର୍ବାଚନବେଳେ ବ୍ୟକ୍ତିଗତ କୁତ୍ସାକାରୀଙ୍କୁ ସମସ୍ତ ଘୃଣାରେ ବର୍ଜନ କରିବେ । କ୍ଷମା କରିବେ; ଆପଣ ଆସନ୍ତୁ ।”

ଦନେଇ ପ୍ରାର୍ଥୀଙ୍କୁ ନିପଟ ବୋକା ଭାବି ବିରକ୍ତିର ସହ ଫେରିଆସିଲା । ଅତିଥିଶାଳାରେ କହ୍ନେଇ ଓ ସନେଇକୁ ଦେଖିଲା । କହ୍ନେଇ

କହି ପକେଇଲା—"ହେଃ ! ଏଠିକା ଲୋକଗୁଡ଼ାକ ନିପଟ ମୂର୍ଖ । ବୋକା-ଗୁଡ଼ାଙ୍କୁ ଭଲ କଥା କହିଲେ, ତାକୁ ଓଲଟା ବୁଝୁଛନ୍ତି ଆଉ ତା'ର କଦର୍ଥ କରୁଛନ୍ତି । ମୁଁ ଜଣେ ବାଉଁଆ ପ୍ରାର୍ଥୀଙ୍କୁ କହିଲି—ଚାଲ ଗୋଟାଏ ଫଉଜ ଗଢ଼ିବା, ଡାହାଣିଆ ଦଳକୁ ସନ୍ତ୍ରସିତ କରେଇ ଦେବାନି, ତାଙ୍କ ପ୍ରଚାରକ-ମାନଙ୍କୁ ଘୁଷ୍ ଦେଇ ଅକ୍ତିଆର କରିନେବା । ସେ କହିଲା, ଏଠି ପ୍ରଚାର, ଫୌଜ କି ସମିତି କିଛି ହୁଏ ନାହିଁ । ମୁଁ କାହିଁକି ଏମିତିଆ କଥା ସବୁ କହୁଛି ସେଥିଲାଗି ମୋ ଉପରେ ଖାର ରାଗିଗଲା ।"

ସନେଇ ବି ଅନୁରୂପ ଅଭିଯୋଗ କରି କହିଲା—"ମୁଁ ଜଣକୁ କହିଲି, ଚାଲ ଭୋଟର୍‌ମାନଙ୍କୁ ଖୁଆଇ ପିଆଇ ମଜ୍‌ଗୁଲ୍ କରିଦେବା । ଭୋଟ୍ ପୂର୍ବଦିନ ରାତିରେ ସେମାନଙ୍କୁ ମଦପିଆ ଯୋଗେଇ ଦେବା । ନିର୍ବାଚନ କର୍ମକର୍ତ୍ତାମାନଙ୍କୁ ଘୁଷ୍‌ରେ ବଶକରି ଜାଲ୍ ଭୋଟର୍‌ମାନଙ୍କ ଦ୍ୱାରା ଗୁଡ଼ାଏ ଭୋଟ ଭରାଇ ଦେବା । ପ୍ରତି ଭୋଟର୍‌ଙ୍କ ଘରକୁ ଯାଇ ପାଞ୍ଚଟି ଲେଖାଏଁ ଟଙ୍କା ଆଉ ଟିକିଏ ମହାପ୍ରସାଦ ଧରେଇ ଦେଇ ବାଉଁଆ ଦଳକୁ ଯେମିତି ନିଶ୍ଚିତ ଭାବରେ ଭୋଟ୍ ଦିଅନ୍ତି ସେଥିଲାଗି ହଲପ କରେଇ ନେବା । ସବୁ ସତ୍ତ୍ୱେ ଯଦି ଡାହାଣିଆ ଦଳ ଭୋଟ୍ ପାଇଥିବାର ଜାଣିବା, ତେବେ କେନ୍ଦ୍ରମାନଙ୍କରେ ହଟ୍ଟଗୋଳ କରି ଭୋଟ୍ ବାକ୍ସକୁ ହରଣଚାଳ କରି ନେଇଯିବା । ସେଇଟା ନିପଟ ଗବାଟାଏ । ମୋତେ ଧିକ୍କାର କରି କହିଲା—ଏ କଥା ଆଉ କୌଣସିଠାରେ କହିବେ ନାହିଁ । ମହିଳାମାନେ ଏହା ଶୁଣିଲେ ଆପଣଙ୍କ ଉପରକୁ ଗୋବର ପାଣି ଛାଟିବେ । ସେ ଚାଲୁଆଟା ପୁଣି ମୋତେ ଡରେଇ କହୁଛି—ଆମ ବାୟୁ-ମଣ୍ଡଳରେ କୁଚିନ୍ତାର ଘନତା ବଢ଼ିଯିବଣି । ଏହା ଏଠା ବୈଜ୍ଞାନିକମାନଙ୍କ ଦୃଷ୍ଟି ଏଡ଼ାଇ ପାରିବନି । ଫଳରେ ସରକାର ଆପଣଙ୍କୁ ଦାୟୀ କରିବେ । ଏପରି କୁଚିନ୍ତା ଆଉ କରନ୍ତୁ ନାହିଁ ।"

ତିନହେଁ ହସି ଉଠିଲେ । ସେମାନଙ୍କ ଗୁପ୍ତ କାର୍ଯ୍ୟକ୍ରମକୁ ଅବ୍ୟାହତ ରଖି ସେଠି ବାଉଁଆ ଦଳକୁ ଯେ କୌଣସିମତେ ଜିତେଇବାକୁ ବଦ୍ଧପରିକର ହେଲେ ।

ପରଦିନ ଭୋରରୁ ଦଳେ ନବପତ୍ରା କର୍ମସ୍ଥଳୀ ଅତିଥିଶାଳାକୁ ଆସି କହିଲେ—"ଆଜ୍ଞା, ରାଷ୍ଟ୍ରପତି ଆପଣମାନଙ୍କୁ ସଙ୍ଗେ ସଙ୍ଗେ ଏ ଗ୍ରହରୁ

କାଢ଼ି ନେଇ ଆପଣଙ୍କ ଗ୍ରହରେ ଛାଡ଼ିଦେବାକୁ ଆଦେଶ ଦେଇଛନ୍ତି । ଆମେ ବଡ଼ ଦୁଃଖିତ ଆପଣମାନଙ୍କୁ ସଙ୍ଗେ ସଙ୍ଗେ ଏଠାରୁ ଯାନ ଭିତରକୁ ନେଇଯିବୁ ।”

ତିନହେଁ ଏକ ସଙ୍ଗେ ଚଲେଇ ଉଠିଲେ—“ନା ନା—ଆମେ ଏଠାରୁ ଯିବୁନ । ଆମେ ଏଠାରୁ ଯିବୁନ । ଆମେ ଏଠାରୁ ଯିବୁନ ।” ନବଗ୍ରହ କର୍ମଚାରୀମାନେ ସେମାନଙ୍କ ଉପରକୁ କଣ୍ଟୁ ଏକ ପାଣି ଛାଟି ଧୋଷାଡ଼ି ଥାଆନ୍ତି । ତିନହେଁ ଚଲେଇ ଲାଗି ଥାଆନ୍ତି—“ଆମେ ଏଠାରୁ ଯିବୁନ ।”

ହଠାତ୍ ତିନଜଣଙ୍କର ଘୋର ନିଦ ଭାଙ୍ଗିଗଲା । ସେମାନେ ଜାଣି ପାରିଲେ ଯେ ସେମାନେ ଖୁଦ୍ଧଖାଦ୍ଧ ହୋଇ ପୂର୍ବର ଗୁହାରେ ଶୋଇଛନ୍ତି । ଭୋର ହୋଇଗଲାଣି । ମୁଣ୍ଡ ଟେକ ଦେଖିଲେ ପୂର୍ବଦିନର ବାବାଜୀ ସେମାନଙ୍କ ଉପରେ କମଣ୍ଡଳୁରୁ ପାଣି ଛାଟି କହୁଛନ୍ତି—“ମୁଁ ତ ତୁମ-ମାନଙ୍କୁ ଏଠାରୁ ଯିବାକୁ କହୁନ । ତୁମ୍ଭେମାନେ ଆନନ୍ଦରେ ଏଠାରେ ରହିପାର ।”

ତିନହେଁ ବାବାଜୀଙ୍କ ଗୋଡ଼ତଳେ ପଡ଼ିଯାଇ କହିଲେ—“ଆମକୁ ଏହିଠାରେ ଆଶ୍ରୟ ଦିଅନ୍ତୁ । ଆମେ ଆଉ ଲୋକାଳୟକୁ ଯିବୁନ କି କୁତ୍ସିତ ରାଜନୀତି ଆଉ କରିବୁନ ।”

ବାବାଜୀ ସେମାନଙ୍କ କଥାରେ ରାଜି ହୋଇଗଲେ ।

# ଫକୁରାନନ୍ଦଙ୍କ ପୁସ୍ତକାବଳୀ

## ଶିଶୁ ସାହିତ୍ୟ



